# ହସଗୋଲା

(ଛଅ ଗୋଟି ମିଠାମିଠା ହସର ନାଟକ)



ଏ ମଙ୍ଗଳ ମହୂରୀର ଡାକ

ଆପଣ ସାକ୍ଷୀ ରହିଲେ ହଜୁର

ତତ୍‌କାଳ ସମାଧାନ

ଭଲ ପାଇବାର ରଙ୍ଗ

କୁମାର କୁଳଚନ୍ଦ୍ରମା

ଭାଇ ଭାଇ



ଦିଲ୍ଲୀଶ୍ୱର ମହାରଣା

# ହସଗୋଲା

(ଛଅ ଗୋଟି ମିଠାମିଠା ହସର ନାଟକ)


ନାଟ୍ୟକାର — Playwright
ଶ୍ରୀ ଦିଲ୍ଲୀଶ୍ୱର ମହାରଣା — Sj. Dilliswar Moharana



ପ୍ରକାଶିକା — Publisher
ଶ୍ରୀମତୀ ଶୈଳବାଳା ମହାରଣା — Smt. Shailabala Moharana
କ୍ଲାନ୍ତିହରା, ବଳରାମ ବିହାର — Klantihara, Balaram Vihar
ଢେଙ୍କାନାଳ-୭୫୯୦୦୧ — Dhenkanal - 759001
ଫୋନ : ୯୮୬୧୦୩୪୨୮୩ — Ph.9861034283

ପ୍ରଥମ ପ୍ରକାଶ — First Edition
ମହାବିଷୁବ ସଂକ୍ରାନ୍ତି, ୨୦୧୨ — 13th. April, 2012 (Maha Bishuba Sankranti)

ପ୍ରଚ୍ଛଦ — Cover
ଶ୍ରୀ ପ୍ରବୀର ମହାନ୍ତି — Sj. Prabir Mohanty

ମୁଦ୍ରଣ — Printed at :
ଚନ୍ଦ୍ର ଶେଖର ପ୍ରେସ୍ — Chandra Sekhar Press
କୁଞ୍ଜକାନ୍ତ, ଢେଙ୍କାନାଳ, — Kunjakanta, Dhenkanal
ଫୋନ-୦୬୭୬୨-୨୨୪୭୮୧ — Ph.06762-224781

ପ୍ରାପ୍ତିସ୍ଥାନ — Available at :
ବାବାଜୀ ପାତ୍ର ବୁକ୍ ଷ୍ଟୋର — Babaji Patra Book Store
ଲକ୍ଷ୍ମୀ ବଜାର, ଢେଙ୍କାନାଳ — Laxmi Bazar, Dhenkanal

ମୂଲ୍ୟ : ୧୩୦ ଟଙ୍କା ମାତ୍ର — Price : Rs.130/- only

# ଅର୍ପଣ



ଯେଉଁମାନେ ହସବାଣ୍ଟିବାକୁ
ଏକ ସେବା ବୋଲି ମନେ କରନ୍ତି
ଆଉ
ଯେଉଁମାନେ ହସିବାକୁ ଭଲ ପାଆନ୍ତି
ସେଇମାନଙ୍କ ହାତରେ
ଏଇ
''ହସ୍‌ଗୋଲା'
ବାଢ଼ି ଦେଲି



# କଥା କିଂଚିତ୍

**ହସଗୋଲା** ସଂକଳନର ନାଟକଗୁଡିକ ତରଳ, ସରଳ ଓ ମିଠା ମିଠା ହସ ଖେଳାଇପାରୁଥିବା ନାଟକ । ଏଥିରେ ନା' ଅଛି କୌଣସି ଗୁରୁଗମ୍ଭୀର ସମସ୍ୟା, ନା ଅଛି କିଛି ତତ୍ତ୍ୱ ବା ଦର୍ଶନ । ଏ ନାଟକ ଗୁଡିକ ମୋର ଭାରିପ୍ରିୟ । ଏଇଥିପାଇଁ ଯେ ଏ ଗୁଡିକ ଲେଖିଲାବେଳେ ମୁଁ ଯେତିକି ଆନନ୍ଦିତ ହୋଇଛି ନାଟ୍ୟମଂଚନ ବେଳେ ଦର୍ଶକମାନେ ମଧ୍ୟ ସେହିପରି ଆମୋଦିତ ହୋଇଛନ୍ତି । ଏଗୁଡିକୁ ଉପଭୋଗ କଲାବେଳେ ଆପଣ ହୁଏତ ହୋ ହୋ ହୋଇ ହସିନପାରନ୍ତି କିନ୍ତୁ ନାଟକ ଶେଷ ପର୍ଯ୍ୟନ୍ତ ନିଶ୍ଚୟ ଅଟକି ରହିବେ । ନାଟକ ଦେଖି ଘରକୁ ଫେରିଲାବେଳେ ଦର୍ଶକଙ୍କ ଓଠରେ ସ୍ମିତହାସ୍ୟର ରେଖାଟିଏ ଆଙ୍କିହୋଇ ରହିଥିବବୋଲି ମୋର ବିଶ୍ୱାସ ।

ଏଇ ଅବସରରେ ଏଇ ନାଟକ ଗୁଡିକୁ ଭଲପାଇ ଯେଉଁମାନେ ବିଭିନ୍ନ ମଞ୍ଚରେ ପରିବେଷଣ କରିଛନ୍ତି ଆଉ ଯେଉଁମାନେ ଏଇ ପ୍ରକାରର ଆହୁରି ବେଶି ନାଟକ ଲେଖି ଦେବିଦେବାକୁ ଅନୁରୋଧ କରିଛନ୍ତି ସେମାନଙ୍କୁ ବିଶେଷ ଧନ୍ୟବାଦ ଜଣାଉଛି । ନମସ୍କାର ।

ଦିଲ୍ଲୀଶ୍ୱର ମହାରଣା
କ୍ଳାନ୍ତିହରା, ବଳରାମ ବିହାର
ଢେଙ୍କାନାଳ
ଫୋନ : ୯୪୩୭୦୮୨୬୦୪

# ଏ ମଙ୍ଗଳ ମହୁରୀର ତାନ

(ସମ୍ପୂର୍ଣ୍ଣ ହାସ୍ୟରସର ନାଟକ)

ଦିଲ୍ଲୀଶ୍ୱର ମହାରଣା

# ଏ ମଙ୍ଗଳ ମହୁରୀର ତାନ

## ଚରିତ୍ର ଲିପି

ସରୋଜ

ଭୁବନାନନ୍ଦ

ବନମାଳୀ

ବାନାବର

ପବନା

ସୁରମଣୀ

ଗାୟତ୍ରୀ

ରେଣୁ

ସୁଭଦ୍ରା

( ଗୋଟିଏ ସେଟ୍ - ସମୟ ଅବଧି - ୧ ଘଣ୍ଟା ୩୦ମିନିଟ୍)

## ଏ ମଙ୍ଗଳ ମହୁରୀର ତାନ ନାଟକରେ ଭାଗ ନେଇଥିବା କଳାପରିଷଦ ଢେଙ୍କାନାଳର ଶିଳ୍ପୀ

| ଚରିତ୍ର | ଶିଳ୍ପୀଙ୍କ ନାମ |
|---|---|
| ସରୋଜ | ପ୍ରବୀର ମହାନ୍ତି |
| ଭୁବନାନନ୍ଦ | ମନୋରଞ୍ଜନ ସିଂ |
| ବନମାଳୀ | ଶତ୍ରୁଘ୍ନ ମାଟି |
| ବାନାଦର | ଆଲୋକ ଦାସ |
| ପବନା | ଦିଦିକୃଷ୍ଣ ମଲ୍ଲିକ |
| ସୁରମଣୀ | ଇନ୍ଦ୍ରମଣୀ ବେହେରା |
| ଗାୟତ୍ରୀ | ସୋନାଲି ପଟ୍ଟନାୟକ |
| ରେଣୁ | ଶ୍ରୀପଦ୍ମା ସାହୁ |
| ସୁଭଦ୍ରା | ବବିତାରାଣୀ ସାହୁ |

**ନାଟକ ଅନ୍ତରାଳରେ**

| | |
|---|---|
| ସଂଗୀତ | ସେଖ୍ ଅମଜାଦ୍ |
| ମଂଚ ପରିଚାଳନା | ଜୟନ୍ତ ବର୍ମା / ମନୋଜ ପଟନାୟକ |
| ନିର୍ଦ୍ଦେଶନା | ଶତ୍ରୁଘ୍ନ ମାଟି |

*ପ୍ରଥମ ପରିବେଷଣ - ତା.୧୦.୦୧.୨୦୦୮*

*(କଳାପରିଷଦ ରାଜ୍ୟସ୍ତରୀୟ ନାଟ୍ୟମହୋତ୍ସବ- ୨୦୦୮)*

*ଦ୍ୱିତୀୟ ପରିବେଷଣ- ତା.୨୮.୧୦.୨୦୦୯*

*(୧୧ତମ ଢେଙ୍କାନାଳ ମହୋତ୍ସବ) ସ୍ଥାନ-ଗଜଲକ୍ଷ୍ମୀ କଳାମଣ୍ଡପ, ଢେଙ୍କାନାଳ*

# ଏ ମଂଗଲ ମହୁରୀର ତାନ

## ପ୍ରଥମ ପାଦ

ଗୋଟିଏ ବୈଠକ ଗୃହ । ସରୋଜ ବାବୁଙ୍କ ସରକାରୀ ବାସଭବନର ଏ ଘରଟି ପ୍ରବେଶ ଗୃହ ମଧ୍ୟ । ଘର ଭିତରେ ଗୋଟେ ସୋଫା ସେଟ୍ ଓ ସେଣ୍ଟର ଟେବୁଲ୍ । ଘରର ଗୋଟିଏ ପାଖକୁ ଗୋଟିଏ ଦିବାନ୍ । ତା ଉପରେ ଗୋଟିଏ ତନପୁରା ରହିଛି । ଘରକୁ ବାହାରୁ ଆସିବାର ପ୍ରବେଶ ଦ୍ୱାର ନିକଟରେ ରହିଛି ଗୋଟିଏ ନୂଆ ସ୍କୁଟି । ଘରର ଅନ୍ୟ ଦିଗରେ ରହିଛି ଦୁଇଟି ଦରଜା । ଗୋଟିଏ ଶୟନ କକ୍ଷକୁ ଅନ୍ୟଟି ରୋଷେଇ ଓ ଅନ୍ୟାନ୍ୟ ଘରକୁ । ଘରର ସାଜସଜ୍ଜା ଉନ୍ନତ ରୁଚିର । ଦୃଶ୍ୟ ଆରମ୍ଭରେ ଦେଖାଯାଇଛି ଘରର ଚାକର ପିଲା ପବନା ନୂଆ ସ୍କୁଟିକୁ ପୋଛା ପୋଛି କରୁଛି । ସ୍ୱଭାବତଃ ସବୁବେଳେ ବକବକ କରିବା ହେଉଛି ତା'ର ଅଭ୍ୟାସ ।

ପବନା    ହଁ ଘର ଝଡ଼ା ଝଡ଼ି ଶେଷ ହେଲା । ହେଲେ ଏଇ ସ୍କୁଟି ମହାପ୍ରଭୁଙ୍କ କଥା ନ ବୁଝିଲେ ଆମ ଅପା ସିଆଡ଼େ ଖପା ହୋଇଯିବେ । ତାଙ୍କର ବରାଦ୍ ସ୍କୁଟିଟା ସବୁବେଳେ ଆଇନା କାଚ଼ ଭଳି ଚ଼ିକ୍ ଚ଼ିକ୍ କରୁଥିବ । ସାମାନ୍ୟ ଧୂଳୀ ଟିକିଏ ବି ଲାଗିବନି । ଯା' ଉପରେ କାହାର ଦୃଷ୍ଟି ପଡ଼ିଯିବ ବୋଲି ଏଥିରେ ଦେଖ ଲେମ୍ବୁ ଲଙ୍କା ବନ୍ଧା ହୋଇଛି ।

ଗାୟତ୍ରୀ : (ଭିତରୁ) ମୋ ସ୍କୁଟିକୁ ଭଲଭାବରେ ସଫା କରୁଛୁ ତ ପବନା... । ଦେଖ ବେଶୀ ରଗଡା ରଗଡି କରିବୁନି । ନ ହେଲେ ତା ଦେହରେ ଦାଗ ହୋଇଯିବ ।

ପବନା : ହଁ ଜାଣିଛି ଅପା - ଏ ସ୍କୁଟିଟାରେ ଦାଗ ହୋଇଗଲେ ମୋ ଚ଼ାକିରୀଟା ସିଆଡ଼େ ବାଏଁ ବାଏଁ ଉଡିଯିବ । ଏଇଟା ତୁମ ସ୍କୁଟି ତ ନୁହେଁ ତୁମ ବଏ ଫ୍ରେଣ୍ଡ । (ହଠାତ୍ ସ୍କୁଟରର ହ୍ୟାଣ୍ଡଲକୁ ଦେଖି) ଆରେ ଏଇଟାକୁ ମୁଁ କ'ଣ ଅପାଙ୍କ ବଏ ଫ୍ରେଣ୍ଡ କହୁଛି, ଏଇଟା ତ ଖାଣ୍ଟି ଝିଅଟା ... ।

ଗାୟତ୍ରୀ : (ପ୍ରବେଶ) କ'ଣ ଝିଅଟା ଝିଅଟା ହେଉଛୁ ପବନା । କାହା ସହିତ କଥା ହେଉଛୁ ।

ପବନା : ଏଠି ତୁମ ସ୍କୁଟି ଛଡ଼ା ଆଉ କାହା ସାଙ୍ଗେ କଥା ହେବି ? ସେଇଟାକୁ ଦେଖି ଭାବୁଥିଲି ସ୍କୁଟିଟା ପୁଅ ନା ଝିଅ ।

ଗାୟତ୍ରୀ : କ'ଣ ଠିକ୍ କଲୁ ?

ପବନା : ପ୍ରଥମେ ଭାବୁଥିଲି ଏଇଟା ପୁଅ - ତୁମ ସହିତ ସବୁଆଡ଼େ ବୁଲାଚ଼ଲା କରୁଛି - ତୁମେ ଯେଉଁଆଡ଼େ ଚାହୁଁଛ ସେଇଆଡ଼େ ନେଇଯାଉଛି । ହେଲେ ଦେଖିଲା ବେଳକୁ ଏଇଟା ଖାଣ୍ଟି ଝିଅଟା ।

ଗାୟତ୍ରୀ : ଝିଅଟା ବୋଲି କେମିତି ଚିହ୍ନି ପକେଇଲୁ ?

ପବନା : ଏଇ ଦେଖୁନା ... ତା ତାଳୁରେ କେମିତି ଟିକିଲି ପିନ୍ଧିଛି ।

ଗାୟତ୍ରୀ : (ହସି ଟିକିଲଟା ଛଡ଼େଇଆଣି) ଆରେ କାଲି ମୁଁ ସେଇଟା ସେଇଠି ମାରି ଦେଇଥିଲି ।

ପବନା : ଏଇଟା ଆସିବାର ଏକୋଇଶା ଯାଇନି ତୁମେ ଅପା ତାକୁ ଟିକିଲି ପିନ୍ଧେଇ ଦେଲଣି ଆଉ କେତେଦିନ ଗଲେ ଭାବୁଛି ତୁମେ ତାକୁ ଶାଢ଼ି ପିନ୍ଧେଇଦେବ ।

ଗାୟତ୍ରୀ : ହଉ, ବକ ବକ ବନ୍ଦ କରି ଭଲକରି ସଫାକର । ପଛ ପାଖରେ ଦେଖ କୋଉଠୁ ଗୋବର ଦାଗ ଲାଗିଯାଇଛି । ଟିକିଏ ସର୍ଫ ପାଣି ଆଣି ମାରି ସେଇଟା ଛଡ଼େଇଦେବୁ । ମୁଁ ଯାଉଛି ପିନ୍ଧାପିନ୍ଧି କରି - କଂପ୍ୟୁଟର କ୍ଲାସ୍ ଯିବି ।

(ଗାୟତ୍ରୀ ଭିତରକୁ ଯାଏ)

ପବନା : ସଫା ତ କରୁଛି ଆଉ କେମିତି ସଫା କରିବି ? ମୋ ସଫା ଯଦି ମନକୁ ପାଉନି ଲଣ୍ଡ୍ରିରେ ପକେଇ ଦିଅ ଯେ ସିଏ ସଫା ସୁତୁରା କରି ଇସ୍ତ୍ରୀମାରି ଦେଇଦେବ ।

(ଫୋନ୍ ରିଂ ହେଉଛି)

ପବନା : ତୁ ସେମିତି କ୍ରିଂ କ୍ରିଂ ହେଉଥା, କିଛି ଶୁଣିବିନି । ପ୍ରଥମେ ଅପାଙ୍କ କାମ... ।

ରେଣୁ : (ପ୍ରବେଶ) ହଇରେ ଫୋନଟା ଧରୁନୁ (ଫୋନ୍ ଧରି) ହ୍ୟାଲୋ ହ୍ୟାଲୋ... ହଁ... ହଁ ଧନେଶ୍ଵର ବାବୁଙ୍କ ଘର । କିଏ ପବନାର ମାମୁଁ ? କ'ଣ ହେଇଛି... ତା ମା' ଦେହ ଖରାପ୍ ... ହଉ ଏଇଠି ଅଛି । (ଫୋନରେ ହାତ ଦେଇ) ପବନା ... ଫୋନ୍ ଧର ତୋ ମାମୁଁ ଫୋନ୍ କରିଛନ୍ତି ।

(ପବନା ଫୋନ୍ ଧରିଛି)

ପବନା : (ଫୋନରେ) ହ୍ୟାଲୋ ... ହଁ କହୁଛି । ମୋ ମା'ର କ'ଣ ହେଇଛି ...? କେତେଦିନ

ହେଲା ...? କୋଉ ହସ୍ପିଟାଲକୁ...? ହଁ ହଁ । ନାଁ ନାଁ ମୁଁ ଆଜି ଚାଲିଯିବି । ବଡ଼ଭାଇ ସାଂଗରେ ଯାଇଛି ? ଠିକ୍ ଅଛି । ହଁ ...ହଁ...(ଫୋନ୍ ରଖିଦିଏ)

ରେଣୁ : କ'ଣ ହେଇଛି ତୋ ମାଆର ?

ପବନା : ପାଞ୍ଚ ଦିନ ହେଲା ଜ୍ୱର ହେଉଛି । ଆଜି ବେଶୀ ହେବାରୁ ଆମ ଗାଁ ପାଖ ହସ୍ପିଟାଲକୁ ନେଇଯାଇଛନ୍ତି ।

ରେଣୁ : ଜ୍ୱର ... କି ଜ୍ୱର ହେଇଛି ବୋଲି କହୁଥିଲେ ?

ପବନା : କେଜାଣି ? ମାମୁଁ କହୁଥିଲେ ଯେତେ ଔଷଧ ଦେଲେ ବି ଡାଡି ଓହ୍ଲାଉନି । ମା' ମୁଁ ଆଜି ଗାଁକୁ ଚାଲିଯିବି । ଦିନ ଦି'ଟା ବେଳକୁ ବସରେ ଚାଲିଯିବି ।

ରେଣୁ : ହଁ, ତୋ ମା ଦେହ ଖରାପ୍ ହେଇଛି ତୋତେ ମୁଁ କେମିତି ରଖାଇବି । ତୁ ଆଜି ଚାଲିଯା ।

ପବନା : ମାଆ- ବଡ଼ଭାଇ ପାଖରେ କିଛି ପଇସା ନାହିଁ ବୋଲି ମାମୁଁ କହୁଥିଲେ, ମୋତେ ଆସନ୍ତା ମାସର ଦରମାଟା ଆଗୁଆ ଦେଇଦେବେ ।

ରେଣୁ : ହଁ ଦିଆହେବ ! ତୁ ବ୍ୟସ୍ତ ହୁଅନା, ମୁଁ ବାବୁଙ୍କ ସାଙ୍ଗରେ କଥା ହେଇଯାଉଛି । ତୁ ତୋ କାମ ସାର ।

ପବନା : ବାବୁ ତ ଅଫିସ୍ ଯାଇଛନ୍ତି, ସେ ଫେରିଲା ପର୍ଯ୍ୟନ୍ତ କ'ଣ ଅପେକ୍ଷା କରିବି?

ରେଣୁ : ଅପେକ୍ଷା କରିବୁ କାହିଁକି ? ମୁଁ ତାଙ୍କୁ ଫୋନରେ ଜଣାଇ ଦେଉଛି । ଯା- ତୁ ତୋ କାମ ଦାମ ସାରିଦେ ଏବେ ୧୧ଟା ବାଜିଛି । (ଗାୟତ୍ରୀ ଆସିଛି)

ଗାୟତ୍ରୀ : ପବନା – ଗାଡ଼ିଟା ବାହାରକୁ ବାହାର କରିଦେ ।

ରେଣୁ : ଏବେ କରିଦେବ । ସେ ଆଜି ତାଙ୍କ ଗାଁକୁ ଚାଲିଯିବ । ତା ମା' ଦେହ ଖରାପ୍ ବୋଲି ଫୋନ୍ ଆସିଥିଲା । (ପବନା ସ୍କୁଟି ନେଇ ବାହାରକୁ ଯାଏ)

ଗାୟତ୍ରୀ : କ'ଣ ହେଇଛି ତା' ମାର ?

ରେଣୁ : ଜ୍ୱର ହେଇଛି ନାଁ କ'ଣ...? ତୁ କମ୍ପୁଟର କ୍ଲାସ୍ ଯାଇ ସିଧା ଘରକୁ ଆସିବୁ ।

ଗାୟତ୍ରୀ : ହଁ କମ୍ପୁଟର କ୍ଲାସ୍ ଶେଷ କରି ଜୁଲି ପାଖରେ ଟିକିଏ କାମ ସାରି ଆସିବି, ମୁଁ ଯାଉଛି ମମି... ।

(ଗାୟତ୍ରୀ ଚାଲିଯାଏ, ରେଣୁ ଫୋନ୍ ଲଗାଇବାକୁ ବସିଯାଆନ୍ତି, ମଂଚ ଅନ୍ଧାର ହୁଏ ।)



# ଦ୍ୱିତୀୟ ପାଦ

(ସେଇ ଘର । ବାହାରୁ କଲିଂ ବେଲର ଶବ୍ଦ ଶୁଣାଯାଏ ।
ରେଣୁ ଯାଇ ଦରଜା ଖୋଲନ୍ତି । ପ୍ରବେଶ କରନ୍ତି ସରୋଜ ।)

ରେଣୁ : ଆଜି ଏତେ ସଅଳ ଅଫିସରୁ ଚାଲି ଆସିଲ ଯେ ?

ସରୋଜ : କହୁଛି (ବାହାରକୁ ଚାହିଁ) ଭୁବନାନନ୍ଦ ବାହାରେ ଠିଆ ହୋଇ ରହିଲ ଯେ, ଭିତରକୁ ଆସ ।

ରେଣୁ : କିଏ ?

ସରୋଜ : ମୋର ଜଣେ ପିଲାଦିନର ବନ୍ଧୁ । ଭୁବନାନନ୍ଦ ।

ଭୁବନା : (ପ୍ରବେଶ) ଭାଉଜ ନମସ୍କାର ।

ରେଣୁ : ନମସ୍କାର ।

ସରୋଜ : ଏମିତି ବୋକାଙ୍କ ଭଳି ଠିଆ ହୋଇ ରହିଛ କ'ଣ । ଆମ ଗାୟତ୍ରୀ ପାଇଁ ବିଏ ପ୍ରସ୍ତାବ ଦେଇ ଚିଠି ଲେଖିଥିଲେ ସେ ହେଉଛନ୍ତି ଏଇ ଭଦ୍ରଲୋକ ।

ଭୁବନା : ମୋତେ ଦେଖି କେହି ଭଦ୍ରଲୋକ ବୋଲି କହିବ ଭାଉଜ ? ଲୋକେ ନୁହେଁ ! ଭୂତ ବୋଲି ଡାକନ୍ତି । ଭୂ...ତ !

ରେଣୁ : ମାନେ ... ?

ଭୁବନା : ମାନେ ଯିଏ ମଶାଣିରେ ରହେ । ଯାହାକୁ ଦେଖିଲେ ଛାତିରେ ଛନକା ପଶିଯାଏ । ଲୋକ ଅତର୍କା ଦୁଇ ତିନିଟା ପୋଖରୀ ପାଣି ଯାଇ - ସିଧା ଉପରକୁ ଟିକେଟ୍ କାଟେ । ମୁଁ ସେଇ ଭୁବନାନନ୍ଦ ତରାଇ । ସଂକ୍ଷେପରେ ଭୂ-ତ ଭୂତ । ମୋ ଚେହେରା ଦେଖି ଜାଣିପାରୁନାହାଁନ୍ତି । (ହାଃ ହାଃ ହାଃ...)
(ଭୁବନା ଗୋଟେ ନାରକୀୟ ହସ ହସିଦିଏ ସମସ୍ତେ ହସିଉଠନ୍ତି)

ସରୋଜ : ଦେଖିଲ , କେମିତିକା ମଉଜିଆ ଲୋକ । ସବୁବେଳେ ଏମିତି ମଜା ମଜା କଥା କହି ପରିବେଶଟା ହାଲୁକା କରିରଖିବ ।

ରେଣୁ : ବସନ୍ତୁ, ଏମିତି ଠିଆ ହୋଇରହିଲେ କାହିଁକି ? ମୁଁ ଯାଇ ଚା' କରିଆଣେ ।

ଭୁବନା : ଅଜବ କଥା । ଭୂତ ଚା' ଖାଇବା କଥା, କିଏ କେବେ ଶୁଣିଛି । ଆପଣ ଭୂତର ନା ପାଣି ବୁଡ଼େଇବା ନା' କଣ । ଭୂତକୁ ଝୁଣା ଧୂଆଁ ଗୁଡ଼ପଣା ଦିଆଯାଏ ପରା- ଏ କଥା ଆପଣ ଶୁଣି ନାହାଁନ୍ତି ?

ରେଣୁ : ତା'ହେଲେ ସର୍ବତ କିମ୍ବା କୋଲ୍ଡ଼ ଡ୍ରିଙ୍କସ୍ ।

ଭୁବନା : ନା'ନା' ସେ କୋଲ୍ଡ଼ ଡ୍ରିଙ୍କସ୍ ସର୍ବତ ଦେଇ ଠକିଦେଲେ ଚଳିବନି । ଆପଣଙ୍କ ସହିତ ଏ ଭୂତର ଏଇଟା ପ୍ରଥମ ସାକ୍ଷାତ୍ । ଯାହା ଚାହିଁବି ସେୟା ଖାଇବାକୁ ଦେବାକୁ ହେବ । ନଚେତ୍ ଏ ଭୂତ ସହଜରେ ଆପଣଙ୍କୁ ଛାଡ଼ିବନି ।

ରେଣୁ : କ'ଣ ଖାଇବେ କୁହନ୍ତୁ । ଘରେ ନ ଥିଲେ ମଗେଇ ଦେବି ।

ଭୁବନା : ମଗେଇକରି ଦେବେ ? ତା ହେଲେ ହୋଇଗଲା । ଆପଣ କୁଆଡ଼େ ନଯାଇ ପ୍ରଥମେ ଏଇଠି ବସନ୍ତୁ ।

ରେଣୁ : ମାନେ ?

ଭୁବନା : ମାନେ ଏଇ ଦଶମିନିଟ୍ ପୂର୍ବରୁ ସରୋଜ୍ ଅଫିସରେ ବସି ଚା ପିଇ ଆସିଛି । ଅଧଘଣ୍ଟା ଭିତରେ ମୋ ଗାଁ ବସଧରି ଫେରିଯିବାର ଅଛି । ତେଣୁ ଖାଇବାକୁ ଦେବା ବାହାନା କରି ଏଠୁ ଖସିଗଲେ ଚଳିବନି । ଆପଣ ଏଇଠି ବସିଲେ ମୋ କାମ ସାରି ମୁଁ ଚାଲିଯିବି ।

ସରୋଜ : ହଁ ରେଣୁ ସେ ଠିକକଥା କହିଛି । ତୁମେ ବସ । ଆଚ୍ଛା ଗାୟତ୍ରୀ ଘରେ ଅଛି ନା ?

ରେଣୁ : ନା, ସେ ତା କମ୍ପୁଟର କ୍ଲାସକୁଯାଇଛି ।

ସରୋଦ୍ : ଫୋନ୍ ଲଗେଇଲ - ଗାୟତ୍ରୀକୁ କୁହ ଏଠିକି ଆସିବ ।

ଭୁବନା : ଥାଉ ସରୋଜ । ଗାୟତ୍ରୀକୁ ଦେଖିବା ଯୋଜନା କଲେ ମୁଁ ମୋ ବସ୍ ଧରି ପାରିବିନି ।

ରେଣୁ : ତୁମେ ଅଫିସ୍ ଜିପ୍ ନେଇ ଆସିଛ ତ ? ଡ୍ରାଇଭରକୁ କହିଲେ ସେ ଯାଇ ତାକୁ ନେଇଆସିବ ।

ଭୁବନା : ନାଁ, ମୋର ରବିବାର ଦିନ ପୁଣି ଆସିବାର ଅଛି । ସେ ଦିନ ତାକୁ ଦେଖିନେବି । ଆପଣମାନେ ରବିବାର ଦିନ ମୋ ଘରକୁ ଗାଡ଼ି ନେଇଯିବେ ସେଇଥିରେ ମୁଁ ଚାଲିଆସିବି । ସୋମବାର ଦିନ ମୋର କଚେରୀରେ ଗୋଟେ ତାରିଖ ଅଛି ।

ରେଣୁ : ୟା' ଭିତରେ ରବିବାର ଦିନ ପ୍ରୋଗ୍ରାମ ହୋଇଯାଇଛି ।

ସରୋଜ୍ : ହଁ । ଭୁବନା ତା ସାଂଗ ପୁଅ ପାଇଁ ଯେଉଁ ପ୍ରସ୍ତାବ ଦେଇଛି ସେ ଏବେ ଦୁଇ ଚାରି ଦିନ ପାଇଁ ଗାଁକୁ ଆସିଛି ।

ଭୁବନା : ହଁ ଭାଉଜ ସେ ପିଲାଟି ବ୍ୟାଙ୍କ ଅଫ୍ ଇଣ୍ଡିଆରେ ପି.ଓ. ଅଛି । ଏବେ ତାର ମାଡ୍ରାସ୍ ବଦଳି ହୋଇଛି । ସେଇଥିପାଇଁ କହୁଛି ରବିବାର ଦିନ ଆପଣ ଦୁଇଜଣ

ଆମ ଘରକୁ ଆସନ୍ତୁ । ସେ ପିଲାକୁ କୌଣସି ବାହାନାରେ ମୁଁ ଘରକୁ ଡକେଇଦେବି । ଯଦି ଆପଣମାନଙ୍କର ମନପାଇବ ତାପରେ ତା ବାପା ପାଖରେ ଆପଣଙ୍କ ଝିଅର ପ୍ରସ୍ତାବଟା ପକାଇବି ।

ରେଣୁ : ପୁଅକୁ ଆଣି ପ୍ରଥମେ ଗାୟତ୍ରୀକୁ ଦେଖେଇ ଦେଲେ ଭଲ ହୁଅନ୍ତା । ସେ ବ୍ୟାଙ୍କରେ ପି.ଓ. ଅଛି ବୋଲି କହୁଛନ୍ତି ଆମର ଦେଖିବାରେ କ'ଣ ଅଛି ।

ଭୁବନା : ଆପଣଙ୍କର ନ ଥାଇପାରେ ଭାଉଜ ମୋର ଅଛି । ସରୋଜ ଯେମିତି ମୋର ବନ୍ଧୁ ସେ ପିଲାର ବାପା ବନମାଳୀ ସେମିତି ବନ୍ଧୁ । ମୁଁ ଚାହୁଁଛି ପ୍ରସ୍ତାବଟା ପଡ଼ିବା ପୂର୍ବରୁ ଆପଣ ସେ ପିଲାକୁ ଦେଖି ମତାମତ ଦିଅନ୍ତୁ । ଆପଣଙ୍କ ଝିଅ ଉଚ୍ଚ ଶିକ୍ଷିତା ପୁଣି ପିଲାଟି ଦିନରୁ ସହର ବଜାରରେ ବଢ଼ିଛି । ସେ ସେଇ ଗାଁ ପରିବେଶ ଭିତରେ ଠିକ୍ ଚଳିପାରିବ କି ନାହିଁ ଦେଖନ୍ତୁ ।

ସରୋଜ୍ : ଭୁବନା ଠିକ୍ କହୁଛି । ସେ ଯେତେବେଳେ ପ୍ରସ୍ତାବଟା ଆଗେଇ ନେବାର ସମସ୍ତ ଭାର ନେଇଛି ଆମେ ଲୁଚାଣିଆ ଯାଇ ଦେଖିଆସିଲେ ଅସୁବିଧା କ'ଣ?

ରେଣୁ : ଆଛା ପୁଅର ବାପା କ'ଣ କରନ୍ତି ?

ଭୁବନା : କରୁଛି ଆଉ କ'ଣ, ପାଲା ଗାଉଛି ।

ରେଣୁ : ମାନେ ?

ଭୁବନା : (ପାଲା ଗାଇବା ଭଳି ବାଁ ହାତକୁ କାନ ପାଖରେ ଲଗେଇ ଡାହାଣ ହାତକୁ ଲମ୍ବାଇ ଗୀତ ଗାଇ, ଗାଇବା ଢଙ୍ଗରେ ସଂଳାପ ବଢ଼ିବ) ଏମିତି ରାତିରେ ଚାମର ହଲେଇ ପାଲା ଗାଉଛି । ଆଉ ଦିନରେ ଆମ ଗାଁ ହାଇସ୍କୁଲରେ ଶିକ୍ଷକତା କରୁଛି । ଭଲ ଗାୟକ ହିସାବରେ ଆମ ଅଂଚଳରେ ନାଁ କରିଛି । ହୋ.. ଓ.. ଓ

ରେଣୁ : ଠିକ୍ ଅଛି । ଆପଣ ଯଦି ଚାହୁଁଛନ୍ତି ଆମେ ଯାଇ ଆପଣଙ୍କ ଘରେ ସେ ପୁଅକୁ ଦେଖି ଆସିବା ।

ଭୁବନା : ତା ହେଲେ ଉଠୁଛି । ପୁଣି ଆପଣମାନଙ୍କ ସହିତ ରବିବାର ଦିନ ଦେଖାହେବ । (ସରୋଜକୁ) ଆରେ ତୁ କାହିଁକି ଉଠୁଛୁ ?.... ଉ .....ଉ ।

ସରୋଜ : ତୋତେ ଜିପରେ ନେଇ ବସଷ୍ଟାଣ୍ଡରେ ଛାଡ଼ି ଦେଇଆସିବି ।

ଭୁବନା : ଭୂତ କ'ଣ ଜିପ କାରରେ ଯାଏ । ସେ'ତ ପବନ ସହିତ ସମାନ୍ । ସେ ଯୁଆଡ଼େ ଚାହିଁବ ସିଆଡେ ଉଡ଼ି ଉଠି ଚାଲିଯିବ । ନା' କଣ କହୁଛ ଭାଉଜ । ତୁ ଆସିବାର ଦରକାର ନାହିଁ । ବରଂ ତୋ ଡ୍ରାଇଭରକୁ କହିଦେ- ସେ ମୋତେ ନେଇ ଛାଡିଦେବ .... ବସ୍‌ଷ୍ଟାଣ୍ଡରେ.... ରେ.....ରେ..... । (ଏଇ ସଂଳାପରେ ପାଲାରେ ଗାଇବା ଭଳି ବନ୍ଦ ହେବ ।

ସରୋଜ : ହଉ ହେଲା ... ଚାଲ ତାକୁ କହିଦେଇ ଆସେ ।

ଭୁବନା : (ରେଣୁକୁ ଚାହିଁ) ନମସ୍କାର ଭାଉଜ ଭୂତ ଚାଲିଲା... । ସୁଉ...ଉ...
(ପବନ ଭଳି ପାଟିରେ ସୁ ସୁ ଆବାଜ କରି ଭୁବନା ଆଗେ ଆଗେ ବାହାରି ଯାଏ । ତା'ପଛେ ପଛେ ସରୋଜ୍ ହସି ହସି ଯାଏ । ରେଣୁ ହସି ହସି ହାତଯୋଡ଼ି ସେମାନଙ୍କ ବାଟକୁ ଚାହିଁ ରୁହନ୍ତି, ପରେ ପରେ ସରୋଜ ଫେରି ଆସନ୍ତି ।)

ରେଣୁ : ସତରେ ତୁମର ଏଇ ଭୂତ ସାଙ୍ଗ ବଡ଼ ମଜାଳିଆ ଲୋକ । ନହେଲେ୍ ଏତିକି କମ ସମୟର ପରିଚୟ ଭିତରେ ପାଲାଗାଇବା – ଭୂତ ଭଳି ସୁ ସୁ ଆବାଜ କରିବା ... ଏ କଥା ସମସ୍ତେ କରିପାରିବେନି ।

ସରୋଜ : ହୁଁ, ଲାଜ, ସଂକୋଚ୍, ଏ ସବୁ ପିଲାଟି ଦିନରୁ ଭୁଲିଯାଇଛି । ଅନେକ ସମୟରେ ଏମିତି ହୁଏ ଯେ କ୍ଲାସରେ ସାରଙ୍କ ପାଖରୁ ମାଡ଼ ଖାଏ । କିନ୍ତୁ କ'ଣ ହେବ ଗୋଟେ ଗାଲରେ ଥାପଡ଼ ଖାଉଥିବ ଏପଟେ ଆମମାନଙ୍କୁ ଚାହିଁ ମୁରୁକି ମୁରୁକି ହସୁଥିବ । ବେଳେବେଳେ ସାରମାନେ ତା ଢଙ୍ଗ ଢାଙ୍ଗ ଦେଖି ହସକୁ ଚାପି ପାରନ୍ତିନି ।

ରେଣୁ : ହେଲେ ବୟସ ଆସି ଏତେ ହେଲାଣି – ଏସବୁ କରିବାକୁ ତାଙ୍କୁ ସଂକୋଚ ଲାଗେନି ।

ସରୋଜ : ନା, ବରଂ ଅନ୍ୟକୁ ହସେଇବା କାମକୁ ସେ ଗୋଟେ ପ୍ରକାର ସେବା କରୁଛି ବୋଲି ବିଚାର କରେ ।

ରେଣୁ : ବେଶ୍ ଅଜବ ଲୋକଟିଏ ତୁମର ବନ୍ଧୁ ... ।

ସରୋଜ : ତୁମେ ତାକୁ ଯାହା କହିପାର – ହେଲେ ତା'ର କହିବା କଥା ହେଲା– ଆଜିକାଲିକା ଲୋକଙ୍କ ମୁହଁରୁ ଧୀରେ ଧୀରେ ହସ ଉଭେଇ ଯାଉଛି । ସମସ୍ତେ ଜୀବନ ଜଂଜାଳର ଘୋଡ଼ା ଦୌଡ଼ରେ ଏତେ ମାତି ଯାଉଛନ୍ତି ଯେ, ଟିକିଏ ମନଖୋଲି ହସିବାକୁ କାହା ପାଖରେ ଫୁରୁସତ୍ ନାହିଁ । ତେଣୁ ସମୟ ସୁଯୋଗ ପାଇଲେ ସେ ଭେଟୁଥିବା ଲୋକମାନଙ୍କୁ ହାସ୍ୟାମୃତ ବାଣ୍ଟିଦେଉଛି ।

ରେଣୁ : ହାସ୍ୟାମୃତ, ସେ ପୁଣି କ'ଣ ?

ସରୋଜ ତା'ର ଯୁକ୍ତି ହେଲା– ସ୍ବର୍ଗର ଅମୃତ ଭଳି ମର୍ତ୍ତ୍ୟରେ ହସ ହେଉଚି ଏକ ଚମତ୍କାର ଜିନିଷ । ଅମୃତ ଭଳି ହସ ଆମକୁ ଜୀବନୀଶକ୍ତି ପ୍ରଦାନ କରେ । ତେଣୁ ହସର ଅନ୍ୟନାମ ହାସ୍ୟାମୃତ । ଅନ୍ୟକୁ ହସାଇବା ଏକ ମହତ୍ ସେବା ।
(ଫୋନ୍ ରିଂ ହୁଏ । ରେଣୁ ଫୋନ୍ ଉଠାଇ କଥା ହୁଅନ୍ତି ।)

ରେଣୁ : (ଫୋନରେ) ହାଲୋ, ହଁ କହୁଛି । ଆପଣ କିଏ କହୁଛନ୍ତି ? ପବନାର ଭାଇ । ଆଚ୍ଛା ପବନା ଆସିବାର କଥା, କାହିଁକି ଆସିଲାନି ? ଆଚ୍ଛା ...! କେବେ ଆସିବ ? ରବିବାର ଦିନ ସକାଳେ ପହଁଚିବ, ଠିକ୍ ଅଛି । ତାକୁ କହିବେ ସେ ଯେମିତି ସେ ଦିନ ନିଶ୍ଚୟ ଆସିବ । ରଖୁଛି ।

(ଫୋନ୍ ରଖିଦିଅନ୍ତି)

ସରୋଜ : କିଏ ? କାହା ସହିତ କଥା ହେଉଥିଲ ?

ରେଣୁ : ପବନାର କେହି ଜଣେ ଭାଇ ବୋଲି କହୁଥିଲା । ପବନାର ମା' ଦେହ ଏ ପର୍ଯ୍ୟନ୍ତ ଭଲ ହେଇନି । ସେ ଏବେ ଆସିପାରିବନି । ରବିବାର ଆଡ଼କୁ ଆସିବ ।

ସରୋଜ : ଚାକର ବାକରଙ୍କ କଥା ସେମିତି । ଥରେ ଫିକର କରି ଛୁଟି ନେଇଗଲେ ଆଉ ଧରାଛୁଆଁ ଦେବେନି ।

ରେଣୁ : ରବିବାର ଦିନ ସିଆଡ଼େ ଯିବାପାଇଁ ପ୍ରୋଗ୍ରାମ କରିଦେଇଛେ । ଯଦି ପବନା ନ ଆସେ ଗାୟତ୍ରୀକୁ କାହାପାଖରେ ଛାଡିଦେଇ ଯିବା ?

ସରୋଜ : ଦେଖିବା କ'ଣ ହେଉଛି । କିଛି ନ ହେଲେ ଗାୟତ୍ରୀ ତା ସାଂଗ ଜୁଲି ଘରକୁ ଚାଲିଯିବ । ଆମେ ଯେମିତି ହେଲେ ଉପରବେଳା ଚାରିଟା ପାଞ୍ଚଟା ବେଳକୁ ଫେରିଆସିବା । ପଚାଶ କିଲୋମିଟର ବାଟ କେତେ ସମୟ ଲାଗିବ । ହେଇ ଗାୟତ୍ରୀ ଆସିଲାଣି ।

(ଗାୟତ୍ରୀ ଆସେ)

ଗାୟତ୍ରୀ : ମୁଁ ସବୁ ଶୁଣିନେଇଛି ଡ୍ୟାଡି । ମୋତେ ଲୁଚେଇ ଲୁଚେଇ କୁଆଡ଼େ ଯିବାର ପ୍ରୋଗ୍ରାମ୍ ହେଉଛି ବୋଧହୁଏ । ସତକୁହ ?

ସରୋଜ : (ହସି) ଆରେ ତୋତେ ଲୁଚେଇ ଆମେ କିଛି କରିପାରିବୁ ? ତୁ କହିଲୁ- ଆମେ କୁଆଡ଼େ ଯିବାକୁ ଠିକ୍ କରିଛୁ?

ରେଣୁ : ତା'କୁ କାହିଁକି ସେମିତି ବୁଲେଇ ବାଙ୍କେଇ କହୁଛ । ଶୁଣ ତୋ ଡ୍ୟାଡିଙ୍କର ଜଣେ ବନ୍ଧୁ ବଡ ଅସୁସ୍ଥ । ରବିବାର ଦିନ ତାଙ୍କୁ ଯାଇ ଦେଖି ଆସିବୁ ବୋଲି ଆମେ ଠିକ୍ କରିଛୁ ।

ଗାୟତ୍ରୀ : ମୋତେ ସାଙ୍ଗରେ ନେବେନା ଡ୍ୟାଡି ?

ରେଣୁ : ମା' ତୁ ସେଠି ଯାଇ ଖାଲି ବୋର୍ ହେବୁ । ସେଟା ଗୋଟେ ମଫସଲ । ଏ ବର୍ଷାଦିନଟାରେ ବାଟଘାଟ ଅବସ୍ଥା କେଣଥିବ କହିହେଉନି । ତା'ପରେ ପବନା ରବିବାର ଦିନ ଆସିବ ବୋଲି ଫୋନ୍ କରିଥିଲା । ସଂଧ୍ୟା ପୂର୍ବରୁ ଆମେ

ଫେରିଆସିବୁ । ତୋତେ ଜୁଲି ଘରେ ଛାଡିଦେଇ ଯିବୁ ବୋଲି ଭାବିଛୁ ।

ଗାୟତ୍ରୀ : ନା, ବାବା ନା । ତାଙ୍କ ଘରେ ଦିନସାରା ମୁଁ ରହିପାରିବିନି । ସେଠି ସବୁବେଳେ ଏତେ ଗହଳି ଯେ ଘଣ୍ଟାଏ ରହିଲେ ମଣିଷ ଅଣନିଶ୍ୱାସି ହୋଇଯିବ, ମମି ତୁ ବରଂ ଗୋଟେ କାମ କରିବୁ । ମୋ ପାଇଁ ଦୁଇ ତିନିଟା ନୂଆ ସି.ଡ଼ି. ମଗେଇ ଦେବୁ । ମୁଁ ଜୁଲିକୁ ଏଇଠି ଡକେଇ ଦେବି । ପବନା ଆସିଲେ ଭଲ କଥା । ନ ହେଲେ ଆମେ ପାଖ ହୋଟେଲରୁ ଚାଇନିଜ୍ ଖାନା ନେଇଆସିବୁ । ଆଉ ଗୋଟାକ ପରେ ଗୋଟାଏ ଫିଲ୍ମ ଦେଖି ଚାଲିବୁ... । ଓ.କେ... ବୋଧହୁଏ । ତୁମମାନଙ୍କର ସବୁ ପ୍ରୋବ୍ଲେମ୍ ସଲ୍ଭଡ୍ । ଟାଂ ଟାଂଣ ....

(ରେଣୁ ଚାଲିଯାଏ । ସମସ୍ତେ ହସିଉଠନ୍ତି)



# ତୃତୀୟ ପାଦ

(ସେଇ ଘର । ଫୋନ୍ ରିଂ ହେଉଛି । ଗାୟତ୍ରୀ ଆସି ଫୋନ୍ ଧରେ)

ଗାୟତ୍ରୀ ହ୍ୟାଲୋ ... ହଁ ଜୁଲି । କ'ଣ ହେଲା ?ଡ୍ୟାଡ଼ି ମମି ତାଙ୍କ ସାଙ୍ଗ ଘରକୁ ଜିପ୍ ନେଇ ବାହାରି ଗଲେଣି । ଆମ ଚାକର ଟୋକା ବି ନାହିଁ । ତୁ ଚଂଚଳ ଆସିଲେ ସାଂଗ ହୋଇଯିବା - ତୁ ଯାହା ଯାହା ଫିଲ୍ମ କହିବୁ ତାର ସି.ଡ଼ି. ନେଇଆସିବା । ମାନେ...ଘଣ୍ଟାଏ ଡେରିହେବ । ତୋ ନାନୀ ଭିଣୋଇ ଗଲାପରେ ନିଶ୍ଚୟ ଆସିବୁ । ରହିଲି ।

(ଫୋନ୍ ରିସିଭର ରଖି ଭିତରକୁ ଗଲାବେଳକୁ ବାହାରୁ କଲିଙ୍ଗ ବେଲର ଶବ୍ଦ ଶୁଣାଯାଏ । ଗାୟତ୍ରୀ ଯାଇ ଦରଜା ଖୋଲେ । ପ୍ରବେଶ କରନ୍ତି ସଂଗୀତ ଗୁରୁ ସୁରମଣି । ହଠାତ୍ ଦେଖିଲେ ପୁଅ କି ଝିଅ ଭ୍ରମ ସୃଷ୍ଟି ହେବ । କଣ୍ଠରେ ତାଙ୍କର ଗୀତର ଆଳାପ । ତା ସହିତ ବିଭିନ୍ନ ମୁଦ୍ରାର ହାତର ଭଙ୍ଗି । ନିଜକୁ ସବୁବେଳେ ତୃତୀୟ ପୁରୁଷ ମନେକରି କଥା କୁହନ୍ତି ।)

ଗାୟତ୍ରୀ : ସାର୍ ଆପଣ ଆଜି କେମିତି ? ଆପଣ ତ ଆସନ୍ତା କାଲି ଆସିବା କଥା ।

ସୁର : ଏଇ ସୁରମଣୀ କ'ଣ ସେ କଥା ଜାଣିନି ବୋଲି ଭାବୁଛ ବେବି ? ୟା'କୁ ସବୁ ଜଣାଅଛି । ହଠାତ୍ ଆସନ୍ତାକାଲି ନା ଗୋଟେ ଦୂରଦର୍ଶନ ପ୍ରୋଗ୍ରାମ୍ ଆସିଯାଇଛି । ସୁରମଣୀ ଆସନ୍ତାକାଲି ତୁମ କ୍ଲାସ୍ ନେଇପାରିବନି ବେବି । ଆଜି ନେଇଯିବାକୁ ଆସିଛି ।

ଗାୟତ୍ରୀ : ଆଜି କ୍ଲାସ୍ ନେଇଯିବେ ...? କେତେବେଳେ ...?

ସୁର : ଆଜି ମାନେ ଏବେ କ୍ଲାସଟା ହୋଇଯିବାକୁ ଆସିଯାଇଛି । ତୁମର କିଛି ଆପତ୍ତି ଥିଲେ ସୁରମଣୀ ଫେରିଯିବ ବେବି ।

ଗାୟତ୍ରୀ : ନାଇଁ ଯେ ସାର । ମୋର ସେ ପଟେ କିଛି କାମ ରହିଯାଇଛି ।

ସୁର : ଯାଅ ତା ହେଲେ ଚଂଚଳ କାମ ସାରିଦେଇ ଆସ । ଜଲଦି ଆସିବ ସୁରମଣୀର ଉପରବେଳା ରେକର୍ଡିଂ ଅଛି ନା... ତାକୁ ଚଂଚଳ ଯିବାକୁ ପଡ଼ିବ । ଯାଅ ବେବି... ।

ଗାୟତ୍ରୀ : (ହସିଛି) ।

ସୁର : ଆରେ ତୁମେ ଏ ସୁରମଣୀକୁ ଦେଖି ଏମିତି ହସୁଛ କାହିଁକି ? ଆଜି କ'ଣ ପ୍ରଥମ ଦେଖୁଛ ?

ଗାୟତ୍ରୀ : ନାଇଁ ସାର୍, ପ୍ରଥମେ ଦେଖୁନି ଯେ ଆପଣ ନିଜକୁ ଜଣେ Third Person ଭଳି ଆଜି କାହିଁକି ସୁରମଣୀ ସୁରମଣୀ କହି ସଂବୋଧନ କରୁଛନ୍ତି ।

ସୁର : ଓଃ ଏଇ କଥାପାଇଁ ତୁମେ ହସୁଛ... । ନିଜକୁ ଏମିତି ସଂବୋଧନ କରିବା ଅଭ୍ୟାସ କରିବାକୁ ସୁରମଣୀର ଗୁରୁଦେବ ତାକୁ ଆଦେଶ ଦେଇଛନ୍ତି ।

ଗାୟତ୍ରୀ : ଆପଣଙ୍କର ପୁଣି ଗୁରୁଦେବ ଅଛନ୍ତି ?

ସୁର : ହଁ ବେବି । ସଂସାରର ମାୟାଜାଲରୁ ମୁକ୍ତି ପାଇବାକୁ ହେଲେ ସମସ୍ତଙ୍କର ଗୁରୁ ଶରଣ ଯିବା ଉଚିତ୍ । ସୁରମଣୀ ଏଇ ଗୁଢ଼ ତତ୍ତ୍ୱଟା ବୁଝିଯାଇଛି ।

ଗାୟତ୍ରୀ : ଆପଣଙ୍କ ଗୁରୁ ନିଜକୁ ଏମିତି ଭାବରେ ଅପର ମଣିଷ ଭଳି ସଂବୋଧନ କରିବାକୁ ଶିକ୍ଷା ଦେଇଛନ୍ତି ।

ସୁର : ହଁ, ତାଙ୍କ ମତରେ ଆମେ ସମସ୍ତେ ଗୋଟିଏ ଗୋଟିଏ ଆତ୍ମା । ଆମେ କିନ୍ତୁ ନିଜକୁ ଶରୀର ମନେ କରି ସଂସାରର ମାୟାଜାଲରେ ଫସିଯାଉଛେ । ପ୍ରକୃତରେ ଏଇ ଶରୀର ବସ୍ତ୍ର ସଦୃଶ । ଆମ ଆତ୍ମା ଏଇ ଶରୀର ରୂପକ ପୋଷାକ ପରିଧାନ କରିଛି । ଏଇ ଜ୍ଞାନ ଅଭାବରୁ ଆମେ ଦୁଃଖ ପାଉଛେ । ଶରୀର ଠାରୁ ନିଜକୁ ପୃଥକ କରି ଭାବିବା ଦ୍ୱାରା ଆମେ ଦୁଃଖରୁ ମୁକ୍ତି ପାଇପାରିବା । ତେଣୁ ପରମପୂଜ୍ୟ ବିଶ୍ୱବ୍ରହ୍ମ ଗୁରୁ ଶ୍ରୀ ଶ୍ରୀ ଏକଲକ୍ଷ ଏକ ଶତ ଆଠ ଶ୍ରୀ ସଦ୍‌ଗୁରୁ ସାକ୍ଷାତ୍ ପରମବ୍ରହ୍ମ ପରମେଶ୍ୱର ଗଦ୍‌ଗଦ୍ ସ୍ୱାମୀ ପରମାନନ୍ଦ ବ୍ରହ୍ମ ବୈଷ୍ଣବ ମହାରାଜ କହିଛନ୍ତି ।

ଗାୟତ୍ରୀ : ଠିକ୍ ଅଛି ସାର୍ ବୁଝିଗଲି । ଆପଣ ବସନ୍ତୁ, ମୁଁ କାମ ସାରି ଆସେ ।

ସୁର : ଯାଅ, ବେବି ଯାଅ । ତୁମେ ତୁମ କାମ ସାରି ଆସିଲା ଭିତରେ ସୁରମଣୀ ତାନପୁରାର ସ୍ୱର ମିଳନ କରିଦେଇଥିବ । ତାର ଚଞ୍ଚଳ ଯିବାର ଅଛିନା...ବେବି । (ଗାୟତ୍ରୀ ତାନପୁରା ଆଣି ଧରାଇ ଦେଇଯାଏ । ସୁରମଣୀ ତାନପୁରା ସହିତ ସ୍ୱର ମିଳାଇ ଠିକ୍ ଠାକ୍ କରନ୍ତି । ପରେ ପରେ ଗାୟତ୍ରୀ ଆସି ଯୋଗଦିଏ ।)

ସୁର : ଆଚ୍ଛା ବେବି ! ଗତଥର ଗୀତର ମୁଖଡ଼ାଟା ଘୋଷି ଦେବାକୁ କୁହାଯାଇଥିଲା ।

ଗାୟତ୍ରୀ : ହଁ ମନେ ଅଛି ସାର୍ ।

ସୁରମଣୀ : ସୁରମଣୀ ମୁଖୁଡ଼ାଟା ଶୁଣିବାକୁ ଚାହେଁ ।

ଗାୟତ୍ରୀ : (ଗୀତ) ଜୀବନରେ ଥରେ ଆସେ ସେ ଲଗନ, ସେ ଯେ ମଙ୍ଗଳ ମହୁରୀର ତାନ । ସେ ଯେ ବିଧିର ବିଧାନ ।

ସୁରମଣୀ : ନାଇଁ... ମୁଖୁଡ଼ାଟା ମନେ ଅଛି ହେଲେ ପଦଗୁଡ଼ା ଏପଟ ସେପଟ ହୋଇ ଯାଇଛି । ମନେରଖ... ଏଇ ପ୍ରକାର... ମଙ୍ଗଳ ମହୁରୀର ତାନ, ଜୀବନରେ ଥରେ ଆସେ, ସେ ଲଗନ, ସେ ଯେ ବିଧିର ବିଧାନ ।

ହେଲା ବେବି ... ସୁରମଣୀ ସହିତ ସୁର ମିଳେଇ ଗାଅ । (ପ୍ରଥମେ ଆଳାପ କରି ............... ଦୁହେଁ ଗୀତ ଅଭ୍ୟାସ କରନ୍ତି । ଗୀତ ଶେଷ ବେଳକୁ ଫୋନ୍ ରିଂ ହୁଏ । ଗାୟତ୍ରୀ ଫୋନ୍ ଧରେ ।)

ଗାୟତ୍ରୀ : ହାଲୋ ଜୁଲି । କ'ଣ କହିଲୁ - ମୁଁ ତୁମ ଘରକୁ ଯିବି... । ନା ମୁଁ ଘର ଛାଡ଼ି ଯାଇପାରିବିନି । ଯେତେ ଡେରି ହେଉ ପଛେ ତୁ ଆସ । ନିଶ୍ଚୟ ଆସିବୁ, ରଖୁଛି ।

(ଫୋନ୍ ରଖିଦିଏ ଗାୟତ୍ରୀ)

ସୁର : ସୁରମଣୀକୁ ଆଜି ଚା ମିଳିବନି ବେବି ? ତୁମର ସେ ଟୋକାଟା କାହିଁ ଦେଖାଯାଉନି ?

ଗାୟତ୍ରୀ : ଘରେ ଆଜି କେହି ନାହାଁନ୍ତି ସାର । ପବନା ତାଙ୍କ ଗାଁକୁ ଯାଇଛି । ଡ୍ୟାଡି, ମମି ତାଙ୍କର ଜଣେ ସାଙ୍ଗଘରକୁ ଯାଇଛନ୍ତି । ଆପଣ ବସନ୍ତୁ । ମୁଁ ଚା' କରି ଆଣୁଛି ।

ସୁର : (ଘଣ୍ଟା ଦେଖି) ନା' ବେବି । ସୁରମଣୀ ପାଖରେ ସମୟ ନାହିଁ । ତାକୁ ଦୂରଦର୍ଶନ କେନ୍ଦ୍ରକୁ ବାହାରିବାକୁ ହେବ । ଆସୁଛି ବାଏ ।

ଗାୟତ୍ରୀ : ନାଁ ସାର୍ । ଦି' ମିନିଟ୍ ବସିଯାଆନ୍ତେ ... ମୁଁ ସାଙ୍ଗେ ସାଙ୍ଗେ କରିଦିଅନ୍ତି ।

ସୁର : ବାସ୍ ବାସ୍ ସେତିକି ଯଥେଷ୍ଟ । ସୁରମଣୀ ଚାଲିଲା ... ହଁ ଗୀତଟାକୁ ଅଭ୍ୟାସ କରିଦେଇଥିବ... ।

(ସୁରମଣୀ ତାଙ୍କ ଠାଣିରେ ହାତ ହଲେଇ ହଲେଇ ଚାଲିଯାଆନ୍ତି । ଗାୟତ୍ରୀ ତାନପୁରା ରଖି ଖଟ ସଜାଡା ସଜଡି କରନ୍ତି । ପ୍ରବେଶ କରନ୍ତି ବନମାଳୀ । ତାଙ୍କ ହାତରେ ଦୁଇଟି ବ୍ୟାଗ୍ । ଗୋଟିକରେ କାଙ୍କଡ଼ ଭଣ୍ଡି ଓ ଅନ୍ୟଟିରେ ମାଛ ।)

ବନମାଳୀ : ସରୋଜ୍ ବାବୁ ଘରେ ଅଛନ୍ତି ...? ସରୋଜ...ସରୋଜ ... ।

ଗାୟତ୍ରୀ : ଡ୍ୟାଡି ଘରେ ନାହାଁନ୍ତି ।

ବନମାଳୀ : ଓଃ, ତୁ ତାହେଲେ ସରୋଜ ଝିଅ । ତୋ ନାଁଟି ଗାୟତ୍ରୀ ।

ଗାୟତ୍ରୀ : ହଁ, ହେଲେ ଆପଣଙ୍କୁ ମୁଁ... ।

ବନମାଳୀ : ହଁ ପରିଚୟଟା ତ ମୁଁ ଦେବି ହେଲେ ପ୍ରଥମେ ତୁ କହିଲୁ ସରୋଜ୍ କୁଆଡେ ଯାଇଛି । ଆଜି ତ ରବିବାର - ଅଫିସ ବନ୍ଦ ।

ଗାୟତ୍ରୀ : ସେ ତାଙ୍କର ଜଣେ ବନ୍ଧୁ ଘରକୁ ଯାଇଛନ୍ତି ।

ବନମାଳୀ : ବେଶ୍ ତା ହେଲେ ତୋ ମାମୀଙ୍କୁ ଡାକ । ଭାଉଜ...ଭାଉଜ... ।

ଗାୟତ୍ରୀ : ସେ ବି ନାହିଁ । ସେ ଡ୍ୟାଡିଙ୍କର ସାଙ୍ଗରେ ଯାଇଛି ।

ବନମାଳୀ : ତା'ମାନେ ରେଣୁବାଳା ମ୍ୟାଡାମ୍ ବି ନାହାଁନ୍ତି । ଏତେ ସକାଳୁ ସକାଳୁ କୁଆଡ଼େ ଟହଲ ମାରିବାକୁ ଚାଲିଗଲେ ।

ଗାୟତ୍ରୀ : ଡ୍ୟାଡ଼ି ମମି କୋଉ ଏକ ମଫସଲ ଗାଁକୁ ଯାଇଛନ୍ତି । ତାଙ୍କର କେହି ଜଣେ ସାଙ୍ଗର ଦେହ ଖରାପ୍ ଅଛି । ତାଙ୍କୁ ଦେଖି ଫେରୁ ଫେରୁ ସଂଧ୍ୟା ହୋଇଯାଇପାରେ ।

ବନମାଳୀ : ତା'ମାନେ ଏଇ ଘରେ ତୁ ଏକା ଅଛୁ ।

ଗାୟତ୍ରୀ : ନାଇଁ ମୋ ସାଙ୍ଗ ଏବେ ଆସିଯିବ । ତା'ପରେ ଆମ ଚାକର ପିଲା ପବନା ବି ଆଜି ଆସିବାର ଅଛି ।

ବନମାଳୀ : ଆସୁ... ହେଲେ ତୋ ଡାଡି ମମିଙ୍କର କାଣ୍ଡଜ୍ଞାନ ନାହିଁ ଦେଖୁଛି । ତୋତେ ଘରଟାରେ ଏକା ଏକା ଛାଡ଼ିଦେଇଯିବାଟା ମୁଁ ପସନ୍ଦ କରିପାରୁନି । ତୋତେ ଏକା ଏକା ଡର ଲାଗୁନି ମା... ?

ଗାୟତ୍ରୀ : ନିଜ ଘରଟାରେ ଏ ଦିନ ବେଳାରେ କାହାକୁ ଡର ଲାଗିବ ?

ବନମାଳୀ : ନା, ନା ଆଜିକାଲି ଲୋକଗୁଡ଼ାକ ଜଙ୍ଗଲି ଜାନୁଆରଠୁ ଆହୁରି ଭୟଙ୍କର ମା' । ନିଇତି ଖବରକାଗଜରେ କେତେକେତେ ବିଚିତ୍ର ଠକେଇର ବିବରଣୀ ବାହାରୁଛି - ତୁ ପଢୁଥିବୁ ନିଶ୍ଚୟ ।

ଗାୟତ୍ରୀ : ସେମିତି କିଛି ଭୟ କରିବାର ନାହିଁ ମଉସା । ତା ପରେ ଆମର ଏଇ ଏରିଆଟା ବହୁତ୍ ଭଲ ।

ବନମାଳୀ : ଏରିଆ ଭଲ ହେଲେ କ'ଣ ହେବ - ଆଜିକାଲି ସମୟଟା ପରା ଖରାପ୍ । ତୋ ଡ୍ୟାଡ଼ି ମମି ଆସନ୍ତୁ ତାଙ୍କୁ ମୋତେ ଦିପଦ ଶୁଣେଇବାକୁ ପଡ଼ିବ । ଝିଅଟାକୁ ଏକା ଛାଡ଼ିଦେଇ ସେମାନେ କେମିତି ଯାଇଛନ୍ତି । ନିହାତି କେୟାରଲେସ୍... ।

ଗାୟତ୍ରୀ : ମୋତେ ସେମାନେ ଏକା ଛାଡ଼ିଦେଇ ଯାଇନାହାଁନ୍ତି ମଉସା । ମୋ ସାଙ୍ଗ ଏବେ ଏଠିକି ଆସିବ । ଡାଡି ମମି ଫେରିବା ପର୍ଯ୍ୟନ୍ତ ରହିବ । ତା'ପରେ ଆଉ କିଛି ସମୟ ପରେ ପବନା ବି ଆସିବ ।

ବନମାଳୀ : ସେ ପବନା କିଏ ?

ଗାୟତ୍ରୀ : ଆମର ଚାକର ଟୋକା । ତା ମାଆ ଦେହ ଖରାପ ଥିଲା ତ ଗାଁକୁ ଯାଇଛି, ଆଜି ଆସିବ ବୋଲି ଖବରଦେଇଛି ।

ବନମାଳୀ : ଆଚ୍ଛା ଠିକ୍ ଅଛି । ଏ ବ୍ୟାଗଟା ନେଇ ରଖ ମା' ।

ଗାୟତ୍ରୀ : ଏଇଟା ?

ବନମାଳୀ : କିଛି ନାହିଁ । ଗାଁରୁ କିଛି ଦେଶୀ କାଙ୍କଡ଼ ଆଉ ଦି'ଟା ଇଲିସି ମାଛ ନେଇ ଆସିଛି । ଭାବିଥିଲି ଦୁଇବନ୍ଧୁ ଏକାଠି ବସି କାଙ୍କଡ଼ ଭଜାକୁ ଇଲିସି ମାଛର ଝୋଳ ଖାଇବୁ ହେଲେ ସବୁ ଗୋଳମାଳ ହୋଇଗଲା । ଆରେ ଏମିତି ଚାହିଁ ରହିଛୁ କଣ - ନେ ବ୍ୟାଗଟା... । କିଛି ଦିନ ତଳେ ତୋ ଡ୍ୟାଡି ସହିତ ମୋର ଦେଖାହୋଇଥିଲା । ଆମ ଗାଁରେ ଭଲ କାଙ୍କଡ଼ ମିଳେ ତ- ସେଇକଥା ପଚାରୁଥିଲା । ହଠାତ୍ ଏଠି ଗୋଟେ କାମ ପଡ଼ିଲା, ଏ ଗଣ୍ଡାକ ନେଇଆସିଲି । ଭାଗ୍ୟକୁ ଆମ ନଦୀରେ ଆଜି ଭାରି ଇଲିସି ମାଡ଼ ହେଉଛି । ସେଥିରୁ ଦି'ଟା ନେଇଆସିଲି । ଏପଟେ ଦେଖିଲା ବେଳକୁ ତୋ ଡ୍ୟାଡି ମମି କେହିନାହାଁନ୍ତି । ଏ ବ୍ୟାଗଟା ରଖିଲୁ ମା' ।

ମୁଁ ଚାଲିଲି ମା', ତୋ ଡ୍ୟାଡି ଆସିଲେ କହିବୁ ଭୁବନା ନନ୍ଦ ଆସିଥିଲା । ଭୁବନାନନ୍ଦ ତରାଇ । ମୋତେ ସେ ପିଲାବେଳେ ଭୂତ ଭୂତ ବୋଲି ଡାକେ । ବୁଝି ପାରୁନୁ ? ଭୁବନାନନ୍ଦରୁ ଭୁ ଆଉ ତରାଇରୁ ତ ସଂକ୍ଷେପରେ ଭୂତ । ହାଃ ହାଃ... ମୁଁ ଚାଲିଲି ।

(ଯାଉ ଯାଉ ହଠାତ୍ ତାନପୁରାଟାକୁ ଦେଖି ଅଟକି ଯାଆନ୍ତି)

ମୁଁ ଆସିଲା ବେଳକୁ ତୁ ଏଇ ଯନ୍ତଟା ଧରି ଗୀତ ଗାଉଥିଲୁ ନା । ଆଜି ତ ସିଆଡ଼େ ଗୁଡ଼େ କାମ ଅଛି ନ ହେଲେ ତୋ ମଧୁର କଣ୍ଠରୁ ଦି ଚାରିଟା ଭଜନ ଶୁଣିଥାନ୍ତି । ଡ୍ୟାଡି ମମି ଆସିଲେ କହିବୁ - ମୁଁ ପରେ କେବେ ଆସିଲେ ଭେଟ ହେବି । ହାଃ...ହାଃ... ।

(ବ୍ୟାଗଟି ଧରାଇ ଦେଇ ବନମାଳୀ ଚାଲିଯାଆନ୍ତି । ଗାୟତ୍ରୀ ଆଶ୍ଚର୍ଯ୍ୟ ହୋଇ ଚାହିଁ ରହିଥାଏ । ଫୋନ୍ ରିଂ ହୁଏ । ଗାୟତ୍ରୀ ଫୋନ୍ ଧରେ ।)

ଗାୟତ୍ରୀ : ହ୍ୟାଲୋ । ତୁଲି ତୁ ଏ ପର୍ଯ୍ୟନ୍ତ ବାହାରିନୁ । ତୋ ନାନୀ ଭିଣେଇ ଯାଇନାହାନ୍ତି ? ନା, ନା ମୁଁ ତୁମ ଘରକୁ ଯାଇପାରିବିନି । ହେଲୋ-ହେଲୋ । ହଉ ସେମାନେ ଚାଲିଗଲା ପରେ ଆସ । ଶୁଣ ଆସିବୁ ନିଶ୍ଚୟ । ମୁଁ ଘରେ ଏକା ଅଛି ।

(ଫୋନ୍ ରଖି ଦେଇ ଗାୟତ୍ରୀ ଦରଜା ବନ୍ଦ କରିବାକୁ ଯାଏ । ପୁଣି ଆସନ୍ତି ବନମାଳୀ)

ବନମାଳୀ : ଯାଉ ଯାଉ ହଠାତ୍ ମାଛ କଥାଟା ମନେପଡିଗଲା ମା' । ସେଇଥିପାଇଁ ଚାଲିଆସିଲି । ସେ ମାଛ ଗୁଡ଼ାକ ରାତିରୁ ମରାଯାଇଛି । ତାକୁ ତୁଂଡ଼ଳ କଟାବଛା ନ କଲେ ଖରାପ୍ ହୋଇଯିବ । ତୋତେ ଏ ସବୁ କାମ ଆସେ? ହଁ ତୁ ପାଠ ପଢୁଆ ଝିଅ, ଏ ସବୁ କାମ ଶିଖିବାକୁ ତୋର ସମୟ କାହିଁ । ବରଂ ଗୋଟେ କାମ କର । ପନିକିଟା ନେଇଆସ- ମୁଁ ମାଛ ପିଟାର କାଡି ଛଡ଼େଇ କାଟି ଦେଇଯିବି । ତୁ ବରଂ କଡ଼େଇରେ ତେଲ ଢାଳି ତାକୁ ଛାଣିଦେବୁ ।

ଗାୟତ୍ରୀ : ନା ମଉସା, ଆପଣ ଏ ସବୁ କରିବା ଠିକ୍ ହେବନି । ଏବେ ମୋ ସାଙ୍ଗ ଫୋନ୍ କରିଥିଲା - ସେ ପହଁଚିଯିବ । ଆମେ ଦୁଇଜଣ ସାଙ୍ଗ ହୋଇ ସବୁ ବଛାବଛି କରିଦେବୁ ।

ବନମାଳୀ : ସେ କଥା କହିଲେ ମୁଁ ଶୁଣିବି । ଏତେ ବାଟରୁ ବୋହି ବୋହି ଆଣିଛି ।ତୋ ସାଂଗ କେତେବେଳେ ଆସିବ କେତେବେଳେ ତୁମେ ଯ୍ୟକୁ ବାଛିବ- ତାର ଠିକ ଠିକଣା ନାହିଁ । ତା' ପରେ ତୁମେ ଏ ସବୁ ବାଗରେ କରିପାରିବ କି ନାହିଁ ଜଣାନାହିଁ । ସେତେବେଳକୁ ମାଛର ବାର ବାଜିଯାଇଥିବ । ତୁ ଆସିଲୁ ମୋ ସାଥିରେ ମୁଁ ପାଞ୍ଚ ମିନିଟରେ ସବୁ ଶେଷ କରିଦେବି ।

(ମାଛ ବ୍ୟାଗଟାକୁ ଧରି ବନମାଳୀ ବେଡରୁମ ଆଡ଼କୁ ଯାଉ ଯାଉ ଗାୟତ୍ରୀ ଅଟକାଏ ।)

ଗାୟତ୍ରୀ : ସେ ପଟେ ନୁହେଁ ମଉସା ... ସେଇଟା ବେଡ୍ରୁମ୍ । ଏପାଖକୁ ଆସନ୍ତୁ ରୋଷେଇ ଘର ବାରଣ୍ଡାରେ ବସି ବଛା ବଛି କରିବା ।

ବନମାଳୀ : ଠିକ୍ ଅଛି ।

(ଆଗେ ଆଗେ ବନମାଳୀ ତା ପଛେ ପଛେ ଗାୟତ୍ରୀ ରୋଷେଇ ଘର ଆଡ଼କୁ ଯାଆନ୍ତି । ମଂଚ଼ରୁ ଆଲୋକ କମିଯାଏ । କିଛି ସମୟ ଅନ୍ତରରେ ସେଇ ଦିଗରୁ ପୁଣି ଆସନ୍ତି ବନମାଳୀ ଓ ଗାୟତ୍ରୀ)

ବନମାଳୀ : ଆଉ କିଛି ଅସୁବିଧା ନାହିଁ ମା' ଗାୟତ୍ରୀ । ମଉସା ଝିଅାରୀ ମିଶି ଯେମିତି କଡ଼ାଭାଗରେ ଛାଣି ଦେଇଛେ ଗୋଟେ ସପ୍ତାହ ପରେ ଖାଇଲେ ମଧ୍ୟ ଏ ମାଛ ଖରାପ୍ ହେବନି । ମୁଁ ଯାଏ ତେଣେ ତୋ ମାଉସୀକୁ ସେଠି ବସେଇ ଦେଇ ଆସିଛି ।

ଗାୟତ୍ରୀ : ମାଉସୀଙ୍କୁ ଆପଣ ବସେଇ ଦେଇ ଆସିଛନ୍ତି ? ତା'ମାନେ ମାଉସୀ ଆପଣଙ୍କ ସାଙ୍ଗରେ ଆସିଛନ୍ତି ?

ବନମାଳୀ : ହଁ ତୋ ମାଉସୀ ମୋ ସାଙ୍ଗରେ ଆସିଛି । ପ୍ରକୃତରେ ତୋ ମାଉସୀର କ'ଣ ହୋଇଛି କେଜାଣି ସାମାନ୍ୟ ସାମାନ୍ୟ କଥାରେ ଥକି ପଡୁଛି । ମଝିରେ ମଝିରେ ମୁଣ୍ଡଟା ବୁଲେଇ ଦେଉଛି । ଅସଲରେ ତାକୁ ମୁଁ ଡାକ୍ତରଙ୍କୁ ଦେଖାଇବାକୁ ଆଣିଛି ।

ଗାୟତ୍ରୀ : ତାଙ୍କୁ ଡାକ୍ତରଙ୍କୁ ଦେଖାଇବାକୁ ଆଣି କୋଉଠି ବସେଇ ଦେଇଛନ୍ତି ?

ବନମାଳୀ : ୱେଟିଂ ରୁମରେ । ସେ ସେଇଠି ଫ୍ୟାନ ତଳେ ଆରାମରେ ବସିଥିବ ।

ଗାୟତ୍ରୀ : କୋଉ ୱେଟିଂ ରୁମରେ ? ଯାଇ ରେଲୱେ ଷ୍ଟେସନ ୱେଟିଂ ରୁମରେ ।

ବନମାଳୀ : (ହସି) ନାଇମ. ଡାକ୍ତର ରାୟଙ୍କ ୱେଟିଂ ରୁମରେ । ତା'ର ନମ୍ବର ହେଉଛି ୨୬. ପଚିଶ ଜଣଙ୍କ ପରେ ତାର ପାଳି ପଡ଼ିବ । ତାକୁ ସେଠି ବସେଇ ଦେଇ ଏଠିକି ଆସିଛି । ରେଳଷ୍ଟେସନ ୱେଟିଂରୁମକୁ ଯିବି କାହିଁକି ? ବସଫେଲ୍ ହେବାରୁ ମୁଁ ସିଧା ଗାଁରୁ ସ୍କୁଟରଟା ନେଇ ଚାଲିଆସିଛି ।

ଗାୟତ୍ରୀ : ସ୍କୁଟରରେ ମାଉସୀଙ୍କୁ ବସେଇ ନେଇଆସିଛନ୍ତି । ଆପଣଙ୍କ ଗାଁଟା ଏଠୁ କେତେଦୂର ହେବ କି ?

ବନମାଳୀ : ଏଇ ପଚାଶ କିଲୋମିଟର ବାଟ ଆଉ କେତେହେବ ।

ଗାୟତ୍ରୀ : ଠିକ୍ ଅଛି ଆପଣ ଚଞ୍ଚଳ ଯାଆନ୍ତୁ । ମାଉସୀ ସେଠି ଏକା ବସି ବସି ବୋର ହୋଇଯିବେଣି ।

ବନମାଳୀ : କ'ଣ କରାଯିବ, ସେ ବୋର ହେବ ବୋଲି ମୁଁ ତା ପାଖରେ ବସିଥାନ୍ତି । ଏ ମାଛଗୁଡ଼ାକ ସବୁ ଖରାପ୍ ହେଇଯାଇ ନ ଥାନ୍ତା । ଆସୁଛି ।

ଗାୟତ୍ରୀ : ଡାକ୍ତରଙ୍କ ପାଖରେ କାମ ଶେଷ କରି ମାଉସୀଙ୍କୁ ନେଇ ଏଇଠିକି ଚାଲି ଆସିବେ ମଉସା ।

ବନମାଳୀ : ନା' ନା' ଏଠିକି ଆଉ କାହିଁକି ମିଛଟାରେ ଆସିବି । ସେଠି କାମ ସାରିଲେ ହୋଟେଲରେ ଗଣ୍ଡେ ପକେଇ ଦେଇ ସ୍କୁଟରରେ ଗାଁକୁ ବାହାରିଯିବୁ ।

ଗାୟତ୍ରୀ : ନା' ଆପଣ ଆମ ଘରକୁ ଆସି ଏଠି ହୋଟେଲରେ ଖାଇବେ- ଏଇଟା ଠିକ୍ ହେବନି । ତ୍ୟାଡି ଶୁଣିଲେ ବଡ଼ ଖରାପ୍ ଭାବିବେ ।

ବନମାଳୀ : କି, ଏଥିରେ ଖରାପ୍ ଭାବିବାରେ କଣ ଅଛି । ତୁ ଝିଅଟା ଏକାଅଛୁ । ଆମ ପାଇଁ ହଇରାଣ ହୋଇ ରୋଷେଇ କରିବୁ - ମୋର କାହିଁ ପସନ୍ଦ ହେଉନି । ତା'ପରେ ତୋ ରୋଷେଇ ଘରେ ଦେଖିଲି ମୂଳରୁ କିଛି ରାନ୍ଧାରାନ୍ଧି ହୋଇନି ।

ଗାୟତ୍ରୀ : ଆପଣ ସେଥିପାଇଁ ବ୍ୟସ୍ତ ହେବେନି । ଆପଣ ଯାଆନ୍ତୁ ଡାକ୍ତରଙ୍କ କାମ ସାରି ଆସିବେ ।

ବନମାଳୀ : ଆଚ୍ଛା । ମୁଁ ଗୋଟେ କଥା କହିବି ତୁ ରଖିବୁ ?

ଗାୟତ୍ରୀ : କୁହନ୍ତୁ ।

ବନମାଳୀ ମୁଁ ଆସିଲାବେଳେ ହୋଟେଲରୁ କିଛି କିଣି ନେଇଆସିବି । ତିନିଜଣ ଯାକ ମିଶି ତାକୁ ଖାଇଦେବା ।

ଗାୟତ୍ରୀ : ସେ ତ ଆହୁରି ଅସୁବିଧା ହେଇଯିବ । ଆପଣ ଗଲେ ପ୍ରଥମେ ଡାକ୍ତରଙ୍କ ପାଖରୁ କାମ ସାରିବେ । ଯାଆନ୍ତୁ ... ମୁଁ ସଂଗେ ସଂଗେ ରୋଷେଇ ଆରମ୍ଭ କରିଦେଉଛି ।

ବନମାଳୀ : ଠିକ୍ ଅଛି ଯାଉଛି । ହେଲେ ବାର ତରକାରୀ ଢେର ଭଜା କରିବା ଦରକାର ନାହିଁ । ପାରିବୁ ଯଦି ଭାତଗଣ୍ଡେ ଫୁଟେଇ ଦେ । ସେ ଛଣା ମାଛ ଦେଇ ସବୁ ଚ଼ଳେଇ ଦେବା ।

ଗାୟତ୍ରୀ : ହଉ ସେ ସବୁରେ ଆପଣ ଆଉ ମୁଣ୍ଡ ପୁରାନ୍ତୁନି । ଯାଆନ୍ତୁ ।

ବନମାଳୀ : (କେବଳ ହସିଛି)

ଗାୟତ୍ରୀ : ଆରେ ଯାଆନ୍ତୁ ନା ମଉସା । ମୋତେ ଦେଖି ହସୁଛନ୍ତି କାହିଁକି ? ଯାଆନ୍ତୁ । (ବନମାଳୀ ହସି ହସି ଚ଼ାଲିଯାଆନ୍ତି । ଗାୟତ୍ରୀ ଦରଜା ବନ୍ଦ କରି ରୋଷେଇ ଘର ଦିଗରେ ଯାଏ ।)



# ଚତୁର୍ଥ ପାଦ

(ସେଇ ଘର । ସୋଫା ଉପରେ ବସି ବନମାଳୀ ଦାନ୍ତ ଖୁଣ୍ଟୁଛନ୍ତି । ଆସିଛନ୍ତି ବନମାଳୀଙ୍କ ସ୍ତ୍ରୀ ସୁଭଦ୍ରା ।)

ବନମାଳୀ : ଦି' ଜଣ ଯାକର ଖିଆପିଆ ଶେଷ ହେଲାନା । କ'ଣ ଏତେ ସମୟ କରୁଥିଲ?

ସୁଭଦ୍ରା : ତୁମେ ଝଅଟ କରି ଖାଇଦେଇ ଉଠିପଡ଼ିଲ ବୋଲି ହେଇଗଲା । ଝିଅ ପିଲାଟା କେତେ ହଇରାଣ ହୋଇ ରୋଷେଇ କରିଛି । ଦି'ଜଣ ଯାକ ଖାଇ ସାରିଲା ପରେ ମୋ ବାସନ ଉଠେଇବାକୁ ବସିଥିଲା । ମୁଁ ଉଠେଇ ନେଇ ମାଜିଦେଲି ।

ବନମାଳୀ : ଭଲ ଝିଅଟିଏ ନୁହେଁ ? ଏତେ କମ ସମୟ ଭିତରେ ଛ' ଛଟା ଆଇଟମ୍ କରିଦେଇଛି । ପୁଣି କି ସ୍ୱାଦ ... ।

ସୁଭଦ୍ରା : ହଁ ସବୁ ଭଲ କରିଥିଲା ।

ବନମାଳୀ : ଏମ୍.ଏ. ପାସ୍ କରିଛି । ଯେମିତି ରୂପକୁ ସେମିତି ଗୁଣ । ଲକ୍ଷ୍ମୀ ପ୍ରତିମାଟିଏ କୁହ । ଭାଗ୍ୟରେ ଥିଲେ ଏମିତି ଝିଅ ଜନ୍ମ ହୁଏ । କ'ଣ କରୁଛି ସେ...?

ସୁଭଦ୍ରା : ସେପଟ ଘରସବୁ ସଜଡ଼ା ସଜଡ଼ି କରୁଛି । ମୋତେ କହୁଥିଲା, "ମାଉସୀ ତୁମ ଦେହ ଖରାପ୍ ଟିକିଏ ଗଡ଼ିପଡ଼ ଭଲ ଲାଗିବ ।"

ବନମାଳୀ : ସେପଟ ରୁମରେ ଟିକିଏ ଗଡ଼ିପଡ଼ିଲନି ?

ସୁଭଦ୍ରା : ହଁ ଗଡିପଡ଼ିଥାନ୍ତି । କ'ଣ ଯେ ତୁମେ କୁହ । ହଁ ଶୁଣ (ଗଳା ଚାପି) ୟା'ପରେ କ'ଣ କରିବା ।

ବନମାଳୀ : (ଚାପା ଗଳାରେ) କରିବା ଆଉ କ'ଣ ... ମୁଁ ଯେମିତି ଯେମିତି କହିଛି ସେମିତି କରିବା ।

ସୁଭଦ୍ରା : ତା'ମାନେ ।

(ବନମାଳୀ ସୁଭଦ୍ରା କାନରେ ଚୁପ୍ ଚୁପ୍ କ'ଣ କୁହନ୍ତି । ଏଇ ସମୟରେ ଗାୟତ୍ରୀ ଆସିଛି, ସେମାନଙ୍କ କଥା ଅଟକି ଯାଇଛି ।)

ଆ...ମା...ଆ... । ଏଇଠି ଟିକିଏ ବସିପଡ଼ । ଆମପାଇଁ ଆଜି ନାକେଦମ୍ ହେଲୁଣି ।

ଗାୟତ୍ରୀ : ନା' ସେମିତି କହିବେନି । ଆପଣମାନେ ମୋ କଥା ରଖି ଏଇଠି ଖାଇଲେ- ସବୁଠୁ ବଡ଼କଥା । ନହେଉ ଡ୍ୟାଡି ମମି ଙ୍କ ପାଖରୁ ଗାଳି ଶୁଣିଥାନ୍ତି ।

ସୁଭଦ୍ରା : ଆମେ ଆସି ଏଠି ତୋ ପାଖରେ ଖାଇନୁ ଯେ ଆମକୁ ତୁ ଗୋଟାପଣେ କିଣିନେଇଛୁ ।

ବନମାଳୀ : ହଇ ହେ ଏପଟେ ଦେଖ ତିନିଟା ବାଜିଲାଣି ଆମକୁ ଯିବାକୁ ପଡ଼ିବ ।

ଗାୟତ୍ରୀ : ଯିବେ ତ ନିଶ୍ଚୟ । ଏବେ ଖାଇଛନ୍ତି, ଟିକିଏ ବସିଯାଆନ୍ତୁ, ତା'ପରେ ଯିବେ ।

ବନମାଳୀ : ନା'ରେ ମା । ଯାଙ୍କର ରକ୍ତ ଇତ୍ୟାଦି କେତେଗୁଡ଼ିଏ ପରୀକ୍ଷା କରିବାକୁ ଦିଆଯାଇଛି । ସେ ରିପୋର୍ଟ ନେଇ ପୁଣି ଡାକ୍ତରଙ୍କୁ ଦେଖେଇବାକୁ ପଡ଼ିବ । ତା'ପରେ ଡାକ୍ତର ଯାହା ଔଷଧ ଲେଖିବେ ।

ସୁଭଦ୍ରା : (ଗାୟତ୍ରୀର ଓଠକୁ ଧରି) ଯାଉଛିରେ ମା... ସେଠି କାମ ସାରି ପୁଣି ଗାଁକୁ ଯିବାକୁ ହେବ । ପୁଣି କେବେ ସୁବିଧା କରି ଆସିଲେ ତୋ ବାପା ମାଆଙ୍କ ସହିତ ଭେଟ ହେବ ।

(ଗାୟତ୍ରୀ ନମସ୍କାର କରିଛି । ବନମାଳୀ ଓ ସୁଭଦ୍ରା ପ୍ରତିନମସ୍କାର ଜଣାନ୍ତି)

ଗାୟତ୍ରୀ : ଚ଼ାଲନ୍ତୁ ମଉସା...

(ଫୋନ୍ ରିଂ ହୁଏ)

ବନମାଳୀ : ତୋ ଫୋନ୍ ଆସିଲାଣି ମା' । ତୁ ଆସିବା ଦରକାର ନାହିଁ ।

(ବନମାଳୀ ଓ ସୁଭଦ୍ରା ଚ଼ାଲିଯାଆନ୍ତି । ଗାୟତ୍ରୀ ଫୋନ୍ ଉଠାଏ)

ଗାୟତ୍ରୀ : କିଏ ? ଜୁଲି... । ଦେଖ ମୁଁ ତୋ ସହିତ ଆଉ କଥା ହେବିନି କହୁଛି । ମୋତେ ବେଶୀ ଏକ୍ସପ୍ଲାନେସନ୍ ଦେବା ଦରକାର ନାହିଁ । ସଂଧ୍ୟାବେଳକୁ ଆସି ଏଠି କ'ଣ କରିବୁ ? ଡ୍ୟାଡି ମମି ତ ସେତେବେଳକୁ ଆସି ପହଁଚ଼ି ଯାଇଥିବେ । ଥାଆ, ତୋ ନାନୀ ଭିଣୋଇଙ୍କ ସହିତ ମଜା କରୁଥା' ।

(ଫୋନ୍ ରଖି ଦେଇଛି । ବାହାରୁ ଆସିଛି ବନମାଳୀ...)

ବନମାଳୀ : ବଡ ଅସୁବିଧା ହେଇଗଲା ମା' । ମୋ ସ୍କୁଟରର ପଛ ଚ଼କାଟା ପମ୍ପଚ଼ର ହୋଇଯାଇଛି ।

ଗାୟତ୍ରୀ : ସ୍କୁଟର ପମ୍ପଚ଼ର ହୋଇଗଲା । କେଉଁଠି ?

ବନମାଳୀ : କେତେବେଳୁ ହେଇଛି କେଜାଣି ? ତୋ ଘର ସାମନାରେ ଷ୍ଟାର୍ଟ କରି ଦେଖିଲା ବେଳକୁ ଗାଡ଼ି ଆଉ ଗଡୁନି ।

ଗାୟତ୍ରୀ : ଷ୍ଟେପିନ୍ ନାହିଁ ମଉସା...?

ବନମାଳୀ : ଷ୍ଟେପିନ୍ ଥିଲେ ତୋ ପାଖକୁ କାହିଁକି ଆସିଥାନ୍ତି । ତୋ ଘରକୁ ସକାଳ ବେଳା ଆସିଲା ବେଳକୁ ସାମନା ଗ୍ୟାରେଜଟା ଖୋଲାଥିଲା । ଏବେ ଯାଇ ଦେଖିଲା ବେଳକୁ ବନ୍ଦ ହୋଇଯାଇଛି ।

ଗାୟତ୍ରୀ : ହଁ ସେଇଟା ସବୁଦିନ ଦିନ ଦି'ଟା ବେଳେ ବନ୍ଦ ହୋଇଯାଏ ପୁଣି ପାଞ୍ଚଟା ବେଳେ ଖୋଲେ ।

ବନମାଳୀ : ସ୍କୁଟରଟା ତୁମ ଘର ସାମନାରେ ଅଛି । ଦେଖେ ଗୋଟେ ରିକ୍ସା ମିଳିଗଲେ ତୋ ମାଉସୀକୁ ନେଇ ଡାକ୍ତର ପାଖକୁ ଯିବି ।

ଗାୟତ୍ରୀ : ଡାକ୍ତର ରାୟଙ୍କ ଘର ଏଇଠୁ ୩ କି.ମି ଦୂର । ଆପଣ ଗୋଟେ କାମ କରନ୍ତୁ ମଉସା । ଆପଣ ମୋ ସ୍କୁଟିଟା ନେଇ ଚାଲିଯାଆନ୍ତୁ । ଡାକ୍ତରଙ୍କ ପାଖରେ କାମ ସାରି ଆସିଲା ବେଳକୁ ଏପଟେ ଗ୍ୟାରେଜ୍ ଖୋଲି ଯାଇଥିବ । ଆପଣ ସ୍କୁଟର ଠିକ୍ କରିଚାଲିଯିବେ ।

ବନମାଳୀ : ତୋ ସ୍କୁଟି ନେଇ ଯିବି - ତୋର କିଛି କାମ ନାହିଁ ତ ମା' ?

ଗାୟତ୍ରୀ : ନା' ଡ୍ୟାଡି ମମି ନ ଆସିଲା ପର୍ଯ୍ୟନ୍ତ ମୋତେ ଏଠି ଯେମିତି ହେଲେ ରହିବାକୁ ପଡ଼ିବ ।

(ସ୍କୁଟି ଚାବି ଦିଏ, ଆଉ ତା ସହିତ ୨୦୦ ଟଙ୍କାର ନୋଟ୍ ।)

ବନମାଳୀ : ସ୍କୁଟି ଚାବି ସହିତ ଏଇ ଦୁଇଶହ ଟଙ୍କା କ'ଣ ହେବ ?

ଗାୟତ୍ରୀ ଗତ କାଲିଠାରୁ ଗାଡ଼ି ରିଜର୍ଭରେ ଚାଲିଛି । ଗଲାବେଳେ ବାଟରେ ଦୁଇଶହ ଟଙ୍କାର ତେଲ ପକାଇଦେବେ । ଡାକ୍ତର ରାୟଙ୍କ ଘର ସାମନାରେ Indian Oil filling station.

ବନମାଳୀ : ହେଲା ମୁଁ ପକାଇ ଦେବି । ତୁ ଟଙ୍କା ରଖ ।

ଗାୟତ୍ରୀ : ନା'ନା' ଆପଣ ମନା କରନ୍ତୁନି । ପ୍ରକୃତରେ ମୁଁ ଆଜି ତେଲ ପକାଇବାକୁ ଯାଇଥାନ୍ତି । ଆପଣ ସେ ଦିଗରେ ଯାଉଛନ୍ତି ତ ତେଲ ପକାଇ ଆସିବେ ।

ବନମାଳୀ : ମୋ ଗାଡ଼ିଟା ତୋ ପାଖରେ ରହିଲା । ତୋ ମାଉସୀ ତେଣେ ରାସ୍ତାରେ ଠିଆ ହୋଇରହିଛି । ତୋ ଗାଡ଼ିଟା ତ ବେଶ୍ ନୂଆ ଲାଗୁଛି ?

ଗାୟତ୍ରୀ : ସାତ ଦିନ୍ ହେଲା କିଣା ହୋଇଛି । ନମ୍ବର ବି ହୋଇନି । ମୋ ଜନ୍ମଦିନକୁ ଡ୍ୟାଡି କିଣି ଦେଇଥିଲେ ।

ବନମାଳୀ : ଠିକ୍ ଅଛି । ମୁଁ ଗାଡ଼ି ନେଇ ଯାଉଛି । ଯେତେ ଚଞ୍ଚଳ ହେବ ଫେରିଆସିବି । ଏଇ ଗଲି ଆଉ ଆସିଲି ।

(ବନମାଳି ଚାଲିଯାଏ । ଗାୟତ୍ରୀର ମୋବାଇଲ୍ ରିଂ ହୁଏ । ସେ କଥାହୁଏ)

ଗାୟତ୍ରୀ : ହାଲୋ ମମି ... ହଁ ହଁ ଠିକ୍ ଅଛି । ତୁଲି ଘରକୁ ତା ନାନୀ ଭିଣୋଇ ଆସିବାରୁ ସେ ଆସିପାରିନି । ନା' ନା' ତୁ କାହିଁକି ବ୍ୟସ୍ତ ହେଉଛୁ । ମୁଁ କେତେବେଳେ ଏକା ନ ଥିଲି । ସକାଳେ ଗୀତ ସାର୍ ଆସିଥିଲେ, ସେ ଗୀତ ଶିଖେଇ ଯାଇଛନ୍ତି ... ତା ପରେ ଡ୍ୟାଡିଙ୍କ ଜଣେ ସାଙ୍ଗ ତାଙ୍କ ସ୍ତ୍ରୀଙ୍କୁ ଧରି ଆସି ପହଁଚିଲେ । ହଁ ସେମାନେ ଚାଲିଯିବେ ବୋଲି କହୁଥିଲେ, ତୁମେ ଫେରିବା

ବାଟରେ ଅଛ ତ ଚଞ୍ଚଳ ଆସ । ସେମାନେ ମୋ ସ୍କୁଟି ନେଇ ଡକ୍ଟର ରାୟଙ୍କ ଘରକୁ ଯାଇଛନ୍ତି । ଦି' ଘଣ୍ଟା ଭିତରେ ପହଁଚିବ ତ । ଜଲଦି ଆସ । ରଖୁଛି... (ଫୋନ୍ ରଖିଦିଏ) ।

(ମଂଚରୁ ଆଲୋକ କମି ଆସେ)



# ପଞ୍ଚମ ପାଦ

(କଲିଂ ବେଲର ଶବ୍ଦ । ଗାୟତ୍ରୀ ଭିତରୁ ଆଶୀ ଦରଜା ଖୋଲିବାକୁ ବାହାରକୁ ଯାଏ । ରେଣୁ ସରୋଜ ସହିତ ଫେରିଆସେ ।)

ଗାୟତ୍ରୀ : ତୁମେ ଏତେ ଚଞ୍ଚଳ ପହଁଚିଗଲ ଯେ, କହୁଥିଲ ଦି' ଘଣ୍ଟା ଲାଗିବ ।

ରେଣୁ : ତୋ ତାତିଙ୍କର କିଏ ସାଙ୍ଗ ଆସିଛନ୍ତି ବୋଲି କହିଲୁ ତେଣୁ ଯେତେ ଚଞ୍ଚଳ ପାରିଲୁ ଆସିଗଲୁ । କାହାଁନ୍ତି ସେମାନେ ।

ଗାୟତ୍ରୀ : ମଉସା ମାଉସୀଙ୍କୁ ନେଇ ଡାକ୍ତର ରାଏଙ୍କ କ୍ଲିନିକ୍‌କୁ ଯାଇଛନ୍ତି । ମାଉସୀଙ୍କ ଦେହ ଖରାପ୍ ଅଛି ତ ।

ସରୋଜ : ସେମାନେ କୋଉଠୁ ଆସିଛନ୍ତି । ତାଙ୍କ ନାଁ କ'ଣ ବୋଲି କହୁଥିଲେ ?

ଗାୟତ୍ରୀ : ସେ ଆପଣଙ୍କର ପିଲାଦିନର ସାଙ୍ଗ । ତୁମେ ତାଙ୍କୁ ଦେଖି କାଙ୍କଡ଼ ଆଣିବାକୁ କହିଥିଲ ବୋଲି କହୁଥିଲେ । ତିନି ଚାରି କେଜି କାଙ୍କଡ଼ ଆଉ ଦି'ଟା ବଡ଼ ଇଲିସି ମାଛ ନେଇ ଆସିଛନ୍ତି ।

ସରୋଜ : କିଏ ହୋଇପାରେ ମୁଁ ତ ବୁଝିପାରୁନି ।

ରେଣୁ : ତୁମର କୋଉ ବନ୍ଧୁଙ୍କୁ କାଙ୍କଡ଼ ଆଣିବାକୁ କହିଥିଲ ମନେ ପକାଉନା...?

ସରୋଜ : ବଜାରରେ କାଙ୍କଡ଼ର କ'ଣ ଅଭାବ ହେଇଛି ଯେ ମୁଁ କାହାକୁ କାଙ୍କଡ଼ ଆଣିବାକୁ କହିବି ।

ଗାୟତ୍ରୀ : ତାଙ୍କ ନାଁ ଭୁବନାନନ୍ଦ ତରାଇ ବୋଲି କହୁଥିଲେ ।

ରେଣୁ : କ'ଣ ନାଁ ବୋଲି କହିଲେ । ଭୁବନାନନ୍ଦ ତରାଇ... ?

ଗାୟତ୍ରୀ : ହଁ, ଡ୍ୟାଡି ତାଙ୍କୁ ମଜାରେ ଭୂତ ଭୂତ ବୋଲି ଡାକନ୍ତି ବୋଲି କହିଲେ ।

ସରୋଜ : ମୁଁ ତାକୁ କାଙ୍କଡ଼ ବରାଦ ଦେଇଥିଲି । ତାଙ୍କ ନାଁ ଭୁବନାନନ୍ଦ ତରାଇ... ମୁଁ ଭୂତ ଭୁତ ବୋଲି ଡାକେ... । ଅସଂଭବ । ଏ କଥା ହୋଇପାରିବନି । ତାଙ୍କ ନାଁ ତୁ ନିଶ୍ଚୟ ଭୁଲ୍ ମନେରଖିଛୁ ।

ଗାୟତ୍ରୀ : ନା, ମୁଁ ସେଣ୍ଟ ପରସେଣ୍ଟ ଠିକ୍ ମନେରଖିଛି । ତାଙ୍କ ନା ଭୁବନାନନ୍ଦ ତରାଇ । ସେ ମାଛ ଆଉ କାଙ୍କଡ଼ ଆଣିଥିଲେ । ମାଛକୁ ନିଜେ ବାଛିଲେ । ତାପରେ ଆମେ ତାକୁ ରାନ୍ଧିଲୁ । ମଉସା ମାଉସୀ ମିଶି ଖାଇଲୁ । ତାଙ୍କ ସ୍କୁଟର ଖରାପ୍ ହେବାରୁ ମୋ ସ୍କୁଟି ନେଇ ଯାଇଛନ୍ତି । ସ୍କୁଟିରେ ତେଲ ପକାଇବା ପାଇଁ ୨୦୦ ଟଙ୍କା ଦେଇଛି । ଆଉ କିଛି ସମୟ ପରେ ସେମାନେ ଆସିବେ । ଘର ସାମନାରେ ତାଙ୍କ ସ୍କୁଟର ଅଛି । ସେଇଟାକୁ ଠିକ୍ କରି ତାଙ୍କ ଘରକୁ ଯିବେ ।

ରେଣୁ : ଗଲା ... ଗଲା... (କାନ୍ଦ କାନ୍ଦ ହୋଇ) ଗଲା । ମୋ ଘରେ କଳାକନା ବୁଲେଇ ଦେଇଗଲା । ମୁଁ ବାରମ୍ବାର କହୁଛି ଝିଅଟାକୁ ଏକା ଛାଡିଯିବାନି । ଦେଖିଲ ତ !

ସରୋଜ : ଓଃ, ଚୁପ୍ । ସେମିତି କାହିଁକି ହଉଛ । ଆଲୋ ମା' ସେ କ'ଣ ତା ନାଁ ଭୁବନାନନ୍ଦ ତରାଇ ବୋଲି କହୁଥିଲା । ତୁ confused ହୋଇ କିଛି କହୁନୁ ତ?

ଗାୟତ୍ରୀ : ଆପଣ ମୋ କଥାକୁ କାହିଁକି ଅବିଶ୍ୱାସ କରୁଛନ୍ତି ଡାଡି । ଆଉ କିଛି ସମୟ ପରେ ସେ ପହଁଚିଗଲେ ଆପଣ ଦେଖିବେନି... ?

ସରୋଜ : ସେ ଆଉ ଆସିବନି । ଆମ ଅନୁପସ୍ଥିତିର ସୁଯୋଗ ନେଇ କିଏ ଦୁଇଜଣ ଆସି ତୋତେ ଠକି ନୂଆ ସ୍କୁଟିଟା ନେଇଯାଇଛନ୍ତି ।

ଗାୟତ୍ରୀ : ନା ଡାଡି ସେମାନେ ଚୋର ଡକାୟତ ନୁହଁନ୍ତି । କେବେ ସେ କାମ କରିପାରିବେନି ।

ସରୋଜ : ଆରେ ଆମେ ପରା ମୋ ସାଙ୍ଗ ଭୁବନାନନ୍ଦ ତରାଇ ଘରକୁ ଯାଇଥିଲୁ । ତା' ଘରେ ଖିଆପିଆ କରି ତାକୁ ସାଙ୍ଗରେ ନେଇ ତାଙ୍କ ଗାଁରୁ ମୋ ଗାଡ଼ିରେ ଫେରିଲୁ । ସେ ଏଇ ସହର ମୁଣ୍ଡରେ ଜଣେ ଓକିଲ ଘରେ ଓହ୍ଲାଇ ଯାଇଛି । ଓକିଲ ପାଖରୁ କାମ ସାରି ଆଉ କିଛି ସମୟ ପରେ ଏଇଠିକି ଆସିବ ।

ଗାୟତ୍ରୀ : ମାନେ ... ?

ରେଣୁ : ମାନେ ଯିଏ ଏଠିକି ଆସିଥିଲା ସେ ଭୁବନାନନ୍ଦ ତରାଇ ନୁହେଁ । ତୋ ସ୍କୁଟିଟା ନେଇ ଯିବାକୁ ପ୍ଲାନ କରି ଆସି - ତା କାମ ହାସଲ କରି

ଡ଼ାଲିଯାଇଛି । ଦିନସାରା ଆମେ ଭୁବନାନନ୍ଦ ତରାଇ ଘରେ ଥିଲୁ ।

ଗାୟତ୍ରୀ : କିନ୍ତୁ ତାଙ୍କ ସ୍କୁଟରଟା ଛାଡ଼ି ଦେଇଯାଇଛନ୍ତି ଯେ ।

ସରୋଜ : କେତେ ଅଭିନବ ପ୍ରକାରର ଠକ ଏବେ ବାହାରିଲେଣି । ଯୋଉ ସ୍କୁଟରଟା ଛାଡ଼ିଯାଇଛି ସେଇଟା କୋଉ ଭଙ୍ଗ ଅମଳର ଧଡ଼ଧଡ଼ିଆ ଲାମ୍ବି ସ୍କୁଟର । କବାଡ଼ିବାଲା ବି ତାକୁ ୫ ଶହ ଟଙ୍କାରେ ନବ କି ନାହିଁ ।

ରେଣୁ : ମୋ ଝିଅ ପୁଣି ତାକୁ ନୂଆ ସ୍କୁଟି ସହିତ ତେଲ ପକାଇବାକୁ ୨୦୦ ଟଙ୍କା ଧରାଇ ଦେଇଛି । ହେ ଭଗବାନ- ଯିଏ ଏମିତି କରିଛି ...?

ସରୋଜ : (ରେଣୁକୁ) ତୁମେ ଟିକିଏ ଚୁପ୍ ରହିବ । ଆଚ୍ଛା ଡାକ୍ତର ରାୟଙ୍କ ଫୋନ୍ ନମ୍ବର ଆମ ଘରେ ଅଛି ନା... । ଟେଲିଫୋନ୍ ଡାରେକ୍ଟରେରି ଆଣିଲ ।

ଗାୟତ୍ରୀ : ମମିଙ୍କୁ ଗତବର୍ଷ ତାଙ୍କୁ ଦେଖେଇଥିଲେ । ତାଙ୍କ ପ୍ରେସକ୍ରିପସନରେ ତାଙ୍କ ନମ୍ବରଟା ଥିବ ।

ରେଣୁ : ହଁ ହଁ ଠିକ୍ କଥା ମନେ ପକାଇଛୁ । (ରେଣୁ ଭିତରକୁ ଯାଆନ୍ତି)

ସରୋଜ : ମୁଁ ଯାଇ ଦେଖେ ସେ ସ୍କୁଟରରେ କାଳେ କ'ଣ କାଗଜପତ୍ର ଥିବ । (ସରୋଜ ବାହାରକୁ ଯାଆନ୍ତି । ଗାୟତ୍ରୀ ଟେଲିଫୋନ୍ ଡାଇରେକ୍ଟରୀ ଖୋଲି ଦେଖିବାକୁ ଲାଗେ ।)

ରେଣୁ : (ପ୍ରବେଶ) ହେଇ ... ଡକ୍ଟର ରାୟଙ୍କ ନମ୍ବର । ତୋ ଡାଡି କୁଆଡ଼େ ଗଲେ?

ସରୋଜ : (ପ୍ରବେଶ) ନା ସେ ଗାଡ଼ିର ନମ୍ବର ନାହିଁକି ଡିକି ବି ନାହିଁ । କାଗଜପତ୍ର କୁଆଡ଼େ ମିଳିବ । ଡକ୍ଟର ରାୟଙ୍କ ନମ୍ବର ମିଳିଲା ।

ରେଣୁ : ହଁ ଏଇଥିରୁ ଦେଖି ଲଗାଅ । (ସରୋଜ ନମ୍ବର ଲଗାନ୍ତି)

ସରୋଜ : ହାଲୋ ମାଡାମ୍ । ଆପଣ ଡାକ୍ତର ରାୟଙ୍କ ଘରୁ କହୁଛନ୍ତି ? ଆଚ୍ଛା, ମୁଁ ଟିକିଏ ଡକ୍ଟର ରାୟଙ୍କ ସହିତ କଥା ହୋଇ ପାରିବିକି, ଜରୁରୀ କାମ ଅଛି । ମୁଁ ସରୋଜ ଦାସ, ନିଜାରତ ଅଫିସର କହୁଛି । ସେ ଦିଲ୍ଲୀ ଯାଇଛନ୍ତି । ସାତ ଦିନ ହେଲା ତାଙ୍କ କ୍ଲିନିକ୍ ବନ୍ଦ ଅଛି । ଠିକ୍ ଅଛି ।

ରେଣୁ : ଡାକ୍ତର ରାୟ ... ନାହାଁନ୍ତି ? କାହା ସହିତ କଥା ହେଲ ।

ସରୋଜ : ତାଙ୍କ ସ୍ତ୍ରୀଙ୍କ ସହିତ କଥା ହେଲି । ଡକ୍ଟର ରାୟ ଗୋଟେ ସପ୍ତାହ ହେଲା ତାଙ୍କ ଝିଅ ଘରକୁ ଦିଲ୍ଲୀ ଯାଇଛନ୍ତି ।

ରେଣୁ : କ'ଣ କରିବା ତା ହେଲେ... । କିଛି ବୁଝିବାଟ ଦେଖାଯାଉନି ।

ସରୋଜ : ଭାବୁଛି ପୋଲିସ୍ ଷ୍ଟେସନରେ ଖବର ଦେଇଦେବା ଭଲହେବ ।

ରେଣୁ : ହଁ, ହଁ ତୁମେ ମୋ ବାନା ଭାଇନାଙ୍କୁ ଟିକିଏ ଡ଼ାଅ । ଆମେ ତାଙ୍କ ସାହାଯ୍ୟ ନେବା ।

ସରୋଜ : ତୁମ ବାନା ଭାଇନା ପୋଲିସ୍ ଇନିସ୍‌ପେକ୍ଟର କୋଉ କାମକୁ ନୁହଁନ୍ତି ବୋଲି କହୁଥିଲ । ସେ କ'ଣ କରିପାରବେ ? ଖାଲି ବଡ଼ ପାଟି କରିବା ଛଡ଼ା ଆଉ କିଛି ଜାଣନ୍ତିନି ବୋଲି ତୁମେ କହୁଥିଲ ।

ରେଣୁ : ମୁଁ କ'ଣ କହୁଥିଲି, ତାଙ୍କ ଶଳା ପାଖରୁ ଯା' ଶୁଣିଲି କହୁଥିଲି । ତାଙ୍କ ସାଙ୍ଗମାନେ କୁଆଡ଼େ ଡି.ଏସ୍.ପି., ଏସ୍.ପି. ହୋଇଗଲେଣି । ଇଏ ଥରକୁ ଥର ସସ୍‌ପେଣ୍ଡ ହେଉଛନ୍ତି ବୋଲି ତାଙ୍କୁ ଥଟ୍ଟା କରି ଏମିତି କହୁଥିଲି ।

ସରୋଜ : ସେ ଯାହା ହୁଅନ୍ତୁ । ବର୍ତ୍ତମାନ ଆମକୁ ବିପଦ ପଡ଼ିଛି । ତାଙ୍କର ସାହାଯ୍ୟ ନେବାକୁ ପଡ଼ିବ ।

ରେଣୁ : ସେ ଦିନ ମାର୍କେଟରେ ଦେଖା ହୋଇଥିଲା । ଗାୟତ୍ରୀ ତାଙ୍କ ମୋବାଇଲ ନମ୍ବର ରଖିଛି ।

ସରୋଜ : ତୋ ବାନା ମାମୁଙ୍କୁ ଲଗାଇଲୁ ମା । ଲଗେଇ ମୋତେ ଦେ' ।

ଗାୟତ୍ରୀ : ଆପଣ କହୁଛନ୍ତି ବୋଲି ଲଗାଇ ଦେଉଛି । ହେଲେ ମୁଁ ଥାନାକୁ ଯାଇ କିଛି କହିପାରିବିନି । ମୋର ପୁରା ବିଶ୍ୱାସ ସେମାନେ କେବେ ଠକ କି ଚୋର ହୋଇ ନଥିବେ ।

ସରୋଜ : ଠିକ୍ ଅଛି । ତେବେ ତୁ ନମ୍ବରଟା ଲଗେଇ ମୋତେ ପ୍ରଥମେ ଦେ' ।

ଗାୟତ୍ରୀ : ରିଂ ହେଉଛି ।

ସରୋଜ : (ଫୋନ୍ ନେଇ) ହାଲୋ... ବାନାବର ବାବୁ କହୁଛନ୍ତି ? ନମସ୍କାର । ମୁଁ ସରୋଜ ଦାସ କହୁଛି । ଆପଣଙ୍କ ସଂପର୍କୀୟ ଭଉଣୀ ରେଣୁବାଳାଙ୍କ ହାଲୋ...ହାଲୋ... କଟିଗଲା... । (ପୁଣି ଲଗାଇ) ହାଲୋ... ମୁଁ ସରୋଜ କହୁଛି । ରେଣୁବାଳାର ... ପୁଣି କଟିଗଲା... ।

ଗାୟତ୍ରୀ : ଆପଣ ଯେଉଁଠି ଠିଆ ହୋଇ କଥା ହେଉଛନ୍ତି ସେଇଠି ଅନେକ ସମୟରେ ସିଗନାଲ୍ ମିଳେନି । ଏ ପଟକୁ ଆସି ଲଗାନ୍ତୁ ।

ରେଣୁ : ସେ ତୁମ ସହିତ ବିଶେଷ ମିଶି ନାହାଁନ୍ତି ତ । ହଠାତ୍ ଜାଣିପାରୁନ ଥିବେ । ଲଗେଇ ମୋତେ ଦିଅ ।

(ସରୋଜ୍ ମଂଚ୍‌ର ପଛଭାଗକୁ ଯାଇ ମୋବାଇଲ୍ ଲଗାଇ ରେଣୁଙ୍କୁ ଦିଅନ୍ତି । ଗାୟତ୍ରୀ ବି ତାଙ୍କ ନିକଟକୁ ଚାଲିଯାଏ । ସେମାନେ ମଂଚ୍‌ର ପଛଭାଗରେ ଦର୍ଶକଙ୍କ ଆଡକୁ ପଛ କରି ଫୋନରେ କଥା ହୁଅନ୍ତି । ସମାନ୍ ମଂଚ୍‌ରେ ଫୋନ୍‌ରେ କଥା ହୋଇ ହୋଇ ପ୍ରବେଶ କରନ୍ତି ପୋଲିସ୍ ଇନ୍‌ସପେକ୍ଟର୍ ବାନାମ୍ବର ।)

ରେଣୁ : ହାଲୋ... ନମସ୍କାର ଭାଇ । ମୁଁ ରେଣୁ କହୁଛି । ଚିହ୍ନିପାରୁନାହାଁନ୍ତି । ସେ ଦିନ ଆମଘରକୁ ଆସିଥିଲେ...ତଥାପି ଚିହ୍ନିପାରୁନାହାଁନ୍ତି । ତୁମ ମାଉସୀଙ୍କର ବଡ଼ ଯାଆର ଝିଅ ରେଣୁ... ।

ବାନା : ମୋ ମାଉସୀଙ୍କର ବଡ଼ ଯାଆ ... କୁଆଡୁ ଆସିବ । ସେ ତ ତାଙ୍କ ଶାଶୁଘରର ଏକମାତ୍ର ବୋହୂ ।

ରେଣୁ : ବଉଦପୁର ମାଉସୀ କଥା କହୁଛି । ଯେଉଁ ରେଣୁ ପିଲାଦିନେ ତାଙ୍କ ଘରେ ରହି ପାଠ ପଢୁଥିଲା । ତୁମେ ଏକାଦଶରେ ପଢୁଥିବା ବେଳେ ମୁଁ ଅଷ୍ଟମରେ ନାଁ ଲେଖାଇଥିଲି ।

ବାନା : ଓଃ... ହୋ ଯାହାକୁ ମୁଁ ସିଙ୍ଘାଣୀ ନାକି ନାକ କାନ୍ଦୁଣୀ କହି ଚିଡ଼ାଉଥିଲି । ସେଇ ରେଣୁ । କେମିତି ତାକୁ ଚିହ୍ନିବି । ଘରେ ଟିକେ ଭଲ ଖିଆପିଆ ତିଆରି କରି ଏ ଭାଇକୁ ଦିନେ ହେଲେ ବି ଡାକିଲାନି... । କି ଭାଇ ଘର ଆଡ଼େ ଦିନେ ବୁଲି ବି ଆସିଲାନି... ।

ରେଣୁ : ଆମେ ଗୋଟେ ବିପଦରେ ପଡ଼ିଯାଇଛୁ ଭାଇ । ଆପଣ ଟିକିଏ ଆମ କ୍ୱାଟର ଆଡ଼େ ଆସିପାରିବେ । (ସମସ୍ତେ ବାନାମ୍ବରଙ୍କୁ ଦେଖି ନିଅନ୍ତି)

ବାନା : (ଫୋନ୍ କାଟି ଦେଇ) ମାଗଣା ମାଗଣା ପୋଲିସ୍ ଇନ୍‌ସପେକ୍ଟର ବାନାବର ଖଡ଼ଗରାୟ କାହାରିଘରକୁ ଯିବାକୁ ପସନ୍ଦ କରେନି... ।

ରେଣୁ ଆରେ ଆପଣ ଏଇଠି ଅଥଚ୍... ।

ବାନା : ନମସ୍କାର ସରୋଜ ବାବୁ । ପ୍ରକୃତରେ ଆପଣ ଫୋନ୍ କଲାବେଳକୁ ମୁଁ ଆପଣ କ୍ୱାଟର ସାମନାରେ ପାସ୍ କରୁଥିଲି । ସେଇଥିପାଇଁ କାଟିଦେଲି । ହେଲେ ପୁଣି ରେଣୁ ଲଗାଇଲା - ତା ସହିତ ଟିକିଏ ମଜା କରିବାକୁ ଟିକିଏ ଡ୍ରିଭିଲିଂ କରୁଥିଲି ।

(ରେଣୁ ଓ ଗାୟତ୍ରୀ ପାଦ ଛୁଇଁ ନମସ୍କାର କରନ୍ତି ।)

ରେଣୁ : ଭଗବାନ ରକ୍ଷା କରିଛନ୍ତି । ଆମ ବିପଦ ବେଳକୁ ତୁମେ ଏଇଠି ପହଁଚି ଯାଇଛ ଭାଇ ।

ବାନା : ବିପଦ, କି ବିପଦ ? ତୋ ବାନାଭାଇ ଥାଉ ଥାଉ ତୁମମାନଙ୍କ ଉପରକୁ କୌଣସି ବିପଦ ଆସିବାକୁ ଦେବନି । କିଏ ସେ ବିପଦ ତାକୁ ମୋ ସାମନାକୁ ସଂଗେ ସଂଗେ ଆଣ । ତା ଛାତିରେ ମୁଁ ଦି ଦିଟା ଗୁଳି ନାଦି ଦିଏ ।

ରେଣୁ : ନା ଭାଇ । ବିପଦ ଆସି ଯାହା ସବୁ ନଷ୍ଟ କରିବାର କଥା, କରିଦେଇ ଚାଲିଗଲାଣି । କିଏ ଦି'ଜଣ ଆମେ ନ ଥିବା ଅବସ୍ଥାରେ ଏ' ଘରକୁ ଆସି

ୟାଙ୍କ ଜଣେ ସାଙ୍ଗର ପରିଚ୍ୟ ଦେଇ ଗାୟତ୍ରୀ ପାଖରୁ ତା ନୂଆ ସ୍କୁଟିଟା ନେଇ ଚାଲିଯାଇଛନ୍ତି ।

ସରୋଜ : ଘରେ ଗାୟତ୍ରୀ ଏକା ଥିଲା । ମୋ ଜଣେ ସାଙ୍ଗର ନାଁ କହି ସାଙ୍ଗରେ କିଛି କାଙ୍କଡ଼ ଆଉ ଇଲିସି ମାଛ ଦେଇ - ୟା'ଠୁ ନୂଆ ସ୍କୁଟି ନେଇ ଚାଲିଯାଇଛି ।

ରେଣୁ : ଡକ୍ଟର ରାୟଙ୍କ କ୍ଲିନିକ୍ ନାଁ କହିଯାଇଛି । ବୁଝିଲା ବେଳକୁ ଡକ୍ଟର ରାୟଙ୍କ କ୍ଲିନିକ୍ ଗତ ସାତଦିନ ହେଲା ବନ୍ଦ ଅଛି । ତୁମେ କିଛି ହେଲେ କର ।

ବାନା : ଧିରେ ଧିରେ ଧିରେ । ଫୁଟବଲ ଖେଳର ଧାରାବିବରଣୀ ଦେଲାଭଳି ସବୁ କହିଯାଉଛ ଯେ ଏପଟ କାନରେ ପଶି ସେପଟ କାନରେ ବାହାରି ଯାଉଛି । ଆଚ୍ଛା ତୁମେ କହୁଛ ସରୋଜ ବାବୁଙ୍କ ସାଙ୍ଗର ପରିଚ୍ୟ ଦେଇ ଗାୟତ୍ରୀ ପାଖରୁ ତା ସ୍କୁଟିଟା ନେଇଯାଇଛି । ଗାୟତ୍ରୀ କ'ଣ ତାକୁ ଆଗରୁ ଚିହ୍ନିଥିଲା ।

ସରୋଜ : ସେଇ ତ ଅସୁବିଧା । ମୁଁ ତୁମ ଭଉଣୀଙ୍କୁ ନେଇ ମୋ ବନ୍ଧୁ ଭୁବନାନନ୍ଦ ତରାଇ ଘରକୁ ଯାଇଥିଲି । ଆମେ ମୋ ବନ୍ଧୁଙ୍କ ଘରେ ଥିବା ଅବସ୍ଥାରେ ଏଠିକି ଆସି ସେ ଚୋରଟା ନିଜକୁ ମୋ ବନ୍ଧୁ ଭୁବନାନନ୍ଦ ତରାଇ ନାଁ କହି ସ୍କୁଟି ନେଇଯାଇଛି । ଗାୟତ୍ରୀ ମନରେ ବିଶ୍ୱାସ ଜନ୍ମାଇବା ପାଇଁ ଗୋଟେ ସ୍ତ୍ରୀ ଲୋକକୁ ତା ସ୍ତ୍ରୀ ବୋଲି କହି ଏଠିକି ଆଣିଥିଲା ।

ବାନା : ଆରେ ମା' ଗାୟତ୍ରୀ, ତୁ ଏମିତି ଚୁପଚାପ ହେଇଯାଇଛୁ କାହିଁକି ?

ରେଣୁ : ତାକୁ ବଡ଼ ସକ୍ ହୋଇଯାଇଛି ଭାଇ । ଥାନାକୁ ଯିବାକୁ ପଡିବ ବୋଲି ଏଇ କଥା ଭାବି ସେ ଡରିଯାଇଛି ।

ବାନା : ଠିକ୍ ଅଛି । ତାକୁ କୁଆଡ଼େ ଯିବାକୁ ପଡ଼ିବନାହିଁ । ଥାନା କଥା ମାର ଗୁଲି । ମୋତେ ଖାଲି କହ ସେମାନେ ତୋ ପାଖରୁ ସ୍କୁଟି ନେଇ ଏଇଠୁ କେତେବେଳେ ବାହାରି ଯାଇଛନ୍ତି ।

ରେଣୁ : ତିନିଟାରୁ ଚାରିଟା ସମୟ ହେବ । ଏଇଠି ଖିଆପିଆ କରି ବାହାରିଛନ୍ତି ।

ବାନା : ଆଚ୍ଛା ସ୍କୁଟିର ନମ୍ବର କେତେ କହିଲୁ ?

ସରୋଜ : ନୂଆ ଗାଡ଼ିଟା ନମ୍ବର କରିବାକୁ ଦିଆଯାଇଛି । ଏ ପର୍ଯ୍ୟନ୍ତ ମିଳିନି । ଗାଡ଼ିର କାଗଜପତ୍ର ବି ସେ ଗାଡି ଭିତରେ ରହିଯାଇଛି ।

ବାନା : ବାଃ... । ଆଚ୍ଛା ଗାଡ଼ିର ରଙ୍ଗ ?

ରେଣୁ : ସିଲଭର ହ୍ୱାଇଟ୍ ସହିତ ମେରୁନ୍ କଲର ବଡ଼ି ।

ବାନା : ରହ । (ମୋବାଇଲ୍ ଲଗାଇ) ହାଲୋ... ମିଶ୍ରବାବୁ... ହଁ ନମସ୍କାର । ଆପଣ ଗୋଟେ କାମ କର୍ନ୍ତୁ । ମୋ ଭାଣିଜିର ନୂଆ ସ୍କୁଟିଟା ଆଜି ତିନିଟାରୁ ଚାରିଟା

ଭିତରେ କିଏ ଦୁଇ ଜଣ ସ୍ୱାମୀ ସ୍ତ୍ରୀ ସାଜି ଠକି ନେଇ ଯାଇଛନ୍ତି । ଭାବୁଛି ସେମାନେ ବେଣୀବାଟ ଯାଇନଥିବେ । ଆପଣ ଦାସ ବାବୁ ଆଉ ନାୟକ ବାବୁଙ୍କୁ ପଠାଇ ସହରର ସମସ୍ତ ରାସ୍ତାକୁ ସିଲ୍ କରାଇ ଦିଅନ୍ତୁ । ଯେତେ ନୂଆ ସ୍କୁଟି ଦେଖିବେ, ତାକୁ ଥାନାକୁ ନେଇଆସନ୍ତୁ । ମୁଁ ସବିଶେଷ ତଥ୍ୟ ନେଇ ଥାନାରେ ପହଁଚୁଛି । ଓକେ । ହଁ ସ୍କୁଟିର ରଂଗ ସିଲଭର ହ୍ୱାଇଟ୍ ସାଙ୍ଗକୁ ମେରୁନ୍ । ନୂଆ ସ୍କୁଟି... । ନମ୍ବର ବି ହୋଇନି ।

ରେଣୁ : ଚୋର ଧରା ପଡ଼ିବ ତ ଭାଇ । ନ ହେଲେ ମୋ ଝିଅ ।

ବାନା : ପ୍ରଥମରେ ଯାହା ପଦକ୍ଷେପ ନେବା କଥା ନେଇଗଲି । ମୋର ବିଶ୍ୱାସ ସେ ଚୋରର ଭାଗ୍ୟ ଖରାପ୍ । ନ ହେଲେ ମୁଁ ତୁମ ଘର ସାମନାରେ ଗଲାବେଳକୁ ତୋ ଫୋନ୍ କାହିଁକି ପାଇଥାନ୍ତି ? ନିଶ୍ଚିତ ସେମାନଙ୍କର ଆଜି କାଳ ପୂରିଗଲା ବୋଲି ଜାଣ । ଆଚ୍ଛା ମୁଁ ଗୋଟେ କଥା ବୁଝିପାରୁନି ତୁମେମାନେ ଘରେ ନାହଁ, ଗାୟତ୍ରୀ ଏକାଅଛି - ଏ ସବୁ ଖବର ସେ ଚୋର କାହାଠୁ ପାଇଥାଇପାରେ ।

ସରୋଜ : ପୁଣି ମୋର ଜଣେ ଅନ୍ତରଙ୍ଗ ବନ୍ଧୁର ପରିଚୟ ଦେଇ ଏଠିକି ଆସିଛି ।

ବାନା : ଆଚ୍ଛା ମା' ଗାୟତ୍ରୀ - ତୋ ଡ୍ୟାଡି ମମି ଗଲାପରେ ଏ ଘରକୁ କିଏ କିଏ ଆଉ ଆସିଛନ୍ତି ?

ଗାୟତ୍ରୀ : ଆଉ କେହି ଆସିନାହାଁନ୍ତି କେବଳ ଗୀତ ସାର୍ ପ୍ରାୟ ୧୦ ବେଳକୁ ଆସି ଗୀତ ଶିଖେଇ ଯାଇଛନ୍ତି । ଠିକ୍ ତାଙ୍କ ପରେ ପରେ ଏମାନେ... ।

ବାନା : ଆଚ୍ଛା ତୋ ଗୀତସାରଙ୍କ ନାଁ ଟା କ'ଣ । ସେ କ'ଣ ଏଇ ସହରର ଲୋକ?

ଗାୟତ୍ରୀ : ସେ ଏଠି କୋଉଠି ଘରଭଡ଼ା ନେଇ ରହୁଛନ୍ତି । ତାଙ୍କ ନାଁ ସୁରମଣୀ ସାର ।

ବାନା : ଆଚ୍ଛା ଆଚ୍ଛା ସେଇ ଝିଲିପି ବାଳିଆ ଲୋକଟା । ଯାହାକୁ ଅନେକେ ଥଟ୍ଟା କରି ସୁରମଣୀ ଦିଦି ବୋଲି ଡାକନ୍ତି । ଆଚ୍ଛା ତା ପାଖରୁ ତୁ କେତେ ଦିନ ହେଲା ସଂଗୀତ ଶିକ୍ଷା କରୁଛୁ ?

ଗାୟତ୍ରୀ : ପ୍ରାୟ ବର୍ଷେ ହେବ ।

ବାନା : ସବୁଦିନ ସେ କେତେବେଳେ ଆସନ୍ତି ?

ଗାୟତ୍ରୀ : ସପ୍ତାହରେ ଦୁଇଦିନ ଆସନ୍ତି । ସୋମ ଓ ମଙ୍ଗଳବାର ସଂଧ୍ୟା ।

ବାନା : ସୋମ ଓ ମଙ୍ଗଳବାର ସଂଧ୍ୟାରେ ଆସନ୍ତି । କିନ୍ତୁ ଆଜି ତ ରବିବାର । ରବିବାର ପୁଣି ସକାଳବେଳା କାହିଁକି ଆସିଲେ ? ତୁ କ'ଣ ଆଜି ଆସିବାକୁ କହିଥିଲୁ ?

ଗାୟତ୍ରୀ : ନାଁ, ତାଙ୍କର ଆସନ୍ତାକାଲି ସୋମବାରରେ ଦୂରଦର୍ଶନରେ ରେକର୍ଡିଂ ଅଛି ବୋଲି ହଠାତ୍ ଆସି ମୋ କ୍ଲାସ୍ ନେଇଗଲେ । ଅଚାନକ ଭାବରେ ... ମୁଁ ଡକାଇନି... ।

ବାନା : ତୁ ଡକାଇନୁ ଅଥଚ ସେ ନିଜ ତରଫରୁ ଆସି ତୋତେ ସଂଗୀତ ଶିକ୍ଷା ଦେଇଯାଇଛନ୍ତି । ଦରକାର ପଡ଼ିଲେ ତାଙ୍କୁ ତଦନ୍ତ ପରିସର ଭିତରକୁ ନେବାକୁ ପଡିବ । କେମିତିକା ଲୋକ ସିଏ ?

ସରୋଜ : ଲୋକ ହିସାବରେ ସେ କେମିତି କହିପାରିବିନି କିନ୍ତୁ ଗୀତସାର ହିସାବରେ ଭଲ ନାଁ କରିଛି ।

ବାନା : ଠିକ୍ ଅଛି । ସମସ୍ତେ ଟିକିଏ ଭିତରକୁ ଆସିଲ - ମୁଁ ସବୁକଥା ଟିକିନିଖି ଭାବରେ ଶୁଣିନିଏ । କାରଣ ତୁମମାନଙ୍କୁ ତ ଥାନାକୁ ଡାକି ହେବନି-. ଏଇଠି ସବୁକାମ କରିବାକୁ ପଡ଼ିବ ନା ।
ହଁ ରେଣୁ ତୋର ସେଇ ଚାକର ଟୋକାକୁ କହିଲୁ ଗୋଟେ ଭଲ କରି ଚା'କରୁ ।

ରେଣୁ : ସେ ତ ନାହିଁ - ମୁଁ ଯାଏ କରିଦେଇ ଆଣୁଛି ।

ବାନା : ନାହିଁ ମାନେ କୁଆଡ଼େ ଯାଇଛି ?

ରେଣୁ : ତା' ମା' ଦେହ ଖରାପ୍ କଥା ଫୋନ୍ ଆସିଥିଲା । ତିନି ଚାରି ଦିନ ହେଲା ତାଙ୍କ ଗାଁକୁ ଯଆଇଛି । (ରେଣୁ ଭିତରକୁ ଯାଆନ୍ତି)

ବାନା : ଏ ଟୋକା ଆଗରୁ ଖସି ଯାଇଛି । ଏ କେସ୍ ସହିତ ଏ ଟୋକାର କିଛି କନେକସନ୍ ନାହିଁ ତ?

ସରୋଜ : ନା-ନା ସେ ସେମିତିକା ପିଲା ନୁହେଁ । ତାକୁ ଏଥିରେ ଯୋଡ଼ିବା କ'ଣ ଦରକାର ।

ବାନା : ଆପଣ ସେ ସବୁ କଥା ବୁଝିବେନି ସରୋଜ ବାବୁ । ଆମେ ପୋଲିସ୍ ଡିପାର୍ଟମେଣ୍ଟ ଲୋକ ଏ ଦୁନିଆର ଅସଲି ରୂପ ଦେଖିବାର ବହୁତ୍ ସୁଯୋଗ ପାଉଛୁ । ଏ ସବୁ ଘଟଣାରେ ପ୍ରଥମ ନିୟମ ହେଲା, ମାନେ ତଦନ୍ତ କରିବାର ପ୍ରଥମ କଥା ହେଲା, "ନରୋତ୍ତମ ଦାସ କହେ କୌନ ଶାଲା ଭାଲୋ ନଏଁ ।" ଏମିତି ଏକ ବିଶ୍ୱାସ ଉପରେ ଭରଷା ରଖି ଆଗେଇ ଯିବା କଥା । ସେଇ ଗୀତ ମାଷ୍ଟର ସୁରମଣୀ ଦିଦି' ଆଉ ତୁମର ଏ ଚାକର ଟୋକା କଥା ଦରକାର ହେଲେ ଆମ ତଦନ୍ତ ପରିସର ଭିତରକୁ ଆଣିବାକୁ ପଡ଼ିବ । ହେଲେ ସେ ସବୁ ପରକଥା, ଆଚ୍ଛା ଆପଣଙ୍କ ଜିପଟା ଅଛି । ଡ୍ରାଇଭରକୁ କୁହନ୍ତୁ, ସେ ରେଡ଼ିଥାଉ ।ଗାୟତ୍ରୀ ପାଖରୁ ସବୁକଥା ଶୁଣିଲା ପରେ ତାକୁ ବି କାମରେ

ଲଗାଇ ଦେବା । ମାନେ ଆପଣ ଗାୟତ୍ରୀକୁ ସାଂଗରେ ନେଇ ସହରସାରା ଗୋଟେ ଚକ୍କର ଲଗେଇଦେବେ । କୋଉଠି କିଛି ସୁରାକ୍ ପାଇଲେ ପୋଲିସକୁ ଖବର ଦେଇଦେବେ । ଆସନ୍ତୁ ଗାୟତ୍ରୀ ପାଖରୁ ସବୁ କଥା ଶୁଣିନେବା- ଗୋଟେ ଏଫ୍.ଆଇ.ଆର୍. କରିବାକୁ ପଡ଼ିବ ନା... ।

(ସମସ୍ତେ ଭିତରକୁ ଚାଲିଯାନ୍ତି)



# ଅନ୍ତିମ ପାଦ

(ସେଇ ଘର । ପବନା ଘର ସଫା କରୁଛି)

ପବନା : ନାଇଁ ନାଇଁ ବଢ଼ିଲା ଝିଅ । ପାଠ ଶାଠ ଦି' ଅକ୍ଷର ପଢ଼ିଛି ବୋଲି ତୁମେ ତାକୁ ଏକା ଏକା ଘରେ ଛାଡ଼ି ଦେଇ ଚାଲିଯିବ । କ'ଣ ହେଲା- ବାଏଁବାଏଁ । ନୂଆ ସ୍କୁଟିଟା ଚାଲିଗଲା । ଆମ ଅପା ବି ଅଜବ ଝିଅ । ଚିହ୍ନା ନାହିଁ... ପରିଚୟ ନାହିଁ- କିଏ ଦି' ଜଣ ମାଛ ଦି'ଟା ଆଣି ଦେଇଦେଲେ ବୋଲି ତାକୁ ତୁମେ ଖାଇବାକୁ ପିଇବାକୁ ଦେଇ ଗାଡ଼ିଟା ଧରାଇ ଦେବ । କୋଉଦିନ ବୁଢିଟା ପାକଳ ହେବ କେଜାଣି... ।

(ବାନାମ୍ବର ଆସନ୍ତି)

ବାନା କିରେ ତୁ ପରା ଗାଁକୁ ଯାଇଥିଲୁ, କେତେବେଳେ ଆସିଲୁ ?

ପବନା : ଜୁହାର ଆଜ୍ଞା, ଏଇ ଅଧଘଣ୍ଟା ହେଲା ପହଁଚିଛି ।

ବାନା : ଠିକ୍ ଅଛି, ତୋ ବାବୁ ବାବୁଆଣିଙ୍କୁ ଡାକ ।

ପବନା : କେହି ନାହାଁନ୍ତି, ସମସ୍ତେ ଜିପରେ ବସି ଚୋର ଖୋଜି ଯାଇଛନ୍ତି ।

ବାନା : ସମସ୍ତେ ପଳାଇଛନ୍ତି - ଏଥିରେ କହିବନା ସ୍କୁଟି ଚୋରି ହୋଇଯାଇଛି । ତୋ ପାଖରେ ତାଙ୍କର ମୋବାଇଲ୍ ନମ୍ବର ଅଛି...?

ପବନା : ମୋ ପାଖରେ ନାହିଁ ଯେ, ହେଲେ ଏଇଠି ଗୋଟେ ଖାତାରେ ଲେଖା ହୋଇଥିଲା... ମୁଁ ଦେଖୁଛି ।

ବାନା : ଥାଉ ତୋର ଦେଖିବା ଦରକାର ନାହିଁ, ଯା ତିନିକପ୍ ଭଲ ଚା' କରିଆଣ ।

ପବନା : ଆଜ୍ଞା ଆଣୁଛି । ହେଲେ ତିନିକପ୍ ... କ'ଣ ଏକାବେଳେକେ ତିନି କପ୍ ପିଇବେ ।

ବାନା : ମୋ ଉପରେ ଆମ ଥାନାର ଆଉ ଏମିତିଜଣ ଅଫିସର ଅଛନ୍ତି । ଯା... ।
(ପବନା ଚାଲିଯାଏ, ବାନାମ୍ବର ମୋବାଇଲ୍ ଲଗାଇ କଥା ହୁଅନ୍ତି ।)
ହାଲୋ... ସରୋଜ୍ ବାବୁ... ଆପଣମାନେ କେଉଁଠି ? ଏଁ ଏତେଦୂର ପଳାଇଛନ୍ତି । ସମସ୍ତେ ପଳାଇଆସନ୍ତୁ । ସ୍କୁଟି ସହ ସେ ଧପ୍ପାବାଜ୍ ସ୍ୱାମୀ ସ୍ତ୍ରୀ ଦୁଇଜଣ ଯାକ ଧରା ପଡ଼ିଯାଇଛନ୍ତି । ହଁ, ବାନାମ୍ବର ଖଡ଼କରାୟ ବୁଦ୍ଧି ଲଗେଇଛି ମାନେ ସେମାନେ ଯିବେ କୁଆଡ଼େ ? ଆମ ଡ଼ିପାର୍ଟମେଣ୍ଟରେ ମୋ ଶତ୍ରୁଗୁଡ଼ାକ ସବୁବେଳେ ପ୍ରଚାର ଚଳାଇଛନ୍ତି ଯେ ମୋ ଦ୍ୱାରା କୁଆଡ଼େ ଖଡ଼ା ସିଝିବନି । କଂପ୍ଲେନ୍ ହେବାର ଦୁଇଘଣ୍ଟା ଭିତରେ ଚୋରିମାଲ୍ ସହିତ ଚୋରକୁ ଧରିନେଇଛି । ଏଥର ସମସ୍ତଙ୍କ ମୁହଁକୁ କେମିତି ଉବତ୍ କରିବି ଦେଖିବେ । ଜଲଦି ଚାଲିଆସ । (ପବନା ଗୋଟେ ଟ୍ରେରେ ଚା' ଧରି ଆସେ)
ମୋତେ ଗୋଟେ କପ୍ ଦେଇ ବାକିତା ଉପରେ ମୋର ଯେଉଁ ଷ୍ଟାଫ୍ ବସିଛନ୍ତି, ସେମାନଙ୍କୁ ଦେଇଦେବୁ । ହଁ, ଦାସବାବୁଙ୍କୁ କହିବୁ, ସେ ଦିଇଟା ଚୋର ଓ ଚୋରଣୀଙ୍କୁ ଏଇଠିକି ପଠାଇଦେବେ ।

ପବନା : ସ୍ୱାମୀ ସ୍ତ୍ରୀ ଦି' ଜଣ ଯାକ ଧରାପଡ଼ିଛନ୍ତି ଆଜ୍ଞା ?

ବାନା : ଖବର ପାଇଲା ମାତ୍ରେ ସହରର ସମସ୍ତ ରାସ୍ତା ଘାଟ ସିଲ୍ କରିଦେଲି । ଯିବେ କୁଆଡ଼େ... । ଯା ଯା ଚା' ପୁଣି ଥଣ୍ଡା ହୋଇଯିବ ।
(ପବନା ଚା' ଟ୍ରେ ନେଇ ବାହାରିଯାଏ । ପରେ ପରେ ବାନାବରଙ୍କର ମୋବାଇଲ୍ ରିଂ ହୁଏ ।)

ବାନା : (ମୋବାଇଲରେ) ହାଲୋ... କ'ଣ ହେଲା ? ଗୀତ ମାଷ୍ଟ୍ର ଥାନାକୁ ଆସି ବସିଛି । ଠିକ୍ ଅଛି ତାକୁ ସେଠି ବସାଇ ଥାଅ । ମୁଁ ଏଇଠୁ ଆମ ଗାଡ଼ିଟା ପଠାଇ ଦେଉଛି । ତାକୁ ଏଇଠି ସରୋଜ ବାବୁଙ୍କ କ୍ୱାଟରକୁ ପଠାଇଦେବ । ତାକୁ କହିବ, ମୁଁ ଏଠି ସେ ପ୍ରୋଗ୍ରାମ୍ ବିଷୟରେ କଥା ହେବାକୁ ଅପେକ୍ଷା କରିଛି । ଓକେ, ରଖୁଛି ।
(ବାହାରୁ ଆସନ୍ତି ଜଣେ କନେଷ୍ଟବଳ ସହିତ ଭୁବନାନନ୍ଦ ଓ ସୁଭଦ୍ରାଦେବୀ)

ବାନା : (କନେଷ୍ଟବଳକୁ) ତୁମେ ଡ୍ରାଇଭରକୁ କହି ଥାନାକୁ ଯାଅ ତ । ସେଠି ସେ ଗୀତ ମାଷ୍ଟ୍ର ବସିଛି ନେଇଆସିବ ।

ସୀପାହୀ : ସାର୍ ।

ବାନା : ଶୁଣ, ସ୍କୁଟି ଚୋରି ସଂକ୍ରାନ୍ତରେ ତାକୁ ଡକାଯାଇଛି ବୋଲି ସେ ଜାଣିନି ।

ତାଙ୍କୁ କୁହାଯାଇଛି ଗୋଟେ ସଂଗୀତ କାର୍ଯ୍ୟକ୍ରମ ନେଇ ତା ପାଖରେ କାମ ଅଛି । ତେଣୁ ସ୍କୁଟି ଚୋରୀ କଥା କେବେ କହିବନି । ଏଠିକି ଆସିଲେ ମୁଁ ତା' ପାଖରୁ କଥା ଆଦାୟ କରିବି ।

ସିପାହୀ : ସାର୍ । ମୁଁ କେବଳ ଆପଣ ଡକାଇଛନ୍ତି ବୋଲି କହି ନେଇଆସିବି ।

ବାନା : ହଁ, ତାଙ୍କୁ ଆଣି ସେ ଭିପରେ ବସେଇଥିବ । ମୁଁ କହିଲେ ମୋ ପାଖକୁ ଆଣିବ ।

ସିପାହୀ : ସାର୍ । (ସିପାହୀ ସାଲ୍ୟୁଟ୍ ମାରି ଚାଲିଯାଏ)

ବାନା : (ଭୁବନାନନ୍ଦ ଓ ସୁଭଦ୍ରାଙ୍କୁ ଚାହିଁ) ହଁ, ତୁମେ ଦି'ଜଣ ଚାରିଶହବିଶ୍ ଶ୍ରୀମାନ୍ ଶ୍ରୀମତୀ ଦୁଇଜଣ ଯାକ ସେଠି କାହିଁକି ଠିଆ ହେଇ ରହିଲ । ଏଇଠିକି ମୋ ସାମନାକୁ ଆସ । ଆଜି ତୁମେ ଦି'ଜଣ ବଡ଼ ଚତୁରତାର ସହିତ ଏ ଘରକୁ ଆସି ନୂଆ ସ୍କୁଟିଟା ମାରିନେଲ । ଯାହା ଜଣାପଡୁଛି, ଏ ପ୍ରକାର ବିଚକ୍ଷଣ ଠକାମିରେ ତୁମେମାନେ ଧୁରନ୍ଧର । ଆଚ୍ଛା ଆଜି ତ ଧରା ପଡିଗଲ, ହେଲେ ଯ୍ୟା ପୂର୍ବରୁ କୋଉଠି କୋଉଠି ପଶି କ'ଣ କ'ଣ ଧପାଇ ଆଣିଛ- ଆଉ ତୁମ ଦଳରେ କିଏ କିଏ ସବୁ ଅଛନ୍ତି ଗୋଟି ଗୋଟି କରି କହିପକାଅ । ହୁଁ ଜଲଦି...ଜଲଦି... (ହଠାତ୍ ଚିତ୍କାର କରି) ଆବେ ତୁମ ଦି'ଜଣଙ୍କ ପାଟିରେ କ'ଣ ବେଙ୍ଗ ପଶିଛି ଯେ ଏମିତି ଚୁପ ହୋଇ ରହିଯାଉଛ । ଜଲଦି କହିବ ନା... ବାନାମ୍ବର ଖଡ୍‌ଗରାୟର ରୂପ ଦେଖିବ ।

ଭୁବନା : ଆପଣ ଦୟାକରି ସରୋଜ ବାବୁଙ୍କୁ ଆଉ ତାଙ୍କ ସ୍ତ୍ରୀଙ୍କୁ ଡ଼ାକନ୍ତୁ । ମୋ ନା ଭୁବନାନନ୍ଦ ତରାଇ କି ନୁହେଁ ସେ କହନ୍ତୁ ।

ବାନା : ସେମାନଙ୍କୁ ଖବର ଦିଆଯାଇଛି, ସେମାନେ ଆସିବେ । ମୁଁ ତ କହୁଛି, ତୁମେ ଭୁବନାନନ୍ଦ ତରାଇ । ତୁମେ ଏଇ ସ୍ତ୍ରୀ ଲୋକକୁ ଧରି ନିଜକୁ ଭୁବନାନନ୍ଦ ତରାଇ କହି ଏଠିକି ଆସି ସ୍କୁଟିଟା ମାରିନେଇଥିଲ ।

ଭୁବନା : ଆଜ୍ଞା, ଏଇ ଘରକୁ ଆଜି ମୁଁ ଆଦୌ ଆସିନି । ବରଂ ଆଜି ସରୋଜ ବାବୁ ତାଙ୍କ ସ୍ତ୍ରୀଙ୍କୁ ଧରି ଆମ ଗାଁକୁ ମୋ ଘରକୁ ଯାଇଥିଲେ । ଆମେ ଦିନସାରା ଏକାଠି ଥିଲୁ ।

ବାନା : ତା' ହେଲେ ତୁମେ ଏ ସ୍ତ୍ରୀ ଲୋକକୁ ଧରି ଏଠିକି ଆଜି ଆସିନ । ତା'ମାନେ ଏ ସ୍ତ୍ରୀଲୋକ ବି ଏଠିକି ଆସିନଥିଲା । କି ଏ ବି ତୁମର ସ୍ତ୍ରୀ ନୁହେଁ ।

ଭୁବନା : ଆଦୌ ନୁହେଁ । ଆପଣ ଏ ଭଦ୍ର ମହିଳାଙ୍କୁ ମୋ ସ୍ତ୍ରୀ ମୋ ସ୍ତ୍ରୀ କହି ତାଙ୍କୁ ଅପମାନିତ କରି ଚାଲିଛନ୍ତି । ସରୋଜ ବାବୁ ଆସିଲେ ସବୁ ଜାଣିବେ ।

ବାନା : ତା'ମାନେ ଏ ସ୍ତ୍ରୀ ଲୋକ ଏଠିକି ଆଜି ଆସିଥିଲା ବୋଲି ତୁମେ ମାନିବାକୁ ପ୍ରସ୍ତୁତ ନୁହଁ ।

ଭୁବନା : ନା, ଏଇ ଭଦ୍ରମହିଳା ଜଣକ ତାଙ୍କ ସ୍ୱାମୀଙ୍କ ସହିତ ଏ ଘରକୁ ଆସିଥିଲେ । ଏଇଠୁ ସେମାନେ ସ୍କୁଟି ନେଇ ଯାଇଥିଲେ । ରାସ୍ତାରେ ୟା'ଙ୍କ ସ୍ୱାମୀ ମୋତେ ଦେଖିଲେ । ସ୍କୁଟି ଆଉ ୟାଙ୍କୁ ମୋ ପାଖରେ ଛାଡି ଦେଇ ପାଖ ଦୋକାନରୁ ମିଠା ଆଣିବାକୁ ଯାଇଥିବା ଅବସ୍ଥାରେ ଆପଣ ଆମକୁ ଦେଖିନେଲେ । ମୋ କଥାକୁ ନ ଶୁଣି ଆମ ଦୁହିଁଙ୍କୁ ସ୍ୱାମୀ ଓ ସ୍ତ୍ରୀ କହି ଆମକୁ ଏଠିକି ନେଇ ଆସିଛନ୍ତି । ଯେତେ କହିଲେ ବି ବୁଝୁନାହାଁନ୍ତି ।

ବାନା : (ପାଟିକରି) ଚୁପ୍ । ପାଟିବନ୍ଦ । ଏଠିକି ଯିଏ ଆସିଥିଲା... ତା ନାଁ ଭୁବନାନନ୍ଦ ତରାଇ... । ତୁମେ ଦିଇଟା ଚାରିଶହ ବିଶ୍ ମୋତେ ବନେଇ ଯିବ ବୋଲି ଭାବିଛ । ଏମିତି ପାଣ୍ଡିଦେବି ଯେ... କାଳ କାଳକୁ ମନେ ପକାଉଥିବ । ମୁଁ ଯାହା ଯାହା ପଚାରିବି କେବଳ ହଁ କିମ୍ବା ନାଁରେ ଉତ୍ତର ଦେବ ।

ଭୁବନା : ଆପଣ ସରୋଜ ବାବୁ ଆସିବା ଯାଏ ଅପେକ୍ଷା କରନ୍ତୁ । ତା'ପରେ ଯାଇ ମୁଁ ଯାହା ଉତ୍ତର ଦେବି ।

ବାନା : କ'ଣ ତୁମ କଥା ଅନୁସାରେ ବାନାବର ଖଡ଼ଗରାୟ କାମ କରିବ । ଯାହା ଯାହା ପଚାରୁଛି ହଁ କିମ୍ବା ନାଁରେ ଉତ୍ତର ଦେବ । ଅଧିକା ପଦେ କଥା କହିଲେ ବୁଝିବ ସେତେବେଳେ ।

ଭୁବନା : ହଁ ବା ନାଁରେ ମୁଁ କିଛି ଉତ୍ତର ଦେଇପାରିବିନି ।

ବାନା : କାହିଁକି ?

ଭୁବନା : କେବଳ ହଁ ବା ନାଁ, ଉତ୍ତର ଦେଲେ ପ୍ରତ୍ୟେକ ଉତ୍ତରର ଦୁଇ ଦୁଇଟା ଅର୍ଥ ବାହାରିବ । ଯାହା ଫଳରେ ଅସଲ କଥାଟା ଆପଣ ଜାଣିପାରିବେନି ।

ବାନା : ନା' ସେମିତି କେବେ ହେବନି । ଅନେକ ସମୟରେ୍ ଅପରାଧିମାନଙ୍କୁ ଇନ୍‌ଟୋରଗ୍ରେସନ୍ କଲାବେଳେ ଆମେ ଏ ପ୍ରକାର କୌଶଳ କରି ଅସଲ ସତ୍ୟକୁ ଉଦ୍‌ଘାଟନ କରିପାରିଛୁ ।

ଭୁବନ : ଆପଣ କରିଥାଇପାରନ୍ତି । କିନ୍ତୁ ପ୍ରଶ୍ନ ଯଦି କୌଶଳପୂର୍ଣ୍ଣ ଢଙ୍ଗରେ ପଚ଼ରାଯାଏ ତେବେ ହଁ ବା ନାଁ ଉତ୍ତରରେ ଆପଣ ହଇରାଣ ହୋଇଯିବେ ।

ବାନା : କେବେ ନୁହେଁ । I don't believe it.

ଭୁବନା : ଉଦାହରଣ ସ୍ୱରୂପ ମୁଁ ଆପଣଙ୍କୁ ଯଦି କିଛି ପ୍ରଶ୍ନ କରିବି ଆପଣ ହଁ ବା

ନାଁରେ ଉତ୍ତର ଦେଇ ଦେଖିବେ କେମିତି ଅର୍ଥ ହେଉଛି ।

ବାନା : ହୁଁ ମାହାଳିଆ ହେଇଛି । ପଚ୍ଚାରିଲ ଦେଖି । ଦେଖିବି ମୋ କଥାର ତୁମେ କେମିତି ଦୁଇ ଦୁଇଟା ଅର୍ଥ ବାହାର କରିବ ।

ଭୁବନା : କିଛି ଖରାପ୍ ଭାବିବେନି ସାର୍ । ପଚ୍ଚାରୁଛି ?

ବାନା : ହଁ ପଚ୍ଚାର ।

ଭୁବନା : ଆଚ୍ଛା - ଆପଣ ଆଗରୁ ଯେମିତି ଲାଂଚଖାଇ ଚୋରମାନଙ୍କୁ ଛାଡ଼ି ଦେଉଥିଲେ ଏବେ ସେମିତି କରୁଛନ୍ତି କି ? ଦେଖନ୍ତୁ କେବଳ ହଁ ବା ନାଁରେ ଉତ୍ତର ଦେବେ ।

ବାନା : ନା...ଉହୁଁ ହଁ... ହଁ... ନାଇ ନାଇ... ନା ।

ଭୁବନା : ହଁ ବା ନା , ୟା ଭିତରୁ କେଉଁଟା ଆପଣଙ୍କର ଶେଷ ଉତ୍ତର ?

ବାନା : ଉଁ ...?

ଭୁବନା : ଯଦି ଉତ୍ତର ନା କହିବେ ତେବେ ବୁଝାପଡ଼ିବ ଯେ ଆପଣ ଆଗରୁ ଲାଂଚ ଖାଇ ଚୋରମାନଙ୍କୁ ଛାଡ଼ି ଦେଉଥିଲେ ଏବେ କରୁନାହାଁନ୍ତି ।

ବାନା : ଯଦି ହଁ କହିଥାନ୍ତି ।

ଭୁବନା : ତା ହେଲେ ପ୍ରମାଣିତ ହେବ ଯେ ଆପଣ ଆଗରୁ ଲାଂଚ୍ ଖାଉଥିଲେ, ଏବେ ବି ଖାଉଛନ୍ତି । ଆଉ ଚୋରମାନଙ୍କୁ ଛାଡ଼ି ଦେଉଛନ୍ତି ।

ବାନା : ଧେତ୍ ତେରିକି । ତୁମେ ୟାଡୁ ସିଆଡୁ କହି ମୋ ମୁଣ୍ଡଟା ଗୋଳମାଳ କରିଦେଉଛ । ମୁଁ ତୁମକୁ ଆଉ ତୁମ ସ୍ତ୍ରୀକୁ ହାଜତକୁ ପଠାଇବା କଥା ପଠାଇବି । କାରଣ ତୁମେ ଚୋରିମାଲ୍ ସହିତ ଧରାପଡ଼ିଛ ।

(ସିପାହୀ ଆସେ, ସାଲ୍ୟୁଟ୍ କରେ)

ସିପାହୀ : ନେଇ ଆସିଲି ସାର୍ । ଆମ ଗାଡ଼ିରେ ବସାଇଛି ।

ବାନା : ଠିକ୍ ଅଛି, ତାକୁ ମୋ ପାଖକୁ ପଠାଇଦିଅ । (ଭୁବନାନନ୍ଦ ଓ ସୁଭଦ୍ରାଙ୍କୁ) ତୁମେ ଦି'ଜଣ ସେପଟ ବାରଣ୍ଡାରେ ଯାଇ ବସ । ତୁମେ ଏଠି ଅଛ ବୋଲି ଗୀତମାଷ୍ଟ୍ର ଯେମିତି ନ ଦେଖେ, ଯାଅ ।

(ଭିତର ଦିଗକୁ ଭୁବନା ଓ ସୁଭଦ୍ରା ଯାଆନ୍ତି । ସିପାହୀ ବାହାର ଦିଗକୁ ଚାଲିଯାଏ । ପରେ ପରେ ପ୍ରବେଶ କରନ୍ତି ସୁରମଣୀ । କଣ୍ଠରେ ତାର ଗୋଟେ ଶାସ୍ତ୍ରୀୟ ରାଗର ତାନ... ଆ ଆ ଆଃ...)

ସୁର : ପ୍ରଣାମ । (ବାନାବର କିଛି ନ କହି କେବଳ ଚାହିଁ ରହନ୍ତି) ହେ...ହେ...

ସୁରମଣୀ ଆପଣଙ୍କୁ ପ୍ରଣାମ କଲା ସାର୍ ।

ବାନା : ତୁମ ଛଡ଼ା ତ ଏଠି ଆଉ କେହିନାହାଁନ୍ତି ପୁଣି କିଏ ପ୍ରଣାମ କଲା...?

ସୁର : ଏଇ(ନିଜକୁ ଦେଖାଇ) ନିଜେ ସୁରମଣୀ ସଶରୀରେ ଆପଣଙ୍କ ସେବାପାଇଁ ଉପସ୍ଥିତ ହେଇଯାଇଛି ।

ବାନା : ଆଚ୍ଛା ...ଆଚ୍ଛା... ତୁମେ ହେଉଛ ସୁରମଣୀ । ସଂଗୀତ ଗୁରୁ ସୁରମଣୀ । ବଢ଼ିଆ ହେଲା ହଜିଲା ବଳଦ ଖୋଜିଲା ଠେଇଁ ।

ସୁର : ହେ ହେ ହେ... ସୁରମଣୀକୁ ଖବର ଦିଆଗଲା ମାନେ ଆପଣଙ୍କ କାମ ହୋଇଗଲା ବୋଲି ଭାବନ୍ତୁ । କେବଳ ସ୍ଥାନ, କାଳ, ସମୟ ,ତାରିଖ କି ପ୍ରକାର କାର୍ଯ୍ୟକ୍ରମ ତାର ସୂଚନା ଦେଇଦେଲେ ହେଲା ।

ବାନା : ଦିଆଯିବ, ସବୁ କିଛି ଦିଆଯିବ । ତେବେ ତୁମ ଦଳରେ କେତେ କଳାକାର କାମ କରନ୍ତି କହିଦେଲେ ଭଲହୁଅନ୍ତା...?

ସୁର : ଆପଣଙ୍କର କି ପ୍ରକାର ପ୍ରୋଗ୍ରାମ୍ ଚାହୁଁଛନ୍ତି କହିଦେଲେ ଦଳ ବିଷୟରେ ସବୁ ଠିକ୍ କରି ଦେଇପାରନ୍ତା ଏ ସୁରମଣୀ... ।

ବାନା : ଦଳ ଭିତରେ ସବୁ ଦକ୍ଷ କଳାକାର ତ ?

ସୁର : କେବଳ ଦକ୍ଷ ନୁହଁନ୍ତି - ସବୁ କୁଶଳୀ ଆଉ ଧୁରନ୍ଧର । ଆମର ଗୋଟେ ପ୍ରୋଗ୍ରାମ୍ ଦେଖିଦେଲେ ସବୁ ଜାଣିପାରିବେ ।

ବାନା : ଆଜି ଗୋଟେ ପ୍ରୋଗ୍ରାମ୍ ଦେଖି ଦେଇଛି ବୋଲି ଡକାଇଲି । ବଢ଼ିଆ ପ୍ରୋଗ୍ରାମ ।

ସୁର : ସୁରମଣୀ ଦଳର ପ୍ରୋଗ୍ରାମ୍ ପୁଣି ଆଜି... କିଛି ବୁଝିହେଲାନି ସାର୍ ।

ବାନା : କଣ ବୁଝିହେଉନି ମ... ଆଜି ସୁରମଣୀଙ୍କ ନିର୍ଦ୍ଦେଶନାରେ ନଗଦାନଗଦ ଯେଉଁ ସ୍କୁଟି ପ୍ରୋଗ୍ରାମ୍‌ଟା ହୋଇଛି ସେଇଟା କେମିତି ଭୁଲିଯାଉଛ ।

ସୁର : ସ୍କୁଟି ପ୍ରୋଗ୍ରାମ୍ ... ସେଇଟା କି ପ୍ରକାର ସଂଗୀତ ପ୍ରୋଗ୍ରାମ୍ ? ସ୍କୁଟି ନାମରେ କୌଣସି .... ଆପଣ ଭୁଲ୍ କହୁଛନ୍ତି ସାର୍ ।

ବାନା : ରୁହ ତୁମର ଧୁରନ୍ଧର କଳାକାରମାନଙ୍କୁ ଦେଖିଦେଲେ ସବୁ ଜାଣିପାରିବ ।

(ବାନାମ୍ବର ଭିତରକୁ ଯାଇ ଭୁବନା ଓ ସୁଭଦ୍ରାକୁ ନେଇଆସନ୍ତି ।)

ଏଇ ଦୁଇଜଣ ତୁମ ନିର୍ଦ୍ଦେଶନାରେ ସକାଳ କାର୍ଯ୍ୟକ୍ରମ କରିନାହାଁନ୍ତି ?

ସୁର : ନା, ନା, ଏମାନେ ମୋ ଗୋଷ୍ଠୀର କଳାକାର ନୁହଁନ୍ତି । ଆପଣ ଅନ୍ୟକାହାକୁ ଭାବି ମୋତେ ...... ।

ଦାନା : ଚୁପ୍ । ପୋଲିସ୍ ଅଫିସର ଦାନାଦର ଖଡ଼ଗରାୟ ସାମନାରେ ବେଶୀ ବକ୍ ବକ୍ କରିବନି । ଥାନାକୁ ନେଇ ଗୋଟେ ଦିଇଟା ଉତ୍ତମ ମଧ୍ୟମ ଆରମ୍ଭ ହେଇଗଲେ ସବୁ ବାହାରି ପଡ଼ିବ...ଏମାନଙ୍କୁ ତୁମେ ଚିହ୍ନ କି ନାହିଁ କୁହ ?

ସୁର : (ଭୁବନାକୁ ଚାହିଁ) ଆଜ୍ଞା ଆପଣ ଏଇ ସୁରମଣୀକୁ ଜାଣିଛନ୍ତି ? ଆପଣମାନେ ସବୁ କିଏ, ସୁରମଣୀ ଜାଣିନି... । ବିଶ୍ୱାସ କରନ୍ତୁ ଆଜ୍ଞା, ଏମାନଙ୍କୁ ସୁରମଣି ଜାଣନି କି ଚିହ୍ନିନି ।

ଭୁବନା : ମୁଁ ବି ଏ ଜନ୍ତୁ କିଏ ଜାଣିନି ।

ଦାନା : ଚୁପ୍ । ତୁମ ଡକାୟତମାନଙ୍କ ମୁହିଁ ଇସପାତ । ହାଜତରେ ଭର୍ତ୍ତିକରି ଦି ଦି ଦଣ୍ଡା ପାଇଗଲେ ସବୁକଥା କିଏ କାହାକୁ ଚିହ୍ନିଛି କି'ନାହିଁ ଧରାପଡ଼ିଯିବ ।

(ବାହାରୁ ଆସନ୍ତି ରେଣୁ, ସରୋଜ ଓ ଗାୟତ୍ରୀ)

ଭୁବନା : (ସରୋଜ ପାଖକୁ ଯାଇ) ଭାଇ ସରୋଜ ଏଇ ପୋଲିସ୍ ବାବୁଙ୍କ କବଳରୁ ମୋତେ ବଞ୍ଚା । ମୁଁ କୁଆଡେ ଏଇ ସ୍ତ୍ରୀ ଲୋକକୁ ଧରି ଆଜି ତୋ ଝିଅର ସ୍କୁଟିଟା ଏଇଠୁ ଠକି ନେଇଛି ।

ଦାନା : ତୁମ ନା ଭୁବନାନନ୍ଦ ତରାଇ - ତୁମେ ସ୍କୁଟି ନେଇନ ତ ତୁମ ଭୂତ ଆସି ନେଇଗଲା... ।

(ବନମାଳୀ ମିଠା ପ୍ୟାକେଟ୍ ସହ ଆସେ)

ବନମାଳୀ : (ପ୍ରବେଶ) ହଁ ଆଜ୍ଞା, ଭୂତ ଆସି ନେଇଗଲା... ।

ଦାନା : ତୁମେ କିଏ ? କ'ଣ ଏ ସବୁ କହିଯାଉଛ ?

ବନମାଳୀ : (ଭୁବନାନନ୍ଦଙ୍କୁ ଦେଖାଇ) ଆଜ୍ଞା ଏ ହେଉଛି ଭୁବନାନନ୍ଦ ତରାଇ ଅର୍ଥାତ୍ ଭୂତ - ଆଉ ମୁଁ ହେଉଛି ଭୂତର ଛାଇ । ଅର୍ଥାତ୍ ଯିଏ ଆସି ଏଇଠୁ ସ୍କୁଟି ନେଇଯାଇଥିଲା (ସୁଭଦ୍ରାଙ୍କୁ) ଇଏ ହେଉଛନ୍ତି ମୋ ସ୍ତ୍ରୀ ସୁଭଦ୍ରା ଦେଈ ।

ଦାନା : ମାନେ ?

ଭୁବନା : ଆଜ୍ଞା ଏଇ ବାବୁ ହେଉଛନ୍ତି ବନମାଳୀ । ଯିଏ ତା ସ୍ତ୍ରୀକୁ ଆଉ ସ୍କୁଟିକୁ ମୋ ପାଖରେ ଛାଡ଼ି ପାର୍ଶ୍ୱ ଗଳିକୁ ମିଠା ଆଣିବାକୁ ଯାଇଥିଲେ । ମୁଁ ହେଉଛି- ଓରିଜିନାଲ୍ ଭୁବନାନନ୍ଦ ତରାଇ ଏବଂ ଏଇ ବନମାଳୀ ହେଉଛି ଡୁପ୍ଲିକେଟ୍ ଭୁବନାନନ୍ଦ ଓରଫ୍ ଭୂତର ଛାଇ ।

ଦାନା : ସରୋଜ୍ ବାବୁ ଆପଣ ବୁଝନ୍ତୁ ଏମାନଙ୍କ କଥା ମୋ ମୁଣ୍ଡରେ କିଛି ପଶୁନି ।

ବନମାଳୀ : ମା' ଗାୟତ୍ରୀ, ମୁଁ ଆଉ ତୋ ମାଉସୀ ଏଠିକି ଆସି ତୋ ରାନ୍ଧଣା ଖାଇ ତୋ ସ୍କୁଟି ମାଗିନେଇ ନଥିଲୁ ? ତୁ ଟିକିଏ ପୋଲିସ୍ ବାବୁଙ୍କୁ ବୁଝେଇ ଦେ... ।

ଗାୟତ୍ରୀ : ହଁ ମାମୁଁ, ଏଇ ମଉସା ମୋ ସ୍କୁଟି ନେଇଯାଇଥିଲେ । ମୁଁ ମୂଳରୁ କହୁଛି, ଏମାନେ କେବେ ଚୋ଼ର ହୋଇନଥିବେ, ହେଲେ କେହି ମୋ କଥାର ବିଶ୍ୱାସ କରୁନାହାଁନ୍ତି ।

ସରୋଜ : (ବନମାଳୀକୁ) ଆପଣଙ୍କ ନାଁ ବନମାଳୀ ବୋଲି କହିଲେ । ଯିଏ ଏଠିକି ଆସିଥିଲା ତା ନାଁ ଭୁବନାନନ୍ଦ ତରାଇ ପୁଣି ମୋ ସାଙ୍ଗ ବୋଲି ପରିଚୟ ଦେଇଥିଲେ । କ'ଣ କହିବାକୁ ଚାହାନ୍ତି ଆପଣ ?

ଭୁବନା : ମୋ ପାଖରୁ ଶୁଣ ସରୋଜ । ପ୍ରକୃତରେ ମୋର କୌତୁକ ଯୋଗୁଁ ଏ ସବୁ ବିଭ୍ରାଟ ଘଟିଗଲା । ଆଜିକାଲି ଆମେ ଖବରକାଗଜ, ଟି.ଭି ଇତ୍ୟାଦିରୁ ବିଭିନ୍ନ ଠକାମିର କଥା ଶୁଣି ଶୁଣି ସବୁ ଲୋକଙ୍କୁ ସନ୍ଦେହ ଦୃଷ୍ଟିରେ ଦେଖୁଛେ । ତେବେ ଏବେ ବି ସଂସାରରେ କିଛି ଭଲ ଲୋକ ଅଛନ୍ତି ଏକଥା ଆମେ ବିଶ୍ୱାସ କରିବାକୁ ପ୍ରସ୍ତୁତ ନୁହେଁ । ମୁଁ ଗୋଟି ଗୋଟି କରି ସବୁ ପରିଷ୍କାର କରିଦେଉଛି । ସେଥିରୁ ତୁ ସବୁ ବୁଝିଯିବୁ ସରୋଜ । (ବାନାମ୍ବରଙ୍କୁ) ଆପଣ ବି ଶୁଣନ୍ତୁ ସାର୍ । ଏଇ ବନମାଳୀର ପୁଅକୁ ଦେଖାଇବାକୁ କହି ସରୋଜ ଓ ରେଣୁ ଦେବୀଙ୍କୁ ମୁଁ ମୋ ଗାଁକୁ ଡକାଇ ନେଇଥିଲି । ଠିକ୍ ସେମିତି ଗାୟତ୍ରୀକୁ ଦେଖିବା ପାଇଁ - ବନମାଳୀ ଆଉ ତା ସ୍ତ୍ରୀ ସୁଭଦ୍ରା ଦେବୀକୁ ଏଇଠିକି ପଠାଇଥିଲି । ଗାୟତ୍ରୀ ମନରେ ଅଧିକ ବିଶ୍ୱାସ ଜନ୍ମାଇବା ପାଇଁ ବନମାଳୀ ନିଜକୁ ଭୁବନାନନ୍ଦ ତରାଇ କହି ଏଠିକି ଆସିଥିଲା । ଗାୟତ୍ରୀକୁ ଦେଖି ସାରିବା ପରେ ତା ସ୍କୁଟି ନେଇ ମୁଁ କହିଥିବା ସ୍ଥାନରେ ତା ସ୍ତ୍ରୀ ସହିତ ଅପେକ୍ଷା କରିଥିଲା । ଏ ସବୁ ମୋ ନିର୍ଦ୍ଦେଶରେ ହୋଇଥିଲା । ତେଣେ ସରୋଜ ଆଉ ରେଣୁ ଦେବୀଙ୍କ ସହ ଏକାଗାଡ଼ିରେ ଆମେ ଫେରିବା ବାଟରେ ମୁଁ ଓହ୍ଲେଇଗଲି । ବନମାଳୀ ଆଉ ତା ସ୍ତ୍ରୀ ପାଖରୁ ଗାୟତ୍ରୀ ବିଷୟରେ ମତାମତ ଜାଣିଲା ପରେ ଏ (ବନମାଳୀ) କିଛି ମିଠା ଆଣିବାକୁ ପାଖ ଦୋକାନକୁ ଗଲା ଏଇ ଅବସ୍ଥାରେ ଆପଣ ଆମକୁ ନେଇଆସିଲେ ।

ବାନା : ସବୁକଥା ସରୋଜ ବାବୁଙ୍କୁ କୁହନ୍ତୁ... । ମୁଁ ଏଥିରେ ଆଉ ମୁଣ୍ଡ ଖେଳେଇବା ପାଇଁ ଚା଼ହୁଁନି ।

ସରୋଜ : ତୁ ଆମ ସହିତ ଆସି ଏଇ ବନମାଳୀ ବାବୁଙ୍କୁ ଦେଖାକରିବାକୁ ଓହ୍ଲେଇ ଗଲୁ । କିନ୍ତୁ ଓକିଲ ପାଖରେ କାମ ଅଛି କହୁଥିଲୁ ?

ଭୁବନା : ହଁ, ମିଛରେ ଓକିଲ ପାଖରେ କାମ ଅଛି ବୋଲି କହିଥିଲି । ପ୍ରକୃତରେ ତୁମେ

ପୁଅକୁ ଦେଖିଲା ପରେ , ଏ ଦି'ଜଣ ଝିଅକୁ ଦେଖିଲା ପରେ - ଉଭୟଙ୍କର ମତାମତ ଜାଣିବାକୁ ଏ ପ୍ରକାର ପ୍ଲାନ୍ କରିଥିଲି । କାରଣ ଉଭୟ ହେଉଛନ୍ତି ମୋର ବନ୍ଧୁ ।

ବାନା : ତା'ମାନେ ତୁମେ ହେଉଛ ଏ ନାଟକର ଗୋବର୍ଦ୍ଧନ- ଅର୍ଥାତ୍ ଖଳନାୟକ ।

ଭୁବନା : ନା' ବାନାମ୍ବର ବାବୁ ମୁଁ ହେଉଛି ଏ ନାଟକର ସୂତ୍ରଧର । ଖଳନାୟକ ଆଉ ଜଣେ । ଯିଏ ଲୁଚି ବାହାରେ ଠିଆ ହୋଇଛି ସେ ହିଁ ଅସଲ ଭିଲିଆନ୍ । ତା' ଯୋଗୁଁ ଏ ସବୁ ବିଭ୍ରାଟ ।

ବାନା : ଖଳନାୟକ ମାନେ ଭିଲିଆନ୍ ଲୁଚି ବାହାରେ ଠିଆ ହୋଇଛି । କୋଉଠି ଅଛି ଆପଣ ଡାକିବେ ନାଁ କନେଷ୍ଟବଳକୁ କହିବି ଘୋଷାରି ନେଇଆସିବ ।

ଭୁବନା : ଆପଣ ତାକୁ ଦେଖିଛନ୍ତି- କେମିତି ଜାଣିପାରୁନାହାଁନ୍ତି ମ । ଗୋଟେ ଗୋଡ଼ ଜଖମ ହୋଇ ସେଇଟା ସେଇଠି ଠିଆ ହୋଇଛି ।

ସରୋଜ : ତୁ କାହା କଥା କହୁଛୁ ଭୁବନା... ବାହାରେ କିଏ ଅଛି ?

ଭୁବନା : ଆରେ ବାହାରେ ଏଇ ବନମାଳୀର ଧଡ଼ଧଡ଼ିଆ ଲାମ୍ବି ସ୍କୁଟରଟା ପଡ଼ି ରହିନି । ସେଇଟା ହେଉଛି ଅସଲ ଖଳନାୟକ । ସେଇଟାର ଗୋଡ଼ ଭାଙ୍ଗି ନ ଥିଲେ ଏ ସବୁ ବିଭ୍ରାଟ କ'ଣ ଘଟିଥାନ୍ତା ।

ବାନା : ତା'ମାନେ ଏଇ ଶଳା ଧକଡ଼ା ଲାମ୍ବି ସ୍କୁଟର ଯୋଗୁଁ ମୋ ଦ୍ୱାରା ଖଡ଼ା ସିଝିବନି ବୋଲି ପୁଣି ଥରେ ପ୍ରମାଣିତ ହୋଇଗଲା । ସେଇଟାକୁ ଦି ଗୋଇଠା ନ ଲଗେଇଲେ ... ମୋ ମନ ଶାନ୍ତି ପାଇବନି ।

(ସମସ୍ତେ ହସି ଉଠିଲେ)

ଭୁବନା : ସେଥିପାଇଁ ଦୁଃଖିତ ହୁଅନ୍ତୁନି ଆଜ୍ଞା । ଆପଣଙ୍କର ଭାଣିଜୀର ପ୍ରସ୍ତାବଟା କିନ୍ତୁ ପକ୍କା ହୋଇଗଲା ।

ସରୋଜ : ମାନେ ?

ଭୁବନା : ତୁ ମନା କରିପାରିବୁନି ସରୋଜ । କାରଣ ବନମାଳୀ ପୁଅକୁ ତୁମେ ପସନ୍ଦ କରିଛ ବୋଲି କହିଛ । ଏପଟେ ବନମାଳୀ ଆଉ ତା ସ୍ତ୍ରୀ ସୁଭଦ୍ରା ଦେବୀ ତୋ ଝିଅକୁ ବହୁ କରିନେବାକୁ ପୁରା ପ୍ରସ୍ତୁତ ବୋଲି କହିସାରିଛନ୍ତି ।

ରେଣୁ : ନା, ନା ସେ କଥା କେମିତି ହେବ । ପ୍ରଥମେ ପୁଅ ଆସି ଝିଅକୁ ଦେଖି ତାର ମତାମତ ଦେବାକୁ ହେବ ।

ବନମାଳୀ : ହଁ ସେଇଟା ସବୁଠୁ ଉତ୍ତମ ପ୍ରସ୍ତାବ । କଥାଟା ଫାଇନାଲ୍ ହେବା ପୂର୍ବରୁ ସେ

ଦେଖା ଦେଖି କାମଟା ହୋଇଯିବା ଭଲ ।

ଭୁବନା : ନା, ନା ସେ ସବୁ କିଛି ଦରକାର ନାହିଁ । ଗାୟତ୍ରୀ ଯେଉଁଠି କମ୍ପୁଟର ଶିକ୍ଷା କରୁଛି ସେଠିକି ତୋ ପୁଅକୁ ଆଣି ମୁଁ ଦେଖେଇ ଦେଇଛି । ସେ କାମ ତୁମ ସମସ୍ତଙ୍କ ଅଗୋଚରରେ ହୋଇଯାଇଛି । ବର୍ତ୍ତମାନ ବର ପିତା ମାତା କନ୍ୟା ପିତା ମାତା ସାମନା ସାମନି ସ୍ୱୀକାର କରିଗଲେ ପରବର୍ତ୍ତୀ କାମ ଆଗେଇ ନେବା ।

ସରୋଜ ପରବର୍ତ୍ତୀ କାମ ମାନେ...?

ଭୁବନା (ମହୁରୀ ବଜାଇବାର ଭଙ୍ଗିକରି) ତୁରୁ ତୁରୁ ତୁରୁ... ।

ବନମାଳୀ
ସରୋଜ ତୁରୁ ତୁରୁ ମାନେ ...?

ଭୁବନା : ଏ ମଙ୍ଗଳ ମହୁରୀର ତାନ ... ତଥାପି ବୁଝିପାରୁନ ?

ସୁରମଣୀ ଆଜ୍ଞା ସୁରମଣୀ ବୁଝେଇ ଦେଉଛି । ଶୁଣନ୍ତୁ ... (ଗୀତଗାଇ)

*ଜୀବନରେ ଥରେ ଆସେ ସେ ଲଗନ*
*ସେ ଯେ ବିଧିର ବିଧାନ*
*ମଙ୍ଗଳ ମହୁରୀର ତାନ...*
*(ଦୂରରୁ ମଙ୍ଗଳ ମହୁରୀର ସ୍ୱର ଭାସିଆସେ)*



***ସମାପ୍ତ***

# ଆପଣ ସାକ୍ଷୀ ରହିଲେ ହଜୁର

(ସମ୍ପୂର୍ଣ୍ଣ ହାସ୍ୟରସର ନାଟକ)

ଦିଲ୍ଲୀଶ୍ୱର ମହାରଣା

(୧୨)

# ଆପଣ ସାକ୍ଷୀ ରହିଲେ ହଜୁର

## ଚରିତ୍ର ଲିପି

| | | |
|---|---|---|
| ମୀନକେତନ | : | କୋର୍ଟ ଜମାଦାର |
| ଗୌରାଙ୍ଗ | | ଗ୍ରାମ୍ୟ ଭଦ୍ରଲୋକ |
| ଫକିର | | ଗ୍ରାମ୍ୟ ଭଦ୍ରଲୋକ |
| ଦୀନବନ୍ଧୁ | | କୋର୍ଟ ପେଷ୍କାର |
| ବିଭୂତି | | ଜଜ୍ |
| ଶ୍ରୀକାନ୍ତ | | ଶିକ୍ଷିତ ଯୁବକ |
| ହରି ବନ୍ଧୁ | | ଗ୍ରାମ୍ୟ ଭଦ୍ରଲୋକ |
| ବଳିୟାର ସିଂ | : | ପୋଲିସ୍ ଅଫିସର୍ |
| ପଦ୍ମା | | ଶିକ୍ଷିତା ଯୁବତୀ |

( ଗୋଟିଏ ସେଟ୍ - ସମୟ ଅବଧି - ୧ ଘଣ୍ଟା)

## ଆପଣ ସାକ୍ଷୀ ରହିଲେ ହଜୁର୍ ନାଟକରେ ବିଭିନ୍ନ ସମୟରେ ଭାଗ ନେଇଥିବା କଳାପରିଷଦ, ଢେଙ୍କାନାଳର୍ ଶିଳ୍ପୀଗଣ

| ଚରିତ୍ର | ଶିଳ୍ପୀଙ୍କ ନାମ |
|---|---|
| ମୀନକେତନ | ଅରବିନ୍ଦ ସାହୁ/କଳିଙ୍ଗ ପଟ୍ଟନାୟକ |
| ଗୌରାଙ୍ଗ | ଶତ୍ରୁଘ୍ନ ମାଟି |
| ଫକିର | ହିମାଂଶୁ ପଣ୍ଡା/ମନୋରଂଜନ ସିଂହ |
| ଦୀନବଂଧୁ | ପ୍ରଦୋଷ ମିଶ୍ର/ଶ୍ରୀକାନ୍ତ ମିଶ୍ର |
| ବିଭୂତି | ସୁରେଶ ମିଶ୍ର/ଅଶୋକ ଦାସ |
| ଶ୍ରୀକାନ୍ତ | ପ୍ରଶାନ୍ତ କୁମାର ସାହୁ/ରାମାନନ୍ଦ ଆଚାର୍ଯ୍ୟ/ ପ୍ରସନ୍ନ ପାଣି |
| ହରି ବନ୍ଧୁ | ବିନୋଦ ମହାନ୍ତି/ପୂର୍ଣ୍ଣଚନ୍ଦ୍ର ମହାପାତ୍ର |
| ବଳିୟାର ସିଂ | ବୈଷ୍ଣବ ଶଙ୍କର ସ୍ୱାଇଁ / ମନୋଜ ରାଉତ / ହରମୋହନ ପଟ୍ଟନାୟକ |
| ପଦ୍ମା | ପ୍ରିତିଶ୍ରୀ ପ୍ରିୟମ୍ବଦା/ଶ୍ରୀପଦ୍ମା ସାହୁ |

**ନାଟକ ଅନ୍ତରାଳରେ କାମ କରିଥିବା ଶିଳ୍ପୀ-**

| | |
|---|---|
| ସଂଗୀତ | ପ୍ରଭାତ କୁମାର ମହାନ୍ତି (ପୁଷ୍ଟୁ) |
| ସେଟ୍ | କଳିଙ୍ଗ ପଟ୍ଟନାୟକ |
| ମଂଚ ପରିଚାଳନା | ଜୟନ୍ତ ବର୍ମା |
| ନିର୍ଦ୍ଦେଶନା | ଦିଲ୍ଲୀଶ୍ୱର ମହାରଣା |

**ପରିବେଷଣ ସମୟ ଓ ସ୍ଥାନ**

ତା୧୭.୧୧.୯୭ ଗୋପବନ୍ଧୁ ଟାଉନ୍‌ହଲ, ଢେଙ୍କାନାଳ

ତା୨୬.୧୧.୯୮ ଗୋପବନ୍ଧୁ ଟାଉନ୍‌ହଲ, ଢେଙ୍କାନାଳ

ତା୧୫.୧୦.୨୦୦୦ ଗଜଲକ୍ଷ୍ମୀ ମଣ୍ଡପ, ଢେଙ୍କାନାଳ

ତା୧୨.୧୧.୨୦୦୨ ଶଙ୍କର ରଙ୍ଗମଞ୍ଚ, ରଙ୍ଗମହଲ, ଢେଙ୍କାନାଳ

(ପରେ ପରେ ଅନେକ ମଞ୍ଚରେ ଅନେକବାର)

**ଆପଣ ସାକ୍ଷୀ ରହିଲେ ହକ୍କୁର୍ ଷ୍ଟେଟ୍ ବ୍ୟାଙ୍କ୍ ଅଫ୍ ଇଣ୍ଡିଆ, ମୁଖ୍ୟଶାଖା, ଢେଙ୍କାନାଳ କର୍ମଚାରୀ ମଙ୍ଗଳ କମିଟି ଓ ଢେଙ୍କାନାଳ ସମବାୟ ବିଭାଗ କର୍ମଚାରୀ ରିକ୍ରେସନ କ୍ଲବ୍ ଦ୍ୱାର୍ ପରିବେଷଣ ସମୟରେ ଭାଗନେଇଥିବା ଶିଳ୍ପୀମାନେ -**

| ଷ୍ଟେଟ୍ ବ୍ୟାଙ୍କ୍ ଅଫ୍ ଇଣ୍ଡିଆର କର୍ମଚାରୀ | ଚରିତ୍ର | ସମବାୟ ବିଭାଗ କର୍ମଚାରୀ |
|---|---|---|
| ଜବିନ୍ଦ୍ର ସାମଲ | ମିନକେତନ | ପ୍ରତାପ ମଲ୍ଲିକ୍ |
| ପ୍ରସନ୍ନ ପାଣି | ଗୌରାଙ୍ଗ | ଉମେଶ ପ୍ରଧାନ |
| ସୁରେଶ ମହାନ୍ତି | ଫକିର | ଚିନ୍ତାମଣି ସେନାପତି |
| କୈଳାସ କର | ଦିନବନ୍ଧୁ | ଦୁର୍ଗାପ୍ରସାଦ ପାଣି |
| ଦେବେନ୍ଦ୍ର ବୋଷ/ପ୍ରଦୀପ ଜେନା | ବିଭୁତି | ଆଲୋକ ଦାସ |
| ପ୍ରକାଶ ମହାପାତ୍ର | ଶ୍ରୀକାନ୍ତ | ଦିବାକର ପ୍ରଧାନ |
| ପ୍ରଦୀପ ଶତପଥୀ | ହରୀବନ୍ଧୁ | ଦେବରାଜ ମହାନ୍ତି |
| ନିରଞ୍ଜନ ମିଶ୍ର | ବଳିଆର ସିଂ | ଶରତ ପ୍ରଧାନ |
| ଯୁଗଳ ନାୟକ | କନେଷ୍ଟବଳ | ନବ ବିଶ୍ୱାଳ |
| ଦେବଜାନୀ ଶ୍ୱେତସୁଜା | ପଦ୍ମା | ମିସ୍.ଏସ୍.ରାଓ |

**ଅନ୍ତରାଳେ**

| | | |
|---|---|---|
| ବାବୁଲି ମହାରଣା/ ସନ୍ତୋଷ ନାୟକ | ସଂଗୀତ | ବ୍ରଜବନ୍ଧୁ ରଣସିଂ |
| ପ୍ରମୋଦ ଶତପଥୀ | ସେଟ୍ | କଳିଙ୍ଗ ଚିତ୍ରାଳୟ, ଢେଙ୍କାନାଳ |
| ଦିପ୍ତି ମଲ୍ଲିକ ଓ ପୂର୍ଣଚନ୍ଦ୍ର ପତି | ମଞ୍ଚ ପରିଚାଳନା | ସୁଦର୍ଶନ ମାଟି |
| ସୁରେଶ ମହାନ୍ତି | ନିର୍ଦ୍ଦେଶନା | କୁଞ୍ଜବିହାରୀ ନନ୍ଦ |

**ପରିବେଷଣ ସ୍ଥାନ**

ନାରୀସେବା ସଦନ, ସମ୍ବଲପୁର

ଗୋପବନ୍ଧୁ ଟାଉନ୍ ହଲ୍, ଢେଙ୍କାନାଳ

# ଆପଣ ସାକ୍ଷୀ ରହିଲେ ହଜୁର

## ପ୍ରଥମ ପାଦ

ଗୋଟିଏ ସଜ୍ଜିତ କୋର୍ଟ ହଲ୍ । ଜଜ୍ ବସିବା ପାଇଁ ଡାୟସ ଉପରେ ଚୌକି ଓ ଟେବୁଲ୍, ଡାୟସ ତଳକୁ ପେସ୍କାର ବସିବା ପାଇଁ ଚୌକି ଓ ଟେବୁଲ୍ । ଜଜ୍‌ଙ୍କ ବାଁ ପାଖରେ ଉଇଟ୍‌ନେସ୍ ବକ୍ସ । ସାମନାରେ ହଲର ଡାହାଣ ଓ ବାମ ପାଖରେ ଦର୍ଶକ ବସିବା ପାଇଁ ଲମ୍ବା ବେଞ୍ଚ । କାନ୍ଥରେ ଗାନ୍ଧୀ ଓ ନେହେରୁଙ୍କର ଫଟୋ । ମଞ୍ଚର ଡାହାଣ ପାଖରେ କୋର୍ଟ ହଲର ପ୍ରବେଶଦ୍ୱାର ବାଁ ପାଖରେ ହଲରୁ ଜଜ୍‌ଙ୍କ ଚାମ୍ବରକୁ ଯିବା ଦ୍ୱାର ।

କୋର୍ଟର ଜମାଦାର ମୀନକେତନ ଗୋଟିଏ କନା ଧରି ଜଜ୍‌ଙ୍କ ଟେବୁଲ ସଫା କରୁଛି । ପ୍ରବେଶ ଦ୍ୱାର ଦେଇ ଗୌରାଙ୍ଗ ଓ ଫକୀର ପ୍ରବେଶ କରନ୍ତି । ଗୌରାଙ୍ଗ ଗ୍ରାମ୍ୟ ଭଦ୍ରବ୍ୟକ୍ତି । ପୋଷାକ ଧୋତି ଓ କୁର୍ତ୍ତା । ବୟସ ୫୦ ପାଖାପାଖି । ଫକୀରର ପୋଷାକ ଗୌରାଙ୍ଗ ଭଳି । କିନ୍ତୁ କାନ୍ଧରେ ଗାମୁଛା, ବୟସ ୬୦ ପାଖାପାଖି ରୋଗାକ୍ରାନ୍ତ ଚେହେରା ଯୋଗୁଁ ଅତ୍ୟଧିକ ବୁଢ଼ା ଭଳି ଦେଖାଯାଆନ୍ତି । ସେ ଆଜୀବନ ଶ୍ୱାସ ରୋଗୀ । ସବୁ ସମୟରେ କମାର ଭାତିରୁ ପବନ ବାହାରିଲା ଭଳି ତାଙ୍କ ମୁହଁରୁ ପବନ ବାହାରି ଚାଲିଛି । ମଝିରେ ମଝିରେ କାଶ ହେଉଛି । ସେ ଦୁହେଁ ବଡ଼ ବିନୟ ସହକାରେ ମୀନକେତନକୁ ନମସ୍କାର କରିଛନ୍ତି ।

ମୀନ : କିଓ, ଗୌରାଙ୍ଗ ପଧାନେ, ଏତେ ସକାଳ କୁଆଡ଼େ? ଆଜି ତାରିଖ ଫାରିଖ ଅଛି ନା କ'ଣ?

ଗୌରାଙ୍ଗ : ନାଇଁ ମୀନ ବାବୁ, ତାରିଖ ଫାରିଖ କିଛିନାହିଁ । ଗୋଟେ ବିପଦରେ ପଡ଼ି ପେଷ୍‌କାର ବାବୁଙ୍କୁ ଦେଖା କରିବାକୁ ଆସିଛି । (ଗୌରାଙ୍ଗ ଗୋଟେ ପତ୍ର ପୁଡ଼ିଆରେ ଦୁଇ ଚାରିଖଣ୍ଡ ପାନ ମୀନକେତନ ହାତକୁ ବଢ଼େଇ ଦିଅନ୍ତି ।)

ମୀନ : (ହସି) ପାନ? ଯେତେବେଳେ ଆସିଲ ପାନ୍ ଖୋଇ ଖୋଇ ତୁମେ ଆମକୁ ଋଣି କରିଦେବ ପଧାନେ । ମୋ ପାନ ଆଣିଚ ତ?

ଗୌରାଙ୍ଗ : ହଁ ଆଜ୍ଞା, ସାମନା ଦୋକାନରୁ ଆଣିଛି । ଦୋକାନୀ କହିଲା ମୀନକେତନ ବାବୁଙ୍କର କୃଷ୍ଣସଖା ପାନ ଆଉ ପେସ୍କାର ବାବୁଙ୍କର ପାଶୁପତ ପାନ । ସେଇତ ଭାଙ୍ଗି ଦେଇଛି ।

ମୀନ : ମୋର କୃଷ୍ଣ ସଖା ପାନ ବୋଲି ସାମନା ଦୋକାନୀ କହିଲା? କିଓ କୃଷ୍ଣସଖା ପାନ ଆଉ ପାଶୁପତ ପାନ ଆଉ ପେସ୍କାର ବାବୁଙ୍କର ପାଶୁପତ ପାନ, ମୁଁ ତ କିଛି ବୁଝିପାରୁନି ।

ଗୌରାଙ୍ଗ : ଆଜ୍ଞା ମୁଁ ତ ପ୍ରଥମେ ବୁଝି ପାରିଲିନି, ଦୋକାନୀ ମୋତେ ବୁଝେଇ ଦେଲା । କୃଷ୍ଣସଖା ପାନ ମନେ ଗୋପାଳ ଆଉ ସୁଦାମ ଧୂଳିଗୁଣ୍ଡି ପାନ । ଗୋପାଳ ହେଲା କୃଷ୍ଣ ଆଉ ତାଙ୍କ ସଖା ସୁଦାମା ।

ମୀନ : ବଗୁଲିଆ ଟିମା ଦୋକାନୀ ଏଇ କଥା କହିଛି ନା । ଆଉ ପେସ୍କାର ବାବୁତ ଶିବଦତ୍ତା ପାନ ଖାଆନ୍ତି, ତା ନାଁ ପାଶୁପତ ପାନ କେମିତି ହେଲା?

ଗୌରାଙ୍ଗ : ଆଜ୍ଞା ଶିବ ଠାକୁର ଅର୍ଜ୍ଜୁନଙ୍କ ତପସ୍ୟାରେ ଖୁସି ହୋଇ ପାଶୁପତ ଅସ୍ତ୍ର ଦତ୍ତ କରିଥିଲେ । ସେଇଠୁ ଆସିଲା ଶିବଦତ୍ତା ମାନେ ପାଶୁପତ ପାନ ।

ମୀନ : (ହସି) ବୁଝିଗଲି, ବୁଝିଗଲି । ଟିମା ଦୋକନୀ ଦେଖୁଛି ବଢ଼ିଆ ବେହଲ କଥା କହିପାରୁଛି । ପେଷ୍‌କାର ବାବୁଙ୍କୁ ଖୋଜୁଥିଲ ପରା ପଧାନେ, ହେଇ ଦୀନବଂଧୁ ବାବୁ ଆସିଲେଣି ।

(ପେଷ୍‌କାର ବାବୁ କୋର୍ଟ ହଲ୍‌କୁ ପ୍ରବେଶ ଦ୍ୱାର ଦେଇ ପ୍ରବେଶ କରନ୍ତି । ନାମ ତାଙ୍କର ଦୀନବନ୍ଧୁ । ବୟସ ପଚାଶ ପାଖାପାଖି, ବାଳ ସବୁ ଝୋଟ ହୋଇଯାଇଛି । ଆଖିରେ ଗୋଲ ଚଷମା । ପାନ ଖାଇବାର ଅଭ୍ୟାସ ଯୋଗୁଁ ପାଟିଟି ଛେଳି ପାଟି ଭଳି ଅନବରତ ଚାଲିଛି । ପେଷକାର ପ୍ରଥମେ ଆସି ଗୋଡ଼ରୁ ଚପଲ ଖୋଲି ପକେଟରୁ ପେନ୍ ନେଇ ମୁଣ୍ଡରେ ଲଗାନ୍ତି ଓ ଥରକୁ ଥର ମନେ ମନେ ମନ୍ତ୍ର ପଢ଼ି ଟେବୁଲ କାଚତଳେ ଥିବା ଠାକୁର ଚିତ୍ରକୁ ମୁଣ୍ଡିଆ ମାରନ୍ତି । ଗୌରାଙ୍ଗ ଓ ଫକୀର ଅପେକ୍ଷାକୃତ ଅଧିକ ମୁଣ୍ଡ ନୋଇଁ ପେଷ୍‌କାର ବାବୁଙ୍କୁ ନମସ୍କାର କରନ୍ତି ।)

ଗୌରାଙ୍ଗ : ନମସ୍କାର ଆଜ୍ଞା !

ଦୀନବନ୍ଧୁ : ନମସ୍କାର ନମସ୍କାର । କଚେରୀ ନଫିଟୁଣୁ ହାଜର ହେଇ ଯାଇଛ ପଧାନେ,

କଥା କ'ଣ ?

ଗୌରାଙ୍ଗ : (ହଠାତ୍ ମୁହଁକୁ ଆମ୍ବିଳା କରି) ଗୋଟେ ବିପଦରେ ପଡ଼ିଯାଇଛି ଆଜ୍ଞା । ଖାସ୍ ଆପଣଙ୍କୁ ଦେଖା କରି ପରାମର୍ଶ ନେବାକୁ ସଅଳ ପଳେଇ ଆସିଛି ।

(ଗୌରାଙ୍ଗ ଗୋଟେ ପାନ ପୁଡ଼ିଆ, ଗୋଟେ ସିଗାରେଟ୍ ପ୍ୟାକେଟ୍ ଓ ଦିଆସିଲି ପେଷ୍କାରଙ୍କ ଟେବୁଲରେ ରଖି ଦିଅନ୍ତି ।)

ଦୀନବନ୍ଧୁ : (ହସି) ନବରଙ୍ଗ ପାଟଣା ଗୌରାଙ୍ଗ ପ୍ରଧାନ କେତେ କେତେ ଓକିଲ ହାକିମଙ୍କୁ ପାଣି ପେଇ ଦେଇଛି । ସେ ପୁଣି ମୋଠୁ ବୁଦ୍ଧି ମାଗିବାକୁ ଆସିଛି । ମୋର ତ ମୋଟେ ବିଶ୍ୱାସ ହେଉନି ।

ଗୌରାଙ୍ଗ : ଭଗବାନ ମୁଣ୍ଡରେ ଗାଧା ଚଢ଼କ ପକେଇ ଦେଇଛନ୍ତି ଆଜ୍ଞା, ମହା ବିପଦରେ ପଡ଼ିଯାଇଛି । ଟିକିଏ କାନ ଦେଲେ ସବୁକଥା ଖୋଲି କୁହନ୍ତି ।

(ଦୀନବନ୍ଧୁଙ୍କ କାନପାଖକୁ ମୁହଁ ନେଇ ଗୌରାଙ୍ଗ କିଛି କଥା କୁହେ । ଦୀନବନ୍ଧୁ ଗୌରାଙ୍ଗ ମୁହଁକୁ ବଡ଼ବଡ଼ ପ୍ରଶ୍ନବାଚୀ ଆଖିରେ ଚାହାନ୍ତି । ଗୌରାଙ୍ଗର ଆଖି ଯେମିତି ଲୁହରେ ଓଦା ହୋଇଯାଏ । ସେ କାନ୍ଦ କାନ୍ଦ ହୋଇ ଦୀନବନ୍ଧୁଙ୍କ ହାତକୁ ଧରି ପକାଏ ।)

ଦୀନବନ୍ଧୁ : ଠିକ୍ ଅଛି । ତୁମେ ଟିକେ ଅପେକ୍ଷା କର, ମୁଁ ସାହେବଙ୍କୁ ଆସିବା ପୂର୍ବରୁ କାଗଜ ପତ୍ର ଗୁଡ଼ାକ ଠିକ୍ କରିଦେଇ ଆସେ । କଥାବାର୍ତ୍ତା ହେଇ ଯାହା ହେଲେ କରିବା ।

ଗୌରାଙ୍ଗ : ଆଜ୍ଞା ।

ଦୀନବନ୍ଧୁ : ମୀନେକେତନ । ତୁ ଜଜ୍ ସାହେବଙ୍କ ଘର ଆଡ଼େ ଯାଇଥିଲୁ ?

'ମୀନ : ହଁ ସାର୍ । ହାକିମ ବାହାରୁଥିଲେ । ଠିକ୍ ସମୟରେ ଆସି ପହଞ୍ଚିଯିବେ ।

ଦୀନବନ୍ଧୁ : ଆଚ୍ଛା ତୁ ଗଲୁ ମୋ ପାଇଁ ଚା ଟା ନେଇ ଆସିବୁ । ସାହେବ ପହଞ୍ଚିଗଲେ ଖାଇହେବନି ।

(ମୀନ ବାହାରକୁ ଚାଲିଯାଏ । ତାକୁ ଗୌରାଙ୍ଗ ଚା' ଆଣିବାକୁ ଟଙ୍କା ଦିଏ । ଦୀନବନ୍ଧୁ କୋର୍ଟ ହଲ ସଂଲଗ୍ନ ଅନ୍ୟ ଏକ କୋଠରୀକୁ ଚାଲିଯାଆନ୍ତି ।)

ଫକୀର : ପେଷକାର ବାବୁଙ୍କ କଥାରୁ ଜଣାଯାଉଛି କାମଟା ହେବ । ନ ହେବ ବା କେମିତି । ମା ସମଲେଇଙ୍କ ପାଖରେ ପରା ଅଖଣ୍ଡ ଦୀପ ଜଳା ହେଇଛି । ଦେଖିବୁ ଆଜି....

(କାଶ ଆରମ୍ଭ ହେଇଛି)

ଗୌରାଙ୍ଗ : ଦେଖ ଫକୀର ଦାଦା ମୁଁ ଯେମିତି ବତେଇଛି ସେମିତି କହିବ । ତୁମ କଥା

ଉପରେ ସବୁ ନିର୍ଭର କରୁଛି ।

ଫକୀର : ତୁ ଦେଖିବୁନି ମୁଁ କେମିତି କହିବି । ମୋ ପାଇଁ ବିଡ଼ି କଠାଟେ ଆଣିବାକୁ କହିଥିଲି, ଆଣିଛୁ ତ ?

ଗୌରାଙ୍ଗ : ଶ୍ୱାସ ରୋଗ ଯୋଗୁଁ ଘଡ଼ିକି ଘଡ଼ି କାଶ କରୁଛି ଉଠୁଛି । ସେଥିରେ ତୁମେ ବିଡ଼ି ପିଇବ ? କଚେରୀ ଭିତରେ ମାଦକ ଦ୍ରବ୍ୟ ବ୍ୟବହାର ପରା ମନା ।

ଫକୀର : କ'ଣ କରିବି ବିଡ଼ି ନ ଟାଣିଲେ ମୁଣ୍ଡ କାମ କରିବନି । ଯୋଉ କାମ ପାଇଁ ଆସିଛେ ସବୁ ଭଣ୍ଡୁର ହେଇଯିବ । ଦେ, ମୁଁ ଯାଇ ବାହାରେ ଟାଣି ଦେଇ ଆସେ ।(କାଶିଛି)

ଗୌରାଙ୍ଗ : ଓଃ । ଦେଖୁଛି ବିଡ଼ି ନ ଟାଣିଲେ ତୁମ ଜୀବନ ଯେମିତି ଚାଲିଯିବ । ଏଇ ନିଅ (ବିଡ଼ି ଓ ଦିଆସିଲି ଦେଇ) ସେଇ ବାହାରେ ଟାଣି ଦେଇ ଚଞ୍ଚଳ ଅସିବ ।)

ଫକୀର : ତୁ ଦେଖିବୁନି । ସେ ପଟେ ଚଟ୍‌କରି ଟାଣିଦେଇ ଆସି ବାହାର ବାରଣ୍ଡାରେ ବସିଥିବି । ଡାକ ଦେଲେ ଭିତରକୁ ଆସିବି । (କାଶିକାଶି ବାହାରକୁ ଯାଏ ।)

ଗୌରାଙ୍ଗ : ସାମନା କଳରେ ମୁହଁ ଧୋଇକରି ଆସିଥିବ ଦାଦା, ଯେମିତି ମୁହଁରୁ ବିଡ଼ି ଗନ୍ଧ ନ ବାହାରେ । ହାକିମଙ୍କ ସାମନାରେ ସାକ୍ଷୀ ଦେବାକୁ ହେବ ପରା... ।

(ପାଖ କୋଠରୀକୁ ପେଷକାର ଦୀନବନ୍ଧୁ ବାବୁ ବାହାରି ଆସନ୍ତି ।)

ଦୀନବନ୍ଧୁ : ଏଥର ତୁମକଥା କହିଲ ପଧାନେ । ଜଜ୍ ସାହେବ ଆସିବା ପୂର୍ବରୁ ଘଟଣାଟା କ'ଣ ଶୁଣିଯାଏ ।

ଗୌରାଙ୍ଗ : ଆଜ୍ଞା କହିଲେ କୁଳ କୁଟୁମ୍ବଙ୍କୁ ଲାଜ, ନ କହିଲେ କୁଳ ଭାସିଯାଉଛି । ଏମିତି ହରଡ଼ ଘଣାରେ ପଡ଼ିଛି ଯେ ଗାଁରେ ଆଉ ମୁଣ୍ଡ ଟେକି ଚାଲିହଉନି ।

(ଗୌରାଙ୍ଗ ପକେଟରୁ ଗୋଟିଏ କାଗଜ ବାହାର କରି ଦୀନବନ୍ଧୁଙ୍କୁ ଦିଅନ୍ତି, ଦୀନବନ୍ଧୁ ତାକୁ ପଢ଼ନ୍ତି ।)

ଦୀନବନ୍ଧୁ : ଏ କଥା କ'ଣ ସତ ?

ଗୌରାଙ୍ଗ : ବାପା ହେଇ ନିଜ ଝିଅ ନାଁରେ କିଏ କ'ଣ ମିଛ କହିପାରେ ଆଜ୍ଞା । ସାତ ଦିନ ହେଲା ପଦ୍ମା ବୋଉ ମୁହଁରେ ଟିକିଏ ପାଣି ବି ଦେଇନି । ତିନି ତିନିଟା ଛୁଆ ତା ମୁହଁକୁ ଚାହିଁ ଭେଲେକା ହେଇ ବସିଯାଇଛନ୍ତି ।(ଆଖିରେ ଲୁହ ଜମିଯାଏ)

ଦୀନବନ୍ଧୁ : ମୋ ପାଖରୁ ତୁମେ କି ପ୍ରକାର ସାହାଯ୍ୟ ଚାହୁଁଛ ?

ଗୌରାଙ୍ଗ : କ'ଣ କଲେ ମୁଁ ମୋ ଝିଅକୁ ଫେରିପାଇବି ମୋତେ ଟିକିଏ ସେଇ ବାଟ ବତେଇ ଦିଅନ୍ତୁ ।

ଦୀନବନ୍ଧୁ : ଆଛା ଏ କାଗଜରେ ଯାହା ଲେଖିଛ ତାକୁ ପ୍ରମାଣ କରିପାରିବ ?

ଗୌରାଙ୍ଗ : ମୋ ଫକୀର ଦାଦା ସବୁକଥା ଆଖିରେ ଦେଖିଛନ୍ତି । ତାଙ୍କୁ ସାଙ୍ଗରେ ନେଇ ଆସିଛି । ସେ ସାକ୍ଷୀ ହେଇ ସବୁ କହିବେ । ତାଙ୍କୁ ଡାକିବି ?

ଦୀନବନ୍ଧୁ : ଏବେ ଦରକାର ନାହିଁ । ଜଜ୍ ସାହେବ ଆସିବାର ସମୟ ହେଇଗଲାଣି । ସେ ଆସିଲେ ତାଙ୍କୁ ଏ କାଗଜଟା ଦେଇ ସବୁ କଥା କହିବ ।

ଗୌରାଙ୍ଗ : ମୁଁ ତ କହିବାକୁ ଆସିଛି କହିବି ହେଲେ ଆପଣ ମୋ ପାଇଁ ଟିକିଏ କୁହାବୋଲା ନ କଲେ ସେ କ'ଣ ମୋ କଥା ଶୁଣିବେ ?

ଦୀନବନ୍ଧୁ : ତୁମେ ଟିକିଏ ହାତଗୋଡ଼ ଧରି ନେହୁରା ହେଇ କହିବ, ତା ପରେ ମୁଁ ବାଗେଇ ଦେବିନି ।

ଗୌରାଙ୍ଗ : ମୁଁ ତା ହେଲେ ଏଠି ବସି ଯାଉଛି ?

ଦୀନବନ୍ଧୁ : ନା- ତୁମେ ଯାଇ ବଙ୍ଗ ବାହାରେ ଅପେକ୍ଷା କର, ମୋ ସହିତ କଥା ହୋଇଛ ବୋଲି ହାକିମ ନ ଜାଣିଲେ ଭଲ, ଯାଅ ..

(ଗୌରାଙ୍ଗ ବାହାରକୁ ଚାଲିଯାଏ । ମୀନକେତନ ଚା ଧରି ପ୍ରବେଶ କରେ ।)

ମୀନ : ଗୌରାଙ୍ଗ ପତଧାନର କ'ଣ ହେଇଛି କି ଆଜ୍ଞା, ସକାଳୁ ସକାଳୁ କଚେରୀ ଆଡ଼େ ଧପାଳିଛି... ।

ଦୀନବନ୍ଧୁ : ଆରେ ବିଚରା ବଡ଼ ବିପଦରେ ପଡ଼ିଯାଇଛି । ତା ଯୁବତୀ ଝିଅକୁ କିଏ ଗୋଟେ ବଜ୍ଜାତ ଟୋକା ଉଠେଇ ନେଇଛି ।

ମୀନ : କ'ଣ କହୁଛନ୍ତି ଆଜ୍ଞା । ହୁଁ ଗାଁ ଗଣ୍ଡାରେ ଆଜିକାଲିର ଏ ଟୋକାଗୁଡ଼ାକ ଯେମିତି ହେଲେଣି କୋଉ ଝିଅବୋହୂ ଆଉ ମୁଣ୍ଡଟେକି ଚାଲିପାରୁ ନାହାନ୍ତି ।

(ବାହାରେ ଗୋଟିଏ ଗାଡ଼ି ଆସି ରହିବାର ଶବ୍ଦ ଓ ତାପରେ ହର୍ଣ୍ଣ ଶବ୍ଦ ।)

ଦୀନବନ୍ଧୁ : ଦେଇ ଜଜ୍ ସାହେବ ଆସିଗଲେଣି । ଯା' ଗାଡ଼ିରୁ ଫାଇଲ୍ ଗୁଡ଼ାକ ନେଇ ଆସିବୁ ।

(ମୀନକେତନ ବାହାରକୁ ଚାଲିଯାଏ । ପରେ ପରେ ଜଜ୍ ବିଭୁତି ଭୂଷଣ ଓ ତାଙ୍କ ପଛେ ପଛେ ଫାଇଲ୍ ଧରି ମୀନକେତନ, ପ୍ରବେଶ କରନ୍ତି । ଜଜ୍ ଯାଇ ତାଙ୍କ ଚୌକିରେ ବସନ୍ତି । ଦୀନବନ୍ଧୁ ଠିଆହେଇ ନମସ୍କାର କରନ୍ତି ।)

ବିଭୂତି : ଆଜି କେତେ ଖଣ୍ଡେ କେସ୍ ଅଛି ଦୀନବନ୍ଧୁ ?

ଦୀନବନ୍ଧୁ : ଆଜି ତାରିଖକୁ କୌଣସି କେସ୍ ପୋଷ୍ଟିଂ କରାଯାଇନି ସାର୍ । ଏହି ପାଞ୍ଚଟା କେସ୍‌ର ଶୁଣାଣି ଶେଷ ହେଇଯାଇଛି । ଏ ଗୁଡ଼ାକର ଜଜ୍‌ମେଣ୍ଟ୍ ଲେଖିବାକୁହବ ।

ବିଭୂତି : ଠିକ୍ କଥା । ଆଜି ଯେମିତି ହେଲେ ବାକିଆ କାମ ଗୁଡ଼ାକ ଶେଷ କରିବାକୁ ହେବ । ହେଲେ ଏ କାମ ଏଠି କୋର୍ଟ ରୁମ୍‌ରେ କରି ହେବନି ।

ଦୀନବନ୍ଧୁ : ତା ହେଲେ ଫାଇଲ୍ ଗୁଡ଼ାକ ଚେମ୍ବରକୁ ନେଇଯାଉଛି ସାର୍ ।

ବିଭୂତି : ହଁ ସେ ଚେମ୍ବର ଭିତରେ ବସି କାମ କଲେ କେହି ଆଉ ଡିଷ୍ଟର୍ବ କରିପାରିବେନି । (ମୀନକେତନ ଫାଇଲ୍ ନେଇ କୋର୍ଟରୁମ୍ ସଲଗ୍ନ ଜଜ୍‌ଙ୍କ ଚେମ୍ବରକୁ ଚାଲିଯାଏ । ଜଜ୍ ଡାୟାସ୍ ଉପରୁ ଉଠି ନିଜ ଚାମ୍ବରକୁ ଯିବାବେଳେ ଦରଜା ପାଖରେ ଗୌରାଙ୍ଗ ଆସି ଠିଆ ହୁଏ । ଦୀନବନ୍ଧୁ ଗୌରାଙ୍ଗଙ୍କୁ ଜଜ୍‌ଙ୍କୁ ସାକ୍ଷାତ କରିବାକୁ ଇଶାରା ଦିଅନ୍ତି । ଗୌରାଙ୍ଗ ଜଜ୍‌ଙ୍କ ସମ୍ମୁଖରେ ହାତଯୋଡ଼ି ବଡ଼ ବିନୟ ଭାବରେ ଠିଆ ହୁଏ ।)

ବିଭୂତି : କ'ଣ ହେଲା ?

ଗୌରାଙ୍ଗ : ହଜୁର ଧର୍ମାବତର । ମା ବାପା । ମୋତେ ରକ୍ଷା କରନ୍ତୁ ।
(କାନ୍ଦ କାନ୍ଦ ହେଇ ଗୋଡ଼ଧରି ନେଇଛି)

ବିଭୂତି : କ'ଣ ହେଇଛି ତୁମର ? ଆରେ ଗୋଡ଼ ଛାଡ଼ । ସେଠି ଠିଆ ହେଇ କୁହ ।
(ଗୌରାଙ୍ଗ ଠିଆ ହେଉଛି)

ଗୌରାଙ୍ଗ : ହଜୁର ଆମ ଗାଁର ଗୋଟେ ଟୋକା ମୋର ଯୁବତୀ ଝିଅକୁ ଉଠେଇ ନେଇଛି । ସାତ ଦିନ ହେଲା କିଛି ଖୋଜ ଖବର ନାହିଁ ।

ବିଭୂତି ଥାନାରେ ନଜଣାଇ ଏଠିକି କାହିଁକି ଆସିଛ ?

ଗୌରାଙ୍ଗ : ଥାନାରେ ଯାଇ ଜଣେଇଛି । ହେଲେ ସେମାନେ କିଛି ଶୁଣୁନାହାନ୍ତି । ଝିଅଟା ମଲା କି ବଂଚିଲା କିଛି ଜାଣିପାରୁନି ହଜୁର । ଥାନାବାଲା କିଛି ଶୁଣୁନାହାନ୍ତି ବୋଲି ଆପଣଙ୍କ ପାଖକୁ ଆସିଲି ।

ବିଭୂତି : ଥାନାବାଲା ଶୁଣିବେନି କାହିଁକି, ନିଶ୍ଚୟ ଶୁଣିବେ ।

ଗୌରାଙ୍ଗ : ଆମେ ମଫସଲି ଲୋକ ବୋଲି ଖାତିର କରୁନାହାନ୍ତି ହଜୁର, ଆପଣ ଚାହିଁଲେ ତାରିବେ ଆପଣ ଚାହିଁଲେ ମାରିବେ । ଆପଣ ଗରିବର ବାପା ମାଆ । (ପୁଣି ଗୋଡ଼ଧରିନିଏ ।)

ଦୀନବନ୍ଧୁ : ବଡ଼ ଗରିବ ଲୋକଟିଏ ସାର୍ ।

ବିଭୂତି : ଆପଣ ୟାଙ୍କୁ ଜାଣିଛନ୍ତି ? ଆରେ ହେ ଉଠି ଠିଆହୁଅ ।

ଦୀନବନ୍ଧୁ : ଏମିତି କେସ୍ ଇତ୍ୟାଦିରେ ଆସି ଚିହ୍ନ ଜଣା ହେଇଛି । ବିଚରାକୁ ଟିକେ ଦୟା କରନ୍ତୁ । (ଗୌରାଙ୍ଗ ଉଠି ଦରଖାସ୍ତ କାଗଜଟି ଜଜ୍‌ଙ୍କୁ ଦିଏ ।)

ବିଭୂତି : (ପଢ଼ି) ଠିକ୍ ଅଛି, ତୁମେ ଏ କାଗଜରେ ଯାହା ଲେଖିଛି, ତାକୁ ମୁଁ ଗୋଟେ କଂପ୍ଲେନ୍ କେସ୍ ହିସାବରେ ଗ୍ରହଣ କରିବି । କିନ୍ତୁ ଶପଥ ପାଠ କରି ଏ ସବୁ ସତ ବୋଲି କହିବାକୁ ପଡ଼ିବ, ସାକ୍ଷୀ ମଧ୍ୟ ଦେବାକୁ ପଡ଼ିବ ।

ଗୌରାଙ୍ଗ : ଯାହା ଚାହିଁବେ ସବୁ କରିବି ହଜୁର । ହେଲେ ମୋ ଝିଅକୁ ଯେମିତି ମୁଁ ଫେରିପାଏ ।

ବିଭୂତି : ଠିକ୍ ଅଛି ତୁମେ ଯାଇ ସେ କାଠଗଡ଼ାରେ ଠିଆ ହୁଅ । ଆଉ ଯାହା କହିବା କଥା ସେଇ କାଠଗଡ଼ା ଭିତରେ ଠିଆ ହୋଇ କୁହ ।

ଗୌରାଙ୍ଗ : ଯାଉଛି ହଜୁର ।

(ଗୌରାଙ୍ଗ କାଠଗଡ଼ାକୁ ଯାଇଛି । ମୀନ ଗୀତା ନେଇ ଶପଥ ପାଠ କରାଇଛି ।)

ମୀନ : ଏ ଗୀତା ଉପରେ ହାତ ରଖି କୁହ ଯାହା କହିବି ସତ କହିବି ।

ଗୌରାଙ୍ଗ : ଯାହା କହିବି ସତ କହିବି । ସତ ଛଡ଼ା ମିଛ କହିବିନି ।

(ମୀନ ଗୀତାଟି ନେଇ ପେଷକାରଙ୍କ ଟେବୁଲ ଉପରେ ରଖିଦିଏ ।)

ବିଭୂତି : ଆଛା ଗୌରାଙ୍ଗ ପଧାନ ଏଇ କାଗଜରେ ଯାହା ତୁମେ ଲେଖିଛ ସେ ସବୁ ଗୋଟି ଗୋଟି କରି କୁହ । ମୁଁ ତୁମ ଷ୍ଟେଟ୍‌ମେଣ୍ଟ୍ ରେକର୍ଡ କରିବି ।

ଗୌରାଙ୍ଗ : କହୁଛି ହଜୁର୍ ।

ପେଷ୍‌କାର : ପ୍ରଥମେ ନିଜ ନାଁ, ବାପା ନାଁ, ବୟସ ଇତ୍ୟାଦି କହି ଯାହା ଯାହା ହେଇଛି କହିବ ।

ଗୌରାଙ୍ଗ : ଆଜ୍ଞା ମୋ ନାଁ ଗୌରାଙ୍ଗ ପଧାନ, ପିତା ଅଇଁଠା ପଧାନ, ମୁକାମ-ନବରଙ୍ଗପାଟଣା, ଇଲାକା - ଉପର ଦେଶବିଷ, ବୟସ-୫୧ ବର୍ଷ, ପେଷା-ଚାଷ ଇତ୍ୟାଦି । ହଜୁର ଗତ ଶୁକ୍ରବାର ଦିନ ଆମ ଗାଁ ହରିବନ୍ଧୁ ବିଶ୍ୱାଳର ପୁଅ ଶ୍ରୀକାନ୍ତ ବିଶ୍ୱାଳ, ମୋ ଝିଅ ପଦ୍ମାକୁ ଉଠେଇ ନେଇଛି । ଘରେ ମୋ ସ୍ତ୍ରୀ ଖିଆ ପିଆ ଛାଡ଼ି ପାଗଳୀ ଭଳି ବସିରହିଛି । ପାଣି ଟିକିଏ ବି ଛୁଇଁନି ।

(କଣ୍ଠ ତା'ର ରୁଦ୍ଧ ହେଇଯାଇଛି ।)

ବିଭୂତି : ଓଃ ତୁମ ସ୍ତ୍ରୀ ପାଣି ଛୁଇଁନି, ଏ କଥା କ'ଣ କାଗଜରେ ଲେଖିଛି ?

ଗୌରାଙ୍ଗ : ନାଇଁ ଆଜ୍ଞା ।

ବିଭୂତି : ତା ହେଲେ ସେ ସବୁ କହିବାର କ'ଣ ଦରକାର ଅଛି । ଶ୍ରୀକାନ୍ତ ବିଶ୍ୱାଳ ତୁମ ଝିଅକୁ ନେଇଯାଇଛି ବୋଲି ତୁମେ କେମିତି ଜାଣିଲ କୁହ ?

ଗୌରାଙ୍ଗ : ହଜୁର, ଗତ ଶୁକ୍ରବାର ଦିନ ଗୋଟେ ଜରୁରୀ କାମ ନେଇ ମୁଁ କଟକ ଯାଇଥିଲି ।

ଦ୍ୱିପହର ଖିଆପିଆ ସାରି ମୋ ସ୍ତ୍ରୀ ପଡ଼ିଶା ଘରକୁ ବୁଲିବାକୁ ଯାଇଥିଲା । ଆମେ ଦି ପ୍ରାଣୀ ଘରେ ନ ଥିବା ଅବସ୍ଥାରେ ସେ ଟୋକା ଆସି ମୋ ଝିଅକୁ ଜବରଦସ୍ତ ଉଠେଇ ନେଲା । ରାତି ୧୦ଟା ବେଳକୁ ମୁଁ କଟକରୁ ଫେରିଲି । ଏ କଥା ଶୁଣୁ ଶୁଣୁ ମୋ ଚେତା ବୁଡ଼ିଗଲା ହଜୁର । ତା' ପରେ ଚେତା ଫେରିବାରୁ ଯାଇ ଥାନାକୁ ଗଲି । (ସକେଇ ହୋଇ କାନ୍ଦନ୍ତି ।)

ବିଭୂତି : ରୁହ । ତୁମ ଝିଅକୁ ଶ୍ରୀକାନ୍ତ ନେଇଛି ବୋଲି କେମିତି ଜାଣିଲ ?

ଗୌରାଙ୍ଗ : ମୋ ଫକୀର ଦାଦା ସାକ୍ଷୀ ଅଛନ୍ତି ଆଜ୍ଞା । ଫକୀର ଦାଦା ଏଠି ହାକିମଙ୍କ ସାମ୍ନାକୁ ଆସ ।

(ଫକୀର ଉଠି ଠିଆ ହୋଇ କାଶେ ।)

ବିଭୂତି : ସେ ପରେ ଆସିବେ । ତୁମେ ତୁମ ଝିଅର ନାଁ ବୟସ ଆଦି କୁହ ।

ଗୌରାଙ୍ଗ : ହଜୁର କୁମାରୀ ପଦ୍ମା ପ୍ରଧାନ । ବୟସ ଷୋଳକ କି ସତର ଖଣ୍ଡେ ହେବ ।

ବିଭୂତି : ଷୋଳ, ସତର, ଅଠର, ଉଣେଇଶି କେତେ ହେବ ଠିକ୍ କରି କୁହ । ଏଇ ବୟସ ଉପରେ ଏ କେସ୍ କେତେ ଦୂର ବିଚାରଯୋଗ୍ୟ ଠିକ୍ କରାଯିବ । ତୁମ ଝିଅ ପଦ୍ମାକୁ ୧୮ ବର୍ଷରୁ ବେଶୀ ନା କମ୍ ?

ଗୌରାଙ୍ଗ : ସେ ନା-ବାଳିକା ଝିଅ । ୧୮ ବର୍ଷରୁ କୁଆଡ଼େ ହବ ହଜୁର ।

ବିଭୂତି : ସେ ନା-ବାଳିକା କି ସା-ବାଳିକା ସେ କଥା କୋର୍ଟ ଠିକ୍ କରିବ । ତା' ବୟସ ଠିକ୍ କେତେ ମନେ ପକେଇ କୁହ ।

ଗୌରାଙ୍ଗ : ରୁହନ୍ତୁ । ରୁହନ୍ତୁ ହଜୁର । ଟିକିଏ ହିସାବ କରି କହୁଛି । (ଗୌରାଙ୍ଗ ହାତ ଆଙ୍ଗୁଠିରେ ହିସାବ କରିବାକୁ ଲାଗେ ।) ଷୋଳବର୍ଷ ତିନିମାସ ହଜୁର ।

ବିଭୂତି : ଠିକ୍ ଷୋଳବର୍ଷ ତିନି ମାସ ବୋଲି କେମିତି ଜାଣିଲ ?

ଗୌରାଙ୍ଗ : ଦିଇଟା ପୁଅ ପରେ ଏଇଟି ମୋ ପ୍ରଥମ ଝିଅ ହଜୁର । ବହୁତ ଖୋଜା ଲୋଡ଼ା ପରେ ମିଳିଛି । ମୋ ସାନ ପୁଅଠୁ ପଦ୍ମା ଦେଢ଼ବର୍ଷ ସାନ । ସାନପୁଅକୁ ଆସନ୍ତା ମାଘ ପୂର୍ଣ୍ଣିମାକୁ ଅଠର ବର୍ଷ ପୁରିବ । ମାଘ ଆଉ ଚାରିମାସ ବାକି ଅଛି, ତେଣୁ... ।

ବିଭୂତି : ଥାଉ । ତୁମ ଝିଅକୁ ବର୍ତ୍ତମାନ ଷୋଳବର୍ଷ ତିନିମାସ ବୋଲି ଧରିନେଉଛି ।

ଗୌରାଙ୍ଗ : ଷୋଳ ଡେଇଁ ସତର ପୁରୁନି ବୋଲି ଲେଖିଦିଅନ୍ତୁ ।

ବିଭୂତି : ଏ ବିଷୟ ତୁମେ ଥାନାରେ ଜଣାଇଛ ବୋଲି ଲେଖିଛ ? ଥାନାବାଲା କ'ଣ କହିଲେ ?

ଗୌରାଙ୍ଗ : ହଜୁର ଶୁକ୍ରବାର ଦିନ ଏ ଘଟଣା ପରେ ଶନିବାର ଦିନ ଥାନାକୁ ଗଲି । ଗଲା ବେଳକୁ ଦେଖିଲି ଜଣେ ହାବିଲଦାର ଛଡ଼ା ଥାନାରେ କେହି ନାହାନ୍ତି । ସେ ଟୁଲ ଉପରେ ବସି ଘୁମଉ ଥିଲେ । ସମସ୍ତେ କୋଉ ମନ୍ତ୍ରୀଙ୍କ ଡିଉଟିରେ ଯାଇଥିଲେ । ବୁଢ଼ା ହାବିଳଦାରକୁ ଯେତେ କହିଲି ଶୁଣିଲାନି । କହିଲା ଆଜି କିଛି ଶୁଣାଯିବନି - ଯାଆ କାଲି ଆସିବୁ । ତା' ପରଦିନ ଗଲି ଆଜ୍ଞା । ଠିକ୍ ସେଇ ଅବସ୍ଥା । ହାବିଳଦାର କହିଲା ଘନଘନ ମନ୍ତ୍ରୀଙ୍କ ପ୍ରୋଗ୍ରାମ, ଷ୍ଟାଫ୍ କମ୍, ଯା ନିଜ ଝିଅକୁ ନିଜେ ଖୋଜି ବାହାର କର । (ପୁଣି ସକେଇ ହେବାକୁ ଲାଗେ ।)

ବିଭୂତି ହଉ, ତୁମେ ଯାଅ ତୁମ ସାକ୍ଷୀକୁ ଡାକ । ହଁ ତୁମ ସାକ୍ଷୀର ନାମ କ'ଣ ? (ଗୌରାଙ୍ଗ ଉଇଟ୍‌ନେସ୍ ବକ୍ସରୁ ବାହାରିଯାଏ ।)

ଗୌରାଙ୍ଗ : ଫକୀର ଦାସ ହଜୁର ।

ମୀନ ଫକୀର ଦାସ ହାଜର ହୋ... (୩ ଥର)

(ଫକୀର ଦାସ କାନ୍ଧରେ ପକେଇଥିବା ଗାମୁଛାକୁ ବେକ ପଛରେ ପକେଇ ଜଜ୍‌ଙ୍କ ଟେବୁଲ ସାମ୍‌ନାରେ ତଳେ ବସି ମୁଣ୍ଡିଆ ମାରେ ।)

ଦୀନବନ୍ଧୁ : ସେଠି କାଠଗଡ଼ା ଭିତରକୁ ଯାଅ ।

ଫକୀର ହଜୁର ଯାଉଛି । (ତା'ର ପେଲା ରୋଗ ଅଧିକ ବଢ଼ିଯାଏ । ସେ କାଠଗଡ଼ା ଭିତରକୁ ଯାଏ, ମୀନକେତନ ଗୀତା ଧରି ଶପଥ ପାଠ କରାଏ ।)

ମୀନ : ଏଇ ଗୀତାକୁ ଛୁଇଁ କୁହ ଯାହା କହିବି ସତ କହିବି ।

ଫକୀର : (କାଶିଛି, ପରେ କହିଛି) ଯାହା କହିବି ସତ କଥା କହିବି, ଯାହା ଦେଖିଛି ଏ ଦୁଇ ନୟନେ ସବୁ ପ୍ରକାଶିବି ନିଜ ବଚନେ ।

ଦୀନବନ୍ଧୁ : ଫକୀର ତୁମ ନାଁ ? ଗାଁ ନା ଇତ୍ୟାଦି କୁହ ।

ଫକୀର : ହଜୁର ନାଁ ମୋର ଫକଡ଼ ଦାସ ଓରଫ ଧଇଁଆ ଦାସ କହିଲେ ସମସ୍ତେ ଚିହ୍ନିବେ ।

ଦନୀବନ୍ଧୁ : ଫକଡ଼ ଦାସ... ? ଏଇଟା ତୁମ ନାଁ ?

ଫକୀର : ହଜୁର ମୁଁ ଜନ୍ମ ହେଲା ବେଳକୁ ଏମିତି କେଞ୍ଚେଉଟେ ଭଳି ଆଙ୍କୁଳିଟେ ହେଇଥିଲି । ମୋତେ ବଞ୍ଚାଇବା ପାଇଁ ମୋ ବା'କୁ ଆମ ବାହାଳ କିଆରୀଟାକୁ ବିକ୍ରି କରିବାକୁ ପଡ଼ିଥିଲା । ଏତେ ଓଷୁଅ ପତ୍ର କରିକରି ମୋ ବାପା ଫକଡ ହେଇଗଲା । ମୋ ବାପାକୁ ବହୁ ଖର୍ଚ୍ଚାନ୍ତ କରିଥିବାରୁ ମୋତେ ସମସ୍ତେ ଫକଡ଼ ଫକଡ଼ ବୋଲି

ଡାକିଲେ । ଚାଟଶାଳୀ ଅବଧାନେ ମୋ ନାଁ ଫକିର ବୋଲି ଲେଖିଦେଲେ ।

ଦୀନବନ୍ଧୁ : ବୟସ ?

ଫକୀର : ଫକୀର ଦାସ, ପିତା– ଛକଡ଼ି ଦାସ । ଗୌରାଙ୍ଗର ଗାଁ ନବରଙ୍ଗ ପାଟଣାରେ ମୋର ଘର । ଉମର ଷାଠିଏ ଡେଇଁବ ପଛେ ଏ ପାଖକୁ ଆସିବନି । ଲୁଣମରା ଆନ୍ଦୋଳନ ବେଳକୁ ମୋତେ ସାତ ଆଠ ବର୍ଷ ହେଇଥିଲା ।

ବିଭୂତି : ଠିକ୍ ଅଛି । ତୁମେ ଗୌରାଙ୍ଗ ପ୍ରଧାନକୁ ଜାଣ ?

ଫକୀର : ଜାଣେ ? ଲଙ୍ଗଳା ବୟସରୁ ଜାଣିଛି ହଜୁର । ତା ଘରକୁ ମୋ ଘର ଲାଗିଛି । ସକାଳ ହେଲା ମାତ୍ରେ ମୁହଁ ଚାହାଁ ଚୁହିଁ । ତା' ସ୍ତ୍ରୀ ତା' ଘରେ ଛୁଙ୍କ ଦେଲେ ମୋ ଘରେ ଛିଙ୍କ ହୁଏ ହଜୁର । (କାଶିଛି)

ବିଭୂତି : ଅର୍ଡର ଅର୍ଡର୍ । ଗୌରାଙ୍ଗ ପ୍ରଧାନ ଝିଅ ପଦ୍ମାଙ୍କୁ ଜାଣିଛ ?

ଫକୀର : ବଢ଼ିଆ ଝିଅଟିଏ ହଜୁର । ରୂପ ହେଉଛି ଗୋଟିଏ ଚାଉଳରେ ଗଢ଼ା । ପଙ୍କ ଗାଡ଼ିଆରେ ପଦ୍ମ ଫୁଟିଛି । ହେଲେ.... ଗଉରା କପାଳ ଟିକିଏ ମନ୍ଦ... । ଝିଅଟି ଟିକିଏ ଭେଳିକି...  । (କାଶିଛି)

ବିଭୂତି : ଭେଳିକି ମାନେ ?

ଫକୀର : ହଜୁର ମୁଣ୍ଡରେ ବୁଦ୍ଧି ଘରଟା ଶୂନ, ତାକୁ ଠକି ଦେବା ସହଜ । ସେଥିପାଇଁ ମୁଷ୍ଟୁଳିଆ ଶ୍ରୀକାନ୍ତ ତାକୁ ଉଠେଇ ନେଇ ଯାଇଛି ।

ବିଭୂତି : ମୁଷ୍ଟୁଳିଆ ଶ୍ରୀକାନ୍ତ ?

ଫକୀର : ଶ୍ରୀକାନ୍ତ ବିଶ୍ୱାଳ ହଜୁର, ଆମ ଗାଁର ଦାଦା । ନିଇତି ଦଣ୍ଡ ବଇଠକ ମାରି ବାହାଟା ମାନ ଏଡ଼େ ଏଡ଼େ କରିଛି । ଆମ ଗାଁରେ କ'ଣ ହଜୁର, ଆମ ଅଞ୍ଚଳରେ ତା ଆଗରେ କିଏ ପାଟି ଫିଟେଇଲେ ଗୋଟେ ଗୋଟେ ମୁଥରେ ତା ସାମ୍ନା ଦାନ୍ତ ସବୁ ଝଡ଼େଇ ଦେବ । ଗୌରାଙ୍ଗ ଝିଅ ପଦ୍ମାକୁ ସେ ହିଁ ନେଇଯାଇଛି । ଲୋକେ କହୁଛନ୍ତି କୁଆଡ଼େ ବହୁତ ପଇସା ପାଇବ ।

ବିଭୂତି : ପଇସା ପାଇବ ମାନେ ? ତାକୁ ନେଇ କ'ଣ ବିକିଦେବ ?

ଫକୀର : ଝିଅଟାକୁ ଗୋଟା ହୋଲ ସେଲ୍ ବିକିଦେଲେ କେତେ ପଇସା ମିଳିବ ହଜୁର ? ପାର୍ଟ ପାର୍ଟ କରି ଖୁଚୁରା ବିକିଲେ ଟଙ୍କା ବୋହି ପାରିବନି ।

ବିଭୂତି : ମାନେ ?

ଫକୀର : ଲୋକେ କହୁଛନ୍ତି, ଆଗେ ଆଖି ଦିଇଟାକୁ ଡାଡ଼ି ଡବାରେ ସିଲ୍ କରି ବିକିଦେବ । ତା'ପରେ କଲିଜାଟାକୁ ବିକି ଦବ । ତା ପରେ ତା ଗୁରୁଦାଟା କୁଆଡ଼େ କଲିଜାଠୁ

ଦାମ ବହୁତ, ପୁଣି ଫପ୍‌ସା ଅଛି ।

ବିଭୂତି : ଗୁରୁଦା, ଫପ୍‌ସା ଏ ସବୁ କ'ଣ ?

ଦୀନବନ୍ଧୁ : (ବୁଝେଇ) ଗୁରୁଦା ଆଜ୍ଞା କିଡ଼ିନୀ- ବୃକକ୍ । ଗାଁ ଗହଳିରେ ତାକୁ ଗୁରୁଦା କହନ୍ତି, ଆଇ ଫପ୍‌ସା ହେଉଛି କ'ଣ ତ.... ।

ଫକୀର : ହଜୁର ଆମ ଛାତି ଭିତରେ କମାର ଭାଟି ଭଳିଆ ଯୋଉଟା ଫୁଲେ ପୁଣି ବନ୍ଦ ହେଇଯାଏ । ପଦ୍ମଫୁଲ ଭଳିଆ ରଙ୍ଗ ହଜୁର ।

ଦୀନବନ୍ଧୁ : ହୃତ୍‌ପିଣ୍ଡ..... ମାନେ ହାର୍ଟ ହଜୁର ।

ଫକୀର : ହଁ ହଁ ସେଇ ହାର୍ଟଟା ହଜୁର । କଲିକତାରେ କହୁଛନ୍ତି ତା'ର ଗୋଟେ ଚୋରା ମାର୍‌କେଟ୍ ଅଛି । ଝିଅଟାକୁ ନେଇ... ।

(ଫକୀର କଣ୍ଠ ଯେମିତି ଦୁଃଖରେ ରୁଦ୍ଧ ହେଇଯାଇଛି । ଗୌରାଙ୍ଗ ବେଞ୍ଚ ଉପରେ ସକେଇ କାନ୍ଦିଛି ।)

ବିଭୂତି : ଅର୍ଡର । ଅର୍ଡର୍ । ଆଚ୍ଛା ଶ୍ରୀକାନ୍ତ ଗୌରାଙ୍ଗର ଝିଅକୁ ନେଇଯିବା କଥା ତୁମେ ଦେଖିଛ ?

ଫକୀର : ମୋରି ସାମ୍‌ନାରେ ନେଇଗଲା ହଜୁର । ବଦ୍‌ମାସଟା ଆମ ଗାଁର ଝିଅ ବୋହୂଙ୍କୁ ଗଖେଇ ଦେଉନି । ପୁଅଙ୍କୁ ଦିଅନ୍ତୁ ଠୁକି ଯେ ଯେମିତି ଦଶ ବର୍ଷ ଯାଏ ଘଣା ପେଲୁଥିବ ।

ବିଭୂତି : ସେ କଥା ପରେ ବିଚାର ହବ । ସେ କେମିତି ଆସି ପଦ୍ମାକୁ ନେଇଗଲା କୁହ ।

ଫକୀର : ହଜୁର- ମନ୍ତୁରା ଫୁଲଟେ ଧରିଥିଲା ନା କ'ଣ, ଯେମିତି ସେଟାକୁ ଶୁଙ୍ଘେଇ ଦେଇଛି, ବାସ୍ କଥା ଶେଷ । ଟୋକାଟାକୁ ମନ୍ତ୍ର ତନ୍ତ୍ର ଗୁଣି ଗାରେଡ଼ି ସବୁ କଥା ଜଣା ଅଛି । ନବରଙ୍ଗ ପାଟଣା ଗାଁ ନାଁ ପଦାରେ ପକାଉଛି ।

ବିଭୂତି : (ବିରକ୍ତି ପ୍ରକାଶ କରି) ସେ ସବୁ ବାଜେ ଗପ ଛାଡ଼ି ଯାହା ସବୁ ଦେଖିଛ କୁହ । ଶ୍ରୀକାନ୍ତ ଗୌରାଙ୍ଗ ପ୍ରଧାନ ଘରକୁ କେତେବେଳେ ଆସିଥିଲ । ତୁମେ ସେତେବେଳେ କେଉଁଠି ଥିଲ ? କ'ଣ ଦେଖିଛ ଗୋଟି ଗୋଟି କରି କୁହ ।

ଫକୀର : ଆଜ୍ଞା ଗତ ଶୁକ୍ରବାର ଦିନ- ମୁଁ ମୋ ଆମ୍ବ ତୋଟାକୁ ଯାଇଥିଲି । ଗୌରାଙ୍ଗ ଘରପଛକୁ ତା ଖଳାବାଡ଼ି । ତା ପାଖକୁ ଆମ ଗାଁର ଗହିରି ରାସ୍ତା । ରାସ୍ତା ପାଖକୁ ମୋ ଆମ୍ବତୋଟା । ମୁଁ ଆମ୍ବତୋଟାରେ କେତେ କ'ଣ ଆମ୍ବ ଆସିଛି ବୋଲି ଦେଖୁଛି, ଏଇ ସମୟରେ ଗୋଟେ ଧଳା ରଙ୍ଗର କାର୍ ଆସି ଗୌରାଙ୍ଗ ଘର ପଛ ପାଖେ ରହିଲା ।

ବିଭୂତି : ସେତେବେଳେ କେତେ ସମୟ ହେଇଥିଲା ?

ଫକୀର : ଉପରବେଳା ସମୟ ହଜୁର । ସୂର୍ଯ୍ୟ ବେଁ ଖଣ୍ଡେ ମୁଣ୍ଡ ଉପରକୁ ଖସିଯାଇଥିଲା କୁହନ୍ତୁ ।

ବିଭୂତି : ମାନେ ?

ଦୀନବନ୍ଧୁ : ସାର୍ ସେ କହିବା ଉଦ୍ଦେଶ୍ୟ ହଉଛି, ଅପରାହ୍ନ ଦିଟା ବା ତିନିଟା ସମୟ ହେବ ।

ଫକୀର : ହଁ ହଜୁର ସେୟା ହେବ । ହଠାତ୍ ଗୌରାଙ୍ଗ ଘର ପଛ ରାସ୍ତାରେ କାର ରହିବା ଦେଖି ଘଟଣା କ'ଣ ଜାଣିବାକୁ ଇଛା ହେଲା । ଦେଖିଲି ସେ କାର୍‌ରୁ ଶ୍ରୀକାନ୍ତ ବାହାରି ପଡ଼ିଲା ଆଉ ବାଡ଼ିପାଖ ବାଟ ଦେଇ ଗୌରାଙ୍ଗ ଘରକୁ ଗଲା । କିଛି ସମୟ ପରେ ଦେଖିଲି ପଦ୍ମା ଆଉ ଶ୍ରୀକାନ୍ତ ଘର ପଛ ଆଡ଼କୁ ଚାଲି ଆସିଲେ ଆଉ କ'ଣ ସବୁ କଥାବାର୍ତ୍ତା ହେଲେ ।

ବିଭୂତି : ତୁମେ ସେ କଥାବାର୍ତ୍ତା ଶୁଣିଛ ?

ଫକୀର : ନାଁ ହଜୁର - ମୁଁ ଯେତେ ଦୂରରେ ରହି ଦେଖୁଥିଲି, ସେଇଠି ରହି ଶୁଣି ହେଲାନି । କିନ୍ତୁ ଏତିକି ଜାଣି ହେଉଥିଲା ଶ୍ରୀକାନ୍ତ ଯେତେ ଯାହା କହୁଛି, ପଦ୍ମା ମୁଣ୍ଡ ହଲେଇ ନାହିଁ ନାହିଁ କରୁଛି ।

ବିଭୂତି : ତା'ପରେ କ'ଣ ହେଲା ?

ଫକୀର : କିଛି ନାହିଁ ହଜୁର । ଶ୍ରୀକାନ୍ତ କାର ପାଖକୁ ଚାଲି ଆସିଲା, ତା ପଛେ ପଛେ ଗୌରାଙ୍ଗ ଝିଅ ପଦ୍ମା ଆସି କାର୍‌ରେ ବସି ପଡ଼ିଲା ।

ବିଭୂତି : ଟିକିଏ ପୂର୍ବରୁ ତୁମେ କହୁଥିଲ ଯେ ଶ୍ରୀକାନ୍ତ ପଦ୍ମାକୁ ମନ୍ତୁରା ଫୁଲ ଶୁଙ୍ଘେଇ ଦେଲା । ଶ୍ରୀକାନ୍ତ ହାତରେ ଫୁଲ ତୁମେ ଦେଖିଛ ?

ଫକୀର : ନାଁ, ଫୁଲ ଦେଖିନି । ହେଲେ ମୋର ପୁରା ବିଶ୍ୱାସ ସେ ଟୋକା ସେୟା କରିଥିବ । ନ ହେଲେ ଝିଅଟା ତା ପଛେ ପଛେ ଚୁପ୍‌ଚାପ୍ ଯାଇ କାର୍ ଭିତରେ କେବେ ବସିନଥାନ୍ତା ।

ବିଭୂତି : ଏ ଘଟଣା ତୁମ ଛଡ଼ା ଅନ୍ୟ କେହି ଦେଖିଛନ୍ତି ?

ଫକୀର : କହିପାରିବିନି ହଜୁର । ହେଲେ ଯଦି କେହି ଦେଖିଥିବ ଶ୍ରୀକାନ୍ତ ଡରରେ କେହି କହିବେନି । ମୁଁ ଜୀବନକୁ ପାଣି ଛଡେଇ ଦେଇଛି ବୋଲି କହୁଛି ।

ବିଭୂତି : ଆଛା ଏ କଥା ଦେଖିଲା ପରେ ତୁମେ ପ୍ରଥମେ କାହାକୁ ଜଣେଇଲ ?

ଫକୀର : କାହାକୁ ଜଣେଇବି ହଜୁର ? ଭାବିଲି କ'ଣ କାମ ଥିବ ପାଖକୁ ଦି ଜଣଯାକ

କୁଆଡ଼େ ବୁଲିଯାଇଥିବେ, ତା ପରେ ରାତିରେ ଯେତେବେଳେ ଗୌରାଙ୍ଗ ଆଉ ତା ସ୍ତ୍ରୀ ଝିଅ ପଦ୍ମାକୁ ଖୋଜି ବୁଲିଲେ ସେତେବେଳେ ଯାଇ କହିଲି । (କାଶିଛି)

(ବିଭୂତି ଫାଇଲ୍‌ରେ ଲେଖି ଚାଲିଛନ୍ତି)

ଫକୀର : କଡ଼ା ହୁକୁମ ଦେଇ ଦିଅନ୍ତୁ ହଜୁର ଯେମିତି ପୁଅକୁ ଅଣ୍ଟାରେ ଦଉଡ଼ି ହାତରେ କଡ଼ି ଲଗେଇ ଧରି ଆଣିବେ ।

ବିଭୂତି : ଦୀନବନ୍ଧୁ ବାବୁ !

ଦୀନବନ୍ଧୁ : ସାର୍ !

ବିଭୂତି : ମୁଁ ଅର୍ଡର କରିଦେଇଛି । ଥାନାବାଲା ଶ୍ରୀକାନ୍ତକୁ ଖୋଜି କୋର୍ଟରେ ହାଜର କରିବେ । ଆପଣ ଅର୍ଡରଟା ଟାଇପ୍ କରି ମୋ ଚାମ୍ବରକୁ ଆଣନ୍ତୁ ।

(ବିଭୂତି ତାଙ୍କ ଚାମ୍ବରକୁ ଚାଲିଯାନ୍ତି । ଦୀନବନ୍ଧୁ ଫାଇଲ୍ ଆଣି ଦେଖନ୍ତି । ଗୌରାଙ୍ଗ ଓ ଫକୀର ତାଙ୍କ ପାଖକୁ ଆସନ୍ତି ।)

ଦୀନବନ୍ଧୁ : ହେଇଗଲା ପଧାନେ । ଏଥର ପୋଲିସ୍‌ବାଲା ଯିବେ କୁଆଡ଼େ ? ସେ ଟୋକାକୁ ନିଶ୍ଚେ ଖୋଜି ବାହାର କରିବେ ।

ଗୌରାଙ୍ଗ : ଆମ ପାଖରେ ଆଉ କ'ଣ କାମ ଅଛି ଆଜ୍ଞା । ଆମେ ଯିବୁ ନା ରହିବୁ ?

ଦୀନବନ୍ଧୁ : ଅଧ ଘଣ୍ଟେ ରହିଯାଅ । ମୁଁ ସେପଟୁ ଟାଇପ୍ କରି ଏ ଅର୍ଡରଟା ନେଇଆସେ । ମୀନକୁ ସାଙ୍ଗରେ ନେଇ ଥାନାରେ ହାତେ ହାତେ ଅର୍ଡର୍‌ଟା ଧରେଇ ଦେବ ଯେ ସୁବିଧା ହେବ ।

ଗୌରାଙ୍ଗ : ଆମେ ତା ହେଲେ ଏଇଠି ବସୁଛୁ ଆଜ୍ଞା ।

ଦୀନବନ୍ଧୁ : ହଁ ବସିଥା ମୁଁ ଆସୁଛି । ମୀନକେତନ ତୁ ଆସିଲୁ ମୋ ସାଙ୍ଗରେ ।

(ଦୀନବନ୍ଧୁ ଓ ମୀନକେତନ ଚାଲିଯାନ୍ତି ।)

ଫକୀର : (କାଶିବାକୁ ଲାଗିଛି) ଆମେ ଆଉ ଏଠି କାହିଁ ବସିବା ଗୌରାଙ୍ଗ ? ଚାଲ କ'ଣ ଦିଇଟା ଖାଇ ନଦେଲେ ଏ କାଶ ବନ୍ଦ ହେବନି ।

ଗୌରାଙ୍ଗ : ଏଇ ଘଣ୍ଟାକ ପୂର୍ବରୁ ପରା ହୋଟେଲରୁ ପେଟେ ମାଛ ଭାତ ଖାଇ ଆସିଥିଲେ, ପୁଣି ତୁମକୁ ଭୋକ ହେଲାଣି ?

ଫକୀର : ଶ୍ୱାସ ବେମାରୀ କଥା ତୁ କ'ଣ ବୁଝିବୁ ? ଯେତେ ଖାଇଲେ ବି ପାଟି ବାଟେ ପବନ ହେଇ ବାହାରିଯିବ, ତା ପରେ ସହଜେ ବୁଦ୍ଧି ଖଟେଇ ହାକିମ ସାମ୍‌ନାରେ ସାକ୍ଷୀ ଦେବାକୁ ହେଉଛି ।

ଗୌରାଙ୍ଗ : ଏଇନା କ'ଣ ମିଳିବ ଯେ ଖାଇବ କହିଲ ? ବରଂ ଗଲାବେଳକୁ ବାଟରେ

ଦେଖିବା ।

ଫକୀର : ବାଟରେ ଚୋପାଟା ମିଳିବ । ହଇରେ ମୋ ନାତିଆ କହୁଥିଲା ଏଇ କଚେରୀ ପାଖରେ କୋଉଁଠି ଜିଲାପି ମିଳେ ?

ଗୌରାଙ୍ଗ : କାମଟା ଆଗ ଶେଷ ହେଇଯାଉ । ଜିଲାପି, ହାଲୁଆ, ମାଲପୁଆ ଯାହା ଚାହିଁବ ଦେବି, ଏଇନା ଚୁପ୍ ହେଇ ବସିଲ ।

ଫକୀର : (କାଶିବାକୁ ଲାଗିଛି) ପେଟ ଖାଲି ହେଲେ ଏମିତି କାଶ ହବ । ସେଥିରେ କ'ଣ ବସିହବ ?

(କାଶି କାଶି ବସିବା ଜାଗାରୁ ତଳେ ଖସି ପଡ଼ିଛି ।)

ଗୌରାଙ୍ଗ : ଓଃ ହୋ .... ତୁମେ ନ ଖାଇଲେ ଦେଖୁଛି କିଛି କାମ କରେଇ ହବନି । ଆସ... ।

ଫକୀର : (ମୁହଁରେ ହସ ବାହାରେ) ଆରେ ବିଗୁଡୁଛୁ କିଆଁ ? ଏମିତି ସାକ୍ଷୀ ଦେଇଛି ଯେ ଦେଖିବୁ ପୋଲିସ୍ ଯଦି କାଲି ତାକୁ ଧରି ନ ଆଣିଛି ମୋତେ କହିବୁ । ଚାଲ, ଆରେ ଜିଲାପି ଦୋକାନଟା ତୁ ଦେଖିଛୁ ନା ନାହିଁ ?

ଗୌରାଙ୍ଗ : ଓଃ... ଦେଖିଛି... ଦେଖିଛି.... ଦେଖିଛି... ।

ଫକୀର : ଦେଖିଛୁ ଯଦି ଏତେ ରାଗୁଛୁ କହିଁକି । ଚାଲ...

(ଗୌରାଙ୍ଗ ପଛେ ପଛେ ଫକୀର ଚାଲିଯାଏ ।)



# ଦ୍ୱିତୀୟ ପାଦ

(କୋର୍ଟ ଭିତରେ ଶ୍ରୀକାନ୍ତର ଶୁଣାଣି ଚାଲିଛି । ଜଜ୍, ପେଷ୍‌କାର, ପିଅନ ନିଜ ନିଜ ସ୍ଥାନରେ ଅଛନ୍ତି, କାଠଗଡ଼ା ଭିତରେ ଶ୍ରୀକାନ୍ତ । ତା ପାଖକୁ ଲାଗି କାଠଗଡ଼ା ବାହାରେ ପୋଲିସ୍ ଅଫିସର୍ ବଳିଆର ସିଂ । ଜଜ୍‌ଙ୍କ ସାମ୍‌ନାରେ ହଲ୍‌ର ବାଁ ଓ ଡାହାଣ ପାଖକୁ ଦର୍ଶକ ବସିବା ବେଞ୍ଚରେ ଗୌରାଙ୍ଗ ଓ ଫକୀର ଏବଂ ଡାହାଣ ପାଖ ବେଞ୍ଚରେ ଶ୍ରୀକାନ୍ତର ବାପା ହରିବନ୍ଧୁ ବସିଛନ୍ତି । ହରିବନ୍ଧୁଙ୍କ ବୟସ ୫୦-୫୫ ବର୍ଷ, ପିନ୍ଧିଛନ୍ତି ଧୋତି ପଞ୍ଜାବୀ । ଦର୍ଶକ ଗ୍ୟାଲେରୀ ଭିତରୁ ସାମାନ୍ୟ କୋଳାହଳ ଶୁଣାଯାଉଛି ।)

ବିଭୂତି : ଅର୍ଡର୍ । ଅର୍ଡର୍ । ତୁମେ ତା ହେଲେ ହେଉଛ ହରିବନ୍ଧୁ ବିଶ୍ୱାଳଙ୍କ ପୁଅ ଶ୍ରୀକାନ୍ତ ବିଶ୍ୱାଳ ?

ଶ୍ରୀକାନ୍ତ : ହଁ ସାର୍ ।

ବିଭୂତି : ପୋଲିସ୍ ତୁମକୁ କାହିଁକି ଆଣି ଏଠି ହାଜର କରେଇଛି ଜାଣିଛ ?

ଶ୍ରୀକାନ୍ତ ଜାଣିଛି ସାର୍ । ପଦ୍ମା ପ୍ରଧାନକୁ ମୁଁ ତା' ଘରୁ ଜବରଦସ୍ତ ଉଠେଇ ନେଉଛି ବୋଲି ଅଭିଯୋଗ ହେଇଛି ।

ବିଭୂତି : ତୁମେ ଏ ଅଭିଯୋଗକୁ ସ୍ୱୀକାର କରୁଛ ନା ନାହିଁ ?

ଶ୍ରୀକାନ୍ତ : ନା ସାର୍ ।

ବିଭୂତି : ଗତ ଶୁକ୍ରବାର ଦିନ ତୁମେ ଗୋଟେ କାର ନେଇ ଗୌରାଙ୍ଗ ପ୍ରଧାନ ଘରେ ପହଞ୍ଚିଥିଲ ?

ଶ୍ରୀକାନ୍ତ : ପହଞ୍ଚିଥିଲି ସାର୍ ।

ବିଭୂତି : ପଦ୍ମାର ଅନିଚ୍ଛା ସତ୍ୱେ ତାକୁ କାର୍‌ରେ ଜବରଦସ୍ତ ବସେଇ ନେଇ ଯିବା କଥା ସତ ନା ମିଛ ?

ଶ୍ରୀକାନ୍ତ ମିଛ ସାର୍ । ମୁଁ ପଦ୍ମାକୁ କେବେ ଜବରଦସ୍ତ ନେଇ କାର୍‌ରେ ବସେଇନି । ସେ ଇଚ୍ଛା କରି ମୋ ସହିତ ଯାଇଛି । ମୁଁ କାର୍ ନେଇ ପହଞ୍ଚିଲେ ସେ ଯିବ ବୋଲି ମୋତେ କଥା ଦେଇଥିଲା ।

ବିଭୂତି : ତା ହେଲେ ତୁମେ କହୁଛ ଦୁଇଜଣ ଯାକ ଇଚ୍ଛାକରି ବାହାରକୁ ଯାଇଥିଲ ?

ଶ୍ରୀକାନ୍ତ : ହଁ ସାର୍, ବିଧିବଦ୍ଧ ଭାବରେ ଯୋଜନା କରି ଯାଇଥିଲୁ ।

(ଜଜ୍ ଲେଖିବାକୁ ଲାଗନ୍ତି, ହରିବନ୍ଧୁ ବିରକ୍ତ ହୋଇ ପୁଅକୁ ଚାହିଁ କୁହେ ।)

ହରିବନ୍ଧୁ : କୁଳାଙ୍ଗାର କୋଉଠିକାର ବଡ଼ ବାହାଦୂରୀ ଦେଖେଇ କହୁଛି ଯୋଜନା କରି ଯାଇଥିଲୁ ।

ବିଭୂତି : ତୁମେ ପଦ୍ମାକୁ ନେଇ କୁଆଡ଼େ କୁଆଡ଼େ ଯାଇଥିଲ ?

ଶ୍ରୀକାନ୍ତ : ପୁରୀ, କୋଣାର୍କ, ବ୍ରହ୍ମପୁର, ଗୋପାଳପୁର ତାରା ତାରେଣୀ, ପଦ୍ମା ଯେଉଁ ଯେଉଁ ସ୍ଥାନ ବୁଲିବାକୁ ଚାହୁଁଥିଲା ତାକୁ ସେଇ ସେଇ ସ୍ଥାନକୁ ନେଇଯାଇଛି ସାର୍ ।

(ଜଜ୍ ପୁଣି ଲେଖିବାକୁ ଲାଗିଲେ । ଦର୍ଶକ ଗ୍ୟାଲେରୀରେ ଫକୀର ଓ ଗୌରାଙ୍ଗ ଧୀର ଗଳାରେ କଥାବାର୍ତ୍ତା ହେଲେ ।)

ଫକୀର : ମୁଁ କହୁ ନ ଥିଲି - ଏ ଟୋକା ନିଶ୍ଚୟ ତୋ ଝିଅକୁ ଗୁଣି ଗାରେଡ଼ି କରି ଦେଇଛି । ନ ହେଲେ ପଦ୍ମା ଭଳିଆ ଝିଅ... (କାଶ ହେଇଛି)

ବିଭୂତି : ଅର୍ଡର୍ । ଅର୍ଡର୍ । (ଶ୍ରୀକାନ୍ତକୁ) ପଦ୍ମାକୁ ନେଇ ତୁମେ ଏବେ ଏତେ ଯାଗା ବୁଲିଲ, ନିଶ୍ଚୟ ବାହାରେ ରାତି କଟେଇଥିବ ।

ଶ୍ରୀକାନ୍ତ : ହଁ ସାର୍ । ଏଇଟା ନ୍ୟାଚୁରାଲ୍ ।

ବିଭୂତି : ବର୍ତ୍ତମାନ ତା ହେଲେ ପଦ୍ମାକୁ ନେଇ କେଉଁଠି ରଖିଛ ?

ଶ୍ରୀକାନ୍ତ : ମୁଁ ତାକୁ ରଖିନି ସର୍ । ଆମେ ଗୋପାଳପୁରରୁ ଗତ ସୋମବାର ଦିନ ଫେରିଲୁ । ଫେରିବା ବାଟରେ ପଦ୍ମା ଖୋର୍ଦ୍ଧାରେ ତା ମାଉସୀ ଘରେ ରହିଲା ।

ବିଭୂତି : (ପୋଲିସ୍ ଅଫିସର୍‌ଙ୍କୁ) କ'ଣ ବଳିଆର ସିଂ ବାବୁ । ଆପଣ ପଦ୍ମାକୁ ଖୋର୍ଦ୍ଧାରେ ଖୋଜିଛନ୍ତି ?

ବଳିୟାର : ହଁ ସାର୍ । ଏ ବାବୁଙ୍କ କହିବା ଅନୁସାରେ ଆମେ ଯାଇ ଖୋର୍ଦ୍ଧାରେ ଖୋଜିଲୁ । ପଦ୍ମା ସେଇଠି ନ ଥିଲା, ତା ମାଉସୀଙ୍କ ଷ୍ଟେଟ୍‌ମେଣ୍ଟ ଅନୁସାରେ ସେ ମଙ୍ଗଳବାର ଦିନ ଖୋର୍ଦ୍ଧା ଛାଡ଼ି ଘରକୁ ଚାଲିଆସିଛି । କିନ୍ତୁ ବର୍ତ୍ତମାନ ପର୍ଯ୍ୟନ୍ତ ଗାଁରେ ପହଞ୍ଚିନି । ତେଣୁ ଆମେ ସନ୍ଦେହ କରୁଛୁ ଏ ବାବୁ କୌଶଳ କରି ତାକୁ କୋଉଠି ଲୁଚେଇ ରଖିଛନ୍ତି ।

ବିଭୂତି : (ଶ୍ରୀକାନ୍ତକୁ) ତୁମେ ପଦ୍ମାକୁ ଖୋର୍ଦ୍ଧାରେ ଛାଡ଼ି ଆସିବା ପରେ ତା'ର କିଛି ଖବର ରଖିନ ?

ଶ୍ରୀକାନ୍ତ : ନା ସାର୍ । ତେବେ ପଦ୍ମାର ଭୁବନେଶ୍ୱରରେ କ'ଣ ଗୋଟେ ଇଣ୍ଟରଭ୍ୟୁ ଥିଲା । ସେ ନିଶ୍ଚୟ ଭୁବନେଶ୍ୱରରେ ଥିବ ।

ବଳିୟାର : ଏ ବାବୁଙ୍କ କଥା ଅନୁସାରେ ଆମେ ଭୁବନେଶ୍ୱରରେ ମଧ୍ୟ ଖୋଜିଛୁ ସାର୍ ହେଲେ କିଛି ସୁରାକ ପାଇନୁ । ୟା ଭିତରେ ନିଶ୍ଚୟ କିଛି କଥା ଅଛି ସାର୍ ।

ବିଭୂତି : ଠିକ୍ ଅଛି ଆପଣ ରହନ୍ତୁ । (ଶ୍ରୀକାନ୍ତକୁ) ଶ୍ରୀକାନ୍ତ ବାବୁ ତୁମେ ଜଣେ ଶିକ୍ଷିତ ଯୁବକ । ଜଣେ ଯୁବତୀ ଝିଅକୁ ସାଙ୍ଗରେ ନେଇ ବିଭିନ୍ନ ଯାଗା ଘୂରି ବୁଲିବା, ତା ସହିତ ରାତ୍ରୀ ଯାପନ କରିବା ଆଇନ ଦୃଷ୍ଟିରେ ଏକ ଅପରାଧ । ଏକଥା ତୁମକୁ ଜଣାଥିବ ।

ଶ୍ରୀକାନ୍ତ : ଜାଣିଛି ସାର୍ । ତେବେ ବାହାଘର ହୋଇସାରିବା ପରେ ଏଇଟା କୌଣସି ଅପରାଧ ନୁହେଁ ବୋଲି ମୁଁ ଜାଣିଛି ।

ବିଭୂତି : ମାନେ ତୁମେ କ'ଣ କହିବାକୁ ଚାହୁଁଛ ?

ଶ୍ରୀକାନ୍ତ : ଘରୁ ଚାଲିଯିବାରେ ପ୍ରଥମ ଦିନ ଆମେ ପୁରୀ ଜଗନ୍ନାଥଙ୍କ ମନ୍ଦିରରେ ପରସ୍ପର ଫୁଲମାନ ଦେଇ ବାହା ହେଇଯାଇଛୁ ସାର୍ ।

(ଦର୍ଶକ ଗ୍ୟାଲେରୀରେ ଗୌରାଙ୍ଗ ବଡ଼ ବଡ଼ ଆଖିରେ ହରିବନ୍ଧୁଙ୍କୁ ଚାହିଁବାରୁ ହରିବନ୍ଧୁ ତଳକୁ ମୁହଁ କରି ଦିଅନ୍ତି ।)

ବିଭୂତି : ତା ହେଲେ ତୁମେ ପଦ୍ମାକୁ ସାଙ୍ଗରେ ନେଇଯାଇ ବାହା ହେବାର ନାଟକ କରିଛ । ଏହା ଫଳରେ ତୁମେ ଆଉ ଗୋଟେ ଅପରାଧ କରିଛ ।

ଶ୍ରୀକାନ୍ତ : ଦୁଇ ଜଣ ଯୁବକ ଯୁବତୀ ପରସ୍ପରକୁ ଭଲପାଇ ବିବାହ କରିବା କ'ଣ ଗୋଟେ ଅପରାଧ ସାର୍ ?

ବିଭୂତି : ପଦ୍ମାକୁ ୧୮ ବର୍ଷ ପୂରିଯାଇଥିଲେ ଏଇଟା ହୁଏତ ଅପରାଧ ହେଇ ନଥାନ୍ତା । କିନ୍ତୁ ତାକୁ ଏବେ ବି ୧୭ ବର୍ଷ ପୁରିନି । ତେଣୁ ତୁମେ ଜଣେ ନାବାଳିକା କନ୍ୟାକୁ ଭୁଲେଇ ନେଇ ପ୍ରଥମେ ଭୁଲ୍ କରିଛ । ଦ୍ୱିତୀୟରେ ତାକୁ ଫୁଲମାଳ ଦେଇ ବାହା ହେଇଛ ଏବଂ ତା ସହିତ ରାତ୍ରୀଯାପନ କରି ଆହୁରି ଏକ ଭୁଲ୍ କରିଛ ।

ଶ୍ରୀକାନ୍ତ : ମିଛ କଥା ସାର୍ । ପଦ୍ମା କେବେ ନାବାଳିକା ହେଇ ପାରେନା । ତା'ର ବୟସ ୧୮ରୁ ବେଶୀ ।

ବିଭୂତି : ବେଶୀ ବା କମ୍ ସେ କଥା ପଦ୍ମା କୋର୍ଟରେ ହାଜର ହେଲାପରେ - ଡାକ୍ତର ପରୀକ୍ଷା କଲାପରେ କହିବେ । ପୋଲିସ ବର୍ତ୍ତମାନ ଯାଏ ପଦ୍ମାକୁ ଖୋଜି ପାଇନି । ତୁମେ ବି ତାକୁ କୋଉଠି ରଖିଛ ପ୍ରକାଶ କରୁନ ।

ଶ୍ରୀକାନ୍ତ : ମୁଁ ତାକୁ କୋଉଠି ରଖିନି ସାର୍ । ସେ ନିଶ୍ଚୟ ଭୁବନେଶ୍ୱରରେ ଅଛି ।

ବିଭୂତି : ଚୁପ୍ ରୁହ । ବେଶୀ ସଫେଇ ଦେବା ଦରକାର ନାହିଁ । ବଲିୟାର ସିଂ ବାବୁ ।

ବଲିୟାର : ସାର୍ ।

ବିଭୂତି : ମୁଁ ଅର୍ଡର କରିଦେଉଛି- ପଦ୍ମା କୋର୍ଟରେ ହାଜର ନ ହେଲା ପର୍ଯ୍ୟନ୍ତ ଏ ବାବୁ ହାଜତରେ ରହିବେ ।

ଶ୍ରୀକାନ୍ତ : ମୁଁ ହାଜତରେ ରହିବି ସାର୍ ?

ବିଭୂତି : ଇଏସ୍, ପୋଲିସ୍ ପଦ୍ମାକୁ ଖୋଜି ବାହାର କରିବ, ଡାକ୍ତରୀ ପରୀକ୍ଷା ହେଇ ରିପୋର୍ଟ ଆସିବ, ତା ପରେ ତୁମ କଥା ବିଚାର କରାଯିବ ।

ଶ୍ରୀକାନ୍ତ : କିନ୍ତୁ ସାର୍ .... ?

ବିଭୂତି ନଥିଙ୍ଗ୍ ଡୁଇଙ୍ଗ୍ । ମିଃ. ବଳିଆର ସିଂ, ଟେକ୍ ହିମ୍ ଟୁ କଷ୍ଟୋଡି । (ପୋଲିସ୍ ଅଫିସର ଶ୍ରୀକାନ୍ତକୁ କାଠଗଡ଼ା ଭିତରୁ ନେଇଆସନ୍ତି । ଦର୍ଶକମାନଙ୍କର କୋଳାହଳ ବଢ଼ିଯାଏ, ହରିବନ୍ଧୁ ଜଜ୍‌ଙ୍କ ସାମ୍ନାକୁ ଆସି ହାତଯୋଡ଼ି ଠିଆ ହୁଅନ୍ତି ।)

ହରିବନ୍ଧୁ : ତାକୁ ହାଜତକୁ ପଠାନ୍ତୁନି ହଜୁର । ମୁଁ ତାକୁ ଯାମିନ୍‌ରେ ନେଇଯିବି ।

ବିଭୂତି : ତୁମେ..... ତୁମେ କିଏ ?

ହରିବନ୍ଧୁ : ହଜୁର ମୁଁ ହେଉଛି ହରିବନ୍ଧୁ ବିଶ୍ୱାଳ । ଏଇ ଶ୍ରୀକାନ୍ତ ବିଶ୍ୱାଳର ବାପା ।

ବିଭୂତି : ପୁଅ କିର୍ତ୍ତୀ କରିବ - ବାପା ଆସି ଜାମିନ୍‌ରେ ନେବ ? ନା, ତୁମ କଥା କିଛି ଶୁଣାଯିବନି । ତୁମ ପୁଅକୁ ଛଡ଼ା ଯିବନି ।

ହରିବନ୍ଧୁ ହଜୁର ଆପଣ ଚାହିଁଲେ ସବୁ ହେଇପାରିବ । ଟିକିଏ ଦୟା କରନ୍ତୁ ହଜୁର । ହାଜତକୁ ପଠେଇ ଦେଲେ ବେଇଜ୍ଜତ୍ ହେଇଯିବି ।

ବିଭୂତି : ଇଜ୍ଜତ୍ ପାଇଁ ଯଦି ଏତେ ଡର ତେବେ ପୁଅକୁ ଏ କାଣ୍ଡ କରିବାକୁ ବାରଣ କଲନି ? ଯାଅ, ପଦ୍ମାକୁ ପ୍ରଥମେ ଖୋଜି ବାହାର କର । ତା'ପରେ ଯାହା ବିଚାର କରାଯିବ ।

(ଜଜ୍ ତାଙ୍କ ସ୍ଥାନରୁ ଉଠି ଠିଆ ହେଲେ । କୋର୍ଟରେ ଉପସ୍ଥିତ ସମସ୍ତେ ଠିଆ ହୋଇଗଲେ । କୋର୍ଟ ହଲର ପ୍ରବେଶ ଦ୍ୱାର ଦେଇ ପ୍ରବେଶ କଲା ପଦ୍ମା । ସେ ପୁରା ବଧୂବେଶରେ ଲାଲ ରଙ୍ଗର ପାଟ ଶାଢ଼ୀ ସହିତ ବିଭିନ୍ନ ଗହଣାରେ ମଣ୍ଡିତା ।)

ପଦ୍ମା : ତାଙ୍କୁ ବିନା ଦୋଷରେ ହାଜତକୁ ପଠାନ୍ତୁନି ସାର୍ । ମୁଁ ଆସି ଯାଇଛି ।

(ପଦ୍ମା ଆସି ଜଜ୍‌ଙ୍କ ସାମ୍‌ନରେ ଠିଆ ହୋଇଛି ।)

ବିଭୂତି : ତୁମେ ଆସି ଯାଇଛ ? ତୁମେ କିଏ ?

ପଦ୍ମା : ପଦ୍ମା ବିଶ୍ୱାଳ ସାର୍ ।

ବିଭୂତି : ପଦ୍ମା ବିଶ୍ୱାଳ । କେଉଁ ପଦ୍ମା ବିଶ୍ୱାଳ ?

ପଦ୍ମା : ଗୋଟେ ସପ୍ତାହ ପୂର୍ବରୁ ପଦ୍ମା ପ୍ରଧାନ ଥିଲି ସାର୍ । ବର୍ତ୍ତମାନ ପଦ୍ମା ବିଶ୍ୱାଳ ହେଇଯାଇଛି ।

ବିଭୂତି : (ନିଜ ସ୍ଥାନକୁ ଫେରିଯାଇ) ତା ହେଲେ ତୁମେ ଗୌରାଙ୍ଗ ପ୍ରଧାନ ଝିଅ ପଦ୍ମା ପ୍ରଧାନ । ଶ୍ରୀକାନ୍ତ ବିଶ୍ୱାଳକୁ ବାହାହେଇ ପଦ୍ମା ବିଶ୍ୱାଳ ହେଇଯାଇଛ ।

ପଦ୍ମା : ହଁ ସାର୍, ଭାରତୀୟ ପରମ୍ପରା ଅନୁସାରେ ଜଣେ ଝିଅ ବାହା ହେଇଗଲା ପରେ ସ୍ୱାମୀର ସାଙ୍ଗିଆରେ ପରିଚିତ ହୁଏ ।

(ଫକୀର ଅବାକ ହୋଇ ଗୌରାଙ୍ଗ ମୁହଁକୁ ଚାହେଁ ।)

ବିଭୂତି : ଭେରି ଇଣ୍ଟରେଷ୍ଟିଙ୍ଗ୍ । ତୁମର ଯାହା କହିବା କଥା ଉଇଟ୍‌ନେସ୍ ବକ୍ସ ଭିତରକୁ ଯାଇ କୁହ ।

(ପଦ୍ମା ଉଇଟ୍‌ନେସ୍ ବକ୍ସ ଭିତରକୁ ଯାଏ । ମୀନକେତନ ଗୀତା ଛୁଆଇଁ ଶପଥପାଠ କରାଏ ।)

ଦିନବନ୍ଧୁ : ତୁମର ନାଁ, ବୟସ ବାପା ନାଁ ଇତ୍ୟାଦି କୁହ ।

ପଦ୍ମା : ମୋ ନାଁ ପଦ୍ମା ବିଶ୍ୱାଳ, ସ୍ୱାମୀ - ଶ୍ରୀକାନ୍ତ ବିଶ୍ୱାଳ । ମୋ ପିତାଙ୍କ ନାମ ଗୌରାଙ୍ଗ ପ୍ରଧାନ । ପିଲାଟି ଦିନୁ ଶ୍ରୀକାନ୍ତ ଓ ମୁଁ ପରସ୍ପର ଭଲ ପାଉଥିଲୁ । ବିବାହ କରିବାକୁ ଶପଥ ମଧ୍ୟ କରିଥିଲୁ । ଜଗନ୍ନାଥଙ୍କ ଅସୀମ କରୁଣାରୁ ଆମେ ଆଜି ଶପଥ ପାଳନ କରିପାରିଛୁ । ପ୍ରଥମେ ପ୍ରେମିକ ପ୍ରେମିକା ଥିଲୁ ଏବେ ସ୍ୱାମୀ ସ୍ତ୍ରୀ ହୋଇଯାଇଛୁ । ଜନ୍ମ ଜନ୍ମାନ୍ତରର ଜୀବନସାଥୀ ।

(ହରିବନ୍ଧୁ ଗୌରାଙ୍ଗଙ୍କୁ ବଡ଼ବଡ଼ ଆଖିକରି ଚାହେଁ । ଗୌରାଙ୍ଗ ମୁଣ୍ଡ ତଳକୁ କରିଦିଏ ।)

ବିଭୂତି : ହିନ୍ଦି ଫିଲ୍‌ମର ହିରୋଇନ୍ ଭଳି, ବଡ଼ ଷ୍ଟାଇଲି ତୁମ ପ୍ରେମ କାହାଣୀ ବିଷୟରେ ତ ବର୍ଣ୍ଣନା କରିଗଲ । ବର୍ତ୍ତମାନ ପୋଲିସ ସହିତ ଡାକ୍ତର ପାଖକୁ ଯିବାକୁ ବାହାରିପଡ଼ ।

ପଦ୍ମା : ଡାକ୍ତର ପାଖକୁ କାହିଁକି ସାର୍ ?

ବିଭୂତି : ଡାକ୍ତର ତୁମକୁ ପରୀକ୍ଷା କରି ତୁମ ବୟସ ଉପରେ ପ୍ରମାଣ ପତ୍ର ଦେବ । ତା'ପରେ ଯାଇ ଜଣା ପଡ଼ିବ ତୁମେ ସାବାଳିକା ନା ନାବାଳିକା ।

ପଦ୍ମା : ମୋ ବୟସର ପ୍ରମାଣ ପତ୍ର ମୋ ପାଖରେ ଅଛି ସାର୍ । ଡାକ୍ତର ପାଖକୁ ଯିବା୍ର କୌଣସି ଆବଶ୍ୟକତା ନାହିଁ । ମୋ ବୟସ ୨୦ ବର୍ଷ ।

ବିଭୂତି : ହ୍ୱାଟ୍ ? ତମ ବୟସର ପ୍ରମାଣ ପତ୍ର ତମେ ସାଙ୍ଗରେ ଧରି ଆସିଛ ?

ପଦ୍ମା : ଭୁବନେଶ୍ୱରରେ ଗୋଟେ ଚାକିରି ପାଇଁ ଇଣ୍ଟରଭ୍ୟୁ ଦେଇ ସିଧା ଏ କୋର୍ଟକୁ ଆସିଛି । ଏଇ ଦେଖନ୍ତୁ ମାଟ୍ରିକ ଠାରୁ ବି.ଏ. ପର୍ଯ୍ୟନ୍ତ ସବୁ ସାର୍ଟିଫିକେଟ୍ । ଭୋଟର୍ ଆଇ.ଡ଼ି. ବି ଅଛି ସାର୍ । (ପଦ୍ମା ତା ବ୍ୟାଗ୍ରୁ ସାର୍ଟିଫିକେଟ୍ ଗୁଡ଼ାକ ବାହାର କରି ବିଭୂତିଙ୍କୁ ଦିଅନ୍ତି ।)

ବିଭୂତି କିନ୍ତୁ ତୁମ ବାପା ଅଭିଯୋଗ କରିଛନ୍ତି ଯେ ତୁମ ବୟସ ଷୋଳବର୍ଷ ତିନିମାସ । ତେଣୁ ତୁମେ ନାବାଳିକା ।

ପଦ୍ମା : ବାପା ବୁଢ଼ା ଲୋକ ସାର୍ । ହିସାବ ଭୁଲ କରିଥାଇପାରନ୍ତି । ମୋତେ ଷୋଳବର୍ଷ କେବେ ହେବନି । ସରକାରୀ ସ୍କୁଲ ମାନଙ୍କରେ ୫ ବର୍ଷ ପୂରଣ ହେଲେ ଯାଇ ନାମ ଲେଖାଯାଏ । ମୁଁ ଗତ ବର୍ଷ ବି.ଏ. ପାସ କରିଛି । ମୋତେ ୨୦ ବର୍ଷ ହେବାକୁ ବାଧ୍ୟ । ଆପଣ ନିଜେ ହିସାବ କରି ଦେଖନ୍ତୁ ।

(ବିଭୂତି ସାଟିଫିକେଟ ଗୁଡ଼ିକୁ ଦେଖି ବୟସ ହିସାବ କରନ୍ତି, ଦର୍ଶକ ଗ୍ୟାଲେରୀ ଭିତରେ ଫକୀର ଗୌରାଙ୍ଗଙ୍କୁ କହେ ।)

ଫକୀର : ହଁ । ଆପଣା ସୁନା ତ ଭେଣ୍ଡି । ମିଛରେ ମୋତେ ଧରି ଆଣି ଯାହା ସାକ୍ଷୀ କରେଇଲୁ । ଝିଅକୁ ପାଠ ପଢ଼େଇଛୁ ନା ଛେନା ଟା ପଢ଼େଇଛୁ ।

ଗୌରାଙ୍ଗ : ମୁଁ କ'ଣ ଆଗରୁ ଏତେ କଥା ଜାଣିଥିଲି ଦାଦା ।

ଫକୀର : (ରାଗି) ଜାଣି ନ ଥିଲୁ - ନାଇଁ କରିଥିଲୁ ।(କାଶ ହେଇଛି)

ବିଭୂତି : ଅର୍ଡର । ଅର୍ଡର । (ପଦ୍ମାକୁ) ୟେସ୍, ଇଉ ଆର୍ କରେକ୍ଟ । ତୁମେ ଠିକ୍ କହିଛ । ତୁମର ବୟସ ୨୦ ବର୍ଷ ୫ ମାସ । ତୁମେ ସାବାଳିକା । ନିଜ ବିଷୟରେ କୌଣସି ନିଷ୍ପତ୍ତି ତୁମେ ନେଇପାରିବ ।

ପଦ୍ମା : ବର୍ତ୍ତମାନ ତା ହେଲେ ଆମେ ଯାହା କରିଛୁ - ଆଇନ୍ ଦୃଷ୍ଟିରେ କୌଣସି ଅପରାଧ କରିନୁ, ଏ କଥା ଆପଣ ନିଶ୍ଚୟ ସ୍ୱୀକାର କରିବେ ସାର୍ ।

ବିଭୂତି : ନିଶ୍ଚୟ । ଆଇନ୍ ସାମ୍‌ନାରେ ତୁମେ ମାନେ କିଛି ଭୁଲ କରିନ । ତୁମ ଦୁଇ ଜଣଙ୍କର ଦାମ୍ପତ୍ୟ ଜୀବନ ସୁଖମୟ ହେଉ ବୋଲି ମୁଁ ଆଶୀର୍ବାଦ କରୁଛି ।

ପଦ୍ମା : ମୁଁ ତା ହେଲେ ମୋ ସ୍ୱାମୀଙ୍କୁ ସାଙ୍ଗରେ ନେଇ ବର୍ତ୍ତମାନ ଯାଇପାରିବି ସାର୍ ।

ବିଭୂତି : ସିଓର୍ । ତୁମେମାନେ ଯାଇପାର । ହେଲେ ତୁମ ବାପା ଗୌରାଙ୍ଗ ପ୍ରଧାନଙ୍କୁ ମୋତେ ହାଜତକୁ ପଠାଇବାକୁ ହବ ।

ପଦ୍ମା : କାହିଁକି ସାର୍ । ତାଙ୍କର ଦୋଷ କ'ଣ ?

ବିଭୂତି : ସେ ନିଜ ଝିଅ ବୟସ ବିଷୟରେ ଭୁଲ୍ ତଥ୍ୟ ଦେଇ କୋର୍ଟର ମୂଲ୍ୟବାନ ସମୟ ନଷ୍ଟ କରିଛନ୍ତି । ମୁଁ ତାଙ୍କର ବିଚାର କରି ଦଣ୍ଡ ଦେବି ।

ହରିବନ୍ଧୁ : (ଖୁସି ହୋଇ) ଦିଅନ୍ତୁ ଠୁକି ହଜୁର । ପୁଅକୁ ହାତକଡ଼ି ଲଗେଇ ଛ ମାସ ବନ୍ଦ କରିଦିଅନ୍ତୁ । (ଗୌରାଙ୍ଗ ଜଜ୍ ସାମ୍‌ନାକୁ ଆସି ହାତଯୋଡ଼ି)

ଗୌରାଙ୍ଗ : ଆପଣ ଧର୍ମାବତାର ହଜୁର, ଭଲ ମନ୍ଦ ବିଚାର କରିବାକୁ ଭଗବାନ ଆପଣଙ୍କୁ ଏ ଆସନ ଦେଇଛନ୍ତି । ମୋତେ ଅଭୟ ଦେଲେ କାହିଁକି ମୋ ଝିଅ ବୟସ ନେଇ ମିଛ କହିଛି ସବୁ ଖୋଲି କହିବି ।

ବିଭୂତି : ମାନେ ? ତୁମେ ଜାଣି ଜାଣି ତା ହେଲେ ତୁମ ଝିଅକୁ ନାବାଳିକା ବୋଲି କହିଛ ?

ଗୌରାଙ୍ଗ : ହଁ ହଜୁର । ଘରେ ମୋର ପାଞ୍ଚ ପ୍ରାଣୀ କୁଟୁମ୍ବକୁ ବଞ୍ଚେଇବାକୁ ଯାଇ ଏକଥା କହିଛି । ଆପଣ କ୍ଷମା ଦେଲେ ସବୁ ଗୋଟି ଗୋଟି କରି କହିବି ।

ବିଭୂତି : ତା ମାନେ ଏଥି ଭିତରେ ଆହୁରି କିଛି ରହସ୍ୟ ଅଛି ?

ଗୌରାଙ୍ଗ : ହଁ ହଜୁର । ଶ୍ରୀକାନ୍ତର ବାପା (ହରିବନ୍ଧୁକୁ ଦେଖେଇ) ଏଇ ହରିବନ୍ଧୁ ମୋର ପିଲା ଦିନର ସାଙ୍ଗ । ସ୍କୁଲରେ ପାଠପଢ଼ା, ଗାଡ଼ିଆରେ ମାଛଧରା, ଦି ଜଣଙ୍କର ସବୁ ଏକାଠି ହୁଏ । ଏମିତି କି ଆମ ଗାଁ ଦାଣ୍ଡକାଠିଆ ଦଳରେ ସେ ଗାୟକକୁ ମୁଁ ପାଳିଆ । ହଜୁର ଏକା ବର୍ଷବି ଆମ ଦିଜଣଙ୍କର ବାହାଘର ହେଲା । ହେଲେ ତା ପୁଅ ଶ୍ରୀକାନ୍ତ ପ୍ରଥମେ ଜନ୍ମ ହେଲା । ତା ଦି' ବର୍ଷ ପରେ ମୋ ଝିଅ ପଦ୍ମା । ସେଇ ପିଲାଟି ଦିନୁ ଶ୍ରୀକାନ୍ତ ସହିତ ପଦ୍ମାକୁ ବାହାଘର କରିବାକୁ ଆମେ ଦି ବନ୍ଧୁ ଶପଥ କରିଥିଲୁ । ଏ କଥା ଗାଁ ସାରା ସମସ୍ତେ ଜାଣନ୍ତି । ଶ୍ରୀକାନ୍ତ ଆଉ ପଦ୍ମାର ବୟସ ବଢ଼ିବା ସହିତ ସେମାନେ ବି ଜାଣିଲେ । ଫଳରେ ସେମାନଙ୍କର

ମିଳାମିଶା ବଢ଼ି ଚାଲିଲା । ଏ କଥା ଦେଖି ଗାଁ ଭିତରେ ଭୁଟୁଗୁ ଭାଟରେ ଚାଲିଲା । ମୋତେ ଭଲ ଲାଗିଲାନି ହଜୁର । ଶେଷରେ ବାଧ୍ୟ ହେଇ ହରିବନ୍ଧୁ ମାନେ ଶ୍ରୀକାନ୍ତର ବାପାକୁ କହିଲି । "ଆରେ ଗାଁ ସାରା ପଦ୍ମା ଆଉ ଶ୍ରୀକାନ୍ତ ବିଷୟରେ ନାନା କଥା ଆଲୋଚନା ଚାଲୁଛି । ପିଲା ଦିଟା ବଢ଼ିଲା ବୟସ, ନିଆଁ ପାଖରେ ଘିଅ - କେତେ ବେଳେ କ'ଣ ହେଇଯିବ, ଦି ଜଣଯାକୁ ବାହା କରିଦେବା ।" ଆଜ୍ଞା ମୋ କଥା ଶୁଣି ହରିବନ୍ଧୁ କହିଲା - "ଧୁତ୍, ତୁ ଟା ଗୋଟେ ଫକଡ଼ । ମୋ ପୁଅକୁ ଯୌତୁକ ହିସାବରେ ଲକ୍ଷେ ଟଙ୍କା ଦବୁତ ଏ ବାହାଘର ହବ ନ ହେଲେ ନାହିଁ ।" ଆଜ୍ଞା ମୁଁ ଗରିବ ଲୋକ କ'ଣ କରିବି କିଛି ବୁଦ୍ଧି ବାଟ ଦେଖାଗଲାନି । ହରିବନ୍ଧୁ କିନ୍ତୁ ଜିଦି ଲଗେଇଲା - ସେ ଲକ୍ଷେ ଟଙ୍କା ଧରିବତ ଏ ବାହାଘର ହବ - ନ ହେଲେ ନାହିଁ... ।

ବିଭୂତି : ହୁଁ, ତା'ପରେ କ'ଣ ହେଲା ?

ଗୌରାଙ୍ଗ : ତା'ପରେ ପଦ୍ମାକୁ ଶ୍ରୀକାନ୍ତ ସହିତ ମିଶିବାକୁ ମନା କରି ଦେଲି ହଜୁର । ହେଲେ କଥା ଯାଇ ଶ୍ରୀକାନ୍ତ କାନରେ ପଡ଼ିଲା । ହରିବନ୍ଧୁର ଯୌତୁକ ଲୋଭ ଶୁଣି ସେ ବଡ଼ ମନଦୁଃଖ କଲା । ବାପାଙ୍କୁ ବୁଝେଇବାକୁ ଚେଷ୍ଟା କଲା । କିନ୍ତୁ ଫଳ କିଛି ହେଲାନି । ଶେଷରେ ଶ୍ରୀକାନ୍ତ ଓ ପଦ୍ମା ମନ୍ଦିରରେ ବାହା ହବା କଥା ସ୍ଥିର କଲେ ।

ବିଭୂତି : ତା ମାନେ ଏ ଦୁଇଜଣ ତୁମ ଜ୍ଞାତସାରରେ ଘରୁ ଚାଲିଯାଇ ବାହା ହେଇଛନ୍ତି ।

ଗୌରାଙ୍ଗ : ଆଜ୍ଞା । କେବଳ ମୋ ଜ୍ଞାତସାରରେ ନୁହଁ । ସେମାନଙ୍କ ପାଇଁ ମୁଁ କାର୍‌ଟା ବୁଝି ଦେଇଥିଲି । ଶ୍ରୀକାନ୍ତର ବୋଉ, ଶ୍ରୀକାନ୍ତର ସବୁ ସାଙ୍ଗ, କେବଳ ହରିବନ୍ଧୁ ଛଡ଼ା ପ୍ରାୟ ସମସ୍ତେ ଏ କଥା ଜାଣନ୍ତି । ଶ୍ରୀକାନ୍ତ ହେଉଛି ଜଣେ ଆଦର୍ଶ ପିଲା ହଜୁର । ସେ ତା ସାଙ୍ଗମାନଙ୍କ ସହିତ ପରାମର୍ଶ କରି ଏ ନିଷ୍ପତ୍ତି ନେଇଥିଲା । ତା'ର ଯୁକ୍ତି ଥିଲା ବରକନ୍ୟା ଯେତେବେଳେ ଯୌତୁକ ସପକ୍ଷରେ ନୁହନ୍ତି ବାପା ମାଙ୍କର ଯୌତୁକ ଦାବି କରିବାକର କୌଣସି ଅଧିକାର ନାହିଁ ।

ବିଭୂତି : ରାଇଟ୍ । ସେ ଠିକ୍ କଥା କହିଛି । ପୁଅ ଯେତେବେଳେ କୌଣସି ଯୌତୁକ ନେବାକୁ ଚାହୁଁନି ବାପା ସେଥିପାଇଁ ଜିଦି କରିବା ଠିକ୍ ନୁହେଁ । ଏ କଥା ଏ ଦେଶର ସମସ୍ତ ଲୋକ ବୁଝିବା ଦରକାର । (ଶ୍ରୀକାନ୍ତକୁ ଚାହିଁ) ଥ୍ୟାଙ୍କ୍ସ ଶ୍ରୀକାନ୍ତ ତୁମର ନିଷ୍ପତ୍ତି ପାଇଁ ମୁଁ ତୁମକୁ ଅଭିନନ୍ଦନ ଜଣାଉଛି । ଯୌତୁକ ଭଳି

ଏକ ମାରାତ୍ମକ ବ୍ୟାଧିକୁ ତୁମେ ପ୍ରଶୟ ଦେଇନ ସେଥିପାଇଁ ଧନ୍ୟବାଦ । ତମଭଳି ଅନ୍ୟମାନେ ଯୌତୁକ ବିଷୟରେ ସ୍ୱର ଉଠାଇଲେ ଆମ ସମାଜରୁ ଏ ବ୍ୟାଧି ଦୂରେଇଯିବ ।

ଶ୍ରୀକାନ୍ତ : ଥ୍ୟାଙ୍କ୍ ୟୁ ସାର୍ ।

ବିଭୂତି : ହେଲେ ଗୌରାଙ୍ଗ ପ୍ରଧାନ ମୁଁ ଗୋଟେ କଥା ବୁଝିପାରୁନି । ତୁମ ଜ୍ଞାତସାରରେ ସେମାନେ ଯାଇ ମନ୍ଦିରରେ ଫୁଲମାଳ ଦେଇ ବାହା ହେଲେ, କିନ୍ତୁ ତୁମେ ଝିଅକୁ ନାବଳିକା କହି ମୋ କୋର୍ଟରେ କେସ୍ କଲ କାହିଁକି ?

ଗୌରାଙ୍ଗ : ଆଜ୍ଞା, ଏମାନେ ମନ୍ଦିରରେ ବାହା ହେଇ ଫେରିଲା ପରେ ହରିବନ୍ଧୁ ପୁଅବୋହୂଙ୍କୁ ତା' ଘରକୁ ନେବାକୁ ମନା କରିଦେଲା । ମନ୍ଦିର ବାହାଘରକୁ ସେ ମାନେନି ବୋଲି କହି ପଦ୍ମାକୁ ବୋହୂ ବୋଲି ସ୍ୱୀକାର କଲାନି । ବରଂ ଶ୍ରୀକାନ୍ତକୁ ଅନ୍ୟଗୋଟେ ଝିଅ ସହିତ ବାହାଦେବାକୁ ମସୁଧା ଚଲାଇଲା ।

ବିଭୂତି .: ଆଇନ୍ ଅନୁଯାୟୀ ମନ୍ଦିରରେ ଫୁଲମାଳ ଦେଇ ବାହା ହେବାକୁ ଗ୍ରହଣ କରାଯାଏନି ।

ଗୌରାଙ୍ଗ : ହଁ ହଜୁର, ପିଲା ଦି'ଟା ବାହା ହେଇଛନ୍ତି କିନ୍ତୁ ଆଇନ୍ ସାମ୍ନାରେ ହୁଏତ ଏହା ପ୍ରମାଣିତ ହୋଇ ନ ପାରେ, ଏ କଥା ଚିନ୍ତା କରି ଆପଣଙ୍କ କୋର୍ଟରେ କେସ୍ କଲି । ଭାବିଲି ସରକାରୀ କାଗଜ ପତ୍ରରେ ଏ ଘଟଣା ରହିଗଲେ ହରିବନ୍ଧୁ ଭବିଷ୍ୟତରେ ମୋତେ ହଇରାଣ କରିପାରିବନି ।

ବିଭୂତି : ଆଉ ତୁମେ ଲକ୍ଷେ ଟଙ୍କା ଯୌତୁକରୁ ରକ୍ଷା ପାଇଯିବ, ଏୟା ନା ?

ଗୌରାଙ୍ଗ : ହଁ ହଜୁର । ଏତେ ଟଙ୍କା ଯଉତୁକ ଦେବାକୁ ପଡ଼ିଥିଲେ ମୋତେ ଘରଡିହ ଆଦି ବିକ୍ରି କରିବାକୁ ପଡ଼ିଥାନ୍ତା । ଗୋଟିଏ ଝିଅକୁ ବିଦା କରିବାକୁ ଯାଇ ମୋର ଅନ୍ୟ ଚାରି ଚାରିଟା ପିଲାଙ୍କୁ ଦାଣ୍ଡରେ ଭିକାରି ସାଜିବାକୁ ପଡ଼ିଥାନ୍ତା । ତେଣୁ ଝିଅକୁ ନାବାଳିକା କହି କେସ୍ କଲେ ଆପଣ ନିଶ୍ଚୟ ବିଚାର ପାଇଁ ଗ୍ରହଣ କରିବେ ଭାବି ଏଭଳି କଥା କଲି । ଶ୍ରୀକାନ୍ତ ଆଉ ପଦ୍ମା ଏମିତି କରିବାକୁ ମୋତେ ବୁଦ୍ଧି ବତେଇ ଦେଲେ । ତାଙ୍କରି କଥାରେ ମୁଁ କେସ୍ କଲି ।

ବିଭୂତି : ସେମାନେ ତୁମକୁ ସନା ବତେଇ ଦେଇଛନ୍ତି । ମୁଁ କିନ୍ତୁ ତୁମକୁ ଛାଡୁନି । ତୁମେ

କୋର୍ଟର ମୂଲ୍ୟବାନ ସମୟ ନଷ୍ଟ କରିଛ । ମୁଁ ତୁମକୁ ଦଣ୍ଡ ଦେବି । (ବିଭୂତି ତାଙ୍କ ଆସନରୁ ଉଠି ଟେବୁଲ ସାମ୍ନାକୁ ଆସିଲେ ।)

ହରିବନ୍ଧୁ : ଦିଅନ୍ତୁ ହଜୁର । ଛ ମାସ ଖଣ୍ଡେ ଜେଲରେ ଚକି ପେଷେଇ ଦିଅନ୍ତୁ । ଟାଉଟର୍, ମାଗଣା ମାଗଣାରେ ମୋ ପୁଅକୁ ଜ୍ୱାଇଁ କରିବାକର ସପନ ଦେଖୁଛି । ଏମିତି ଦଣ୍ଡ ଦିଅନ୍ତୁ ପୁଅ ଅଖା ଧୋଉଥିବ ଗୁଣ ଗାଉଥିବ ।

ବିଭୂତି : ହଁ ତୁମ ସମୁଦୀ ଗୌରାଙ୍ଗ ପ୍ରଧାନ କୋର୍ଟରେ ମିଛ କହିବା ଅପରାଧରେ ୬ ମାସ ଚକି ପେଷିବେ ।

ଗୌରାଙ୍ଗ : (ବିଭୂତିର ଗୋଡ଼ତଳେ ହାତଯୋଡ଼ି) ପିଲା ଦି'ଟା ସୁଖରେ ଘର ସଂସାର କରନ୍ତୁ ଏଇଟା ମୋର କାମନା । ସେଥିପାଇଁ ଯେଉଁ ଦଣ୍ଡଦେବେ ସବୁ ମାନିଯିବି ହଜୁର ।

ହରିବନ୍ଧୁ : ମିଛରେ ମୋତେ ବଦନାମ କରିଛୁ । ଏଥର ପାଉଥା ପୁଅ....।

ବିଭୁତି : ହଁ ସେ ତ ଦଣ୍ଡ ପାଇ - ଛ ମାସ ଚକି ପେଷିବ । ଆଉ ତୁମେ ହରିବନ୍ଧୁ ବିଶ୍ୱାଳ - ଯୌତୁକ ଦାବି କରିବା ଅପରାଧରେ ଏକ ବର୍ଷ ଘଣା ପେଲିବ ।

ହରିବନ୍ଧୁ : (ବିଭୂତିଙ୍କ ଗୋଡ଼ ତଳେ ହାତ ଯୋଡ଼ି) ହଜୁର ।

ବିଭୂତି : ହଜୁର ହଜୁର କିଛି ଶୁଣାଯିବନି । ତୁମ ଦି ସମୁଦିଙ୍କୁ ଦଣ୍ଡ ଭୋଗବାକୁ ପଡ଼ିବ । ଇଟ୍ ଇଜ୍ ମାଇଁ ଅର୍ଡର୍ ।

(ହରିବନ୍ଧୁ ଓ ଗୌରାଙ୍ଗ ଜଜ୍‌ଙ୍କ ଗୋଡ଼ତଳେ ବସି ପରସ୍ପରକୁ ଇଂଗିତ କରି ଦୋଷାରୋପ କରିଥାନ୍ତି ।)

ଗୌରାଙ୍ଗ : ହଜୁର ଯାହା ଦଣ୍ଡ ଦେବେ ଦିଅନ୍ତୁ । ହେଲେ ହରିବନ୍ଧୁ ଯୋଉ ଜେଲ୍‌ରେ ରହିବ ମୋତେ ସେ ଜେଲ୍‌ରେ ରଖେଇବେନି । ଏକା ପାଇଲେ ସେ ମୋତେ କଂଚା ଖାଇଯିବ । (ଅନ୍ୟମାନେ ହସି ଉଠନ୍ତି ।)

ବିଭୂତି : ଶ୍ରୀକାନ୍ତ ଆଉ ପଦ୍ମାର ନିଷ୍ପତ୍ତି ଫଳରେ ତୁମେ ଦି ସମୁଦି, ଆଡ଼ମ୍ବରପୂର୍ଣ୍ଣ ବାହାଘରର ଅଯଥା ଖର୍ଚ୍ଚ ଆଉ ଯୌତୁକ ଖର୍ଚ୍ଚରୁ ରକ୍ଷା ପାଇଯାଇଛ । ସେମାନଙ୍କ ମୁହଁକୁ ଚାହିଁ ତୁମ ବୁଢ଼ା ଦୁଇଜଣଙ୍କୁ କ୍ଷମା ଦିଆଯାଉଛି । କିନ୍ତୁ ଗୋଟାଏ ସର୍ତ୍ତ । ତୁମେମାନେ ନିଜର ମନମାଳିନ୍ୟକୁ ଭୁଲି, ଖୋଲାମନରେ ବରକନ୍ୟାଙ୍କୁ ଆଶୀର୍ବାଦ କରି ଘରକୁ ନେବ । ଭବିଷ୍ୟତରେ ଯୌତୁକ ନେଇ କୌଣସି ଗଣ୍ଡଗୋଳ କରିବନି ବୋଲି ପ୍ରତିଶୃତି ଦେବ ।

ହରିବନ୍ଧୁ : ହଜୁର । (ପରସ୍ପର ମୁହଁକୁ ଚାହାନ୍ତି । ଗୌରାଙ୍ଗ ହରିବନ୍ଧୁଙ୍କୁ ଦାନ୍ତ ଦେଖାଏ ।)

ବିଭୂତି : ସେମିତି ଚାହିଁ ରହିଛ କ'ଣ ? ମୁଁ ଯାହା କହିଲି ସେୟା କର ।

ଗୌରାଙ୍ଗ : ଆସ ଭାଇ ହରିବନ୍ଧୁ ମୋ କୋଳକୁ ଆସ ।

(ଗୌରାଙ୍ଗ ହରିବନ୍ଧୁ ପାଖକୁ ଆଗେଇଯାଏ । ହରିବନ୍ଧୁ ଦୂରେଇଯାଏ ।)

ହରିବନ୍ଧୁ : ନାଇଁ, ତୋତେ କୋଳ କରିବି । ମୋ କୁଳଲକ୍ଷ୍ମୀ ବୋହୂଟାକୁ ଆଣି କାଠଗଡ଼ାରେ ଠିଆ କରେଇ ଦେଲୁ ଟାଉଟର ।

ଗୌରାଙ୍ଗ : କିଏ ଠିଆ କରେଇଲା ? ତୁ ନା ମୁଁ ? ତୁ ତାକୁ ବୋହୂ କରିବାକୁ ମନା କରିବାରୁ ସିନା ଏତେ କଥା ।

ହରିବନ୍ଧୁ : ଚାଲ୍ ଚାଲ ଗାଁକୁ ଚାଲ - ସେଇଠି ଜାଣିବୁ କିଏ ତାକୁ କାଠଗଡ଼ାରେ ଠିଆ କରାଇଲା ?

ଗୌରାଙ୍ଗ : ଗଲେ କ'ଣ କରିବୁ ?

ହରିବନ୍ଧୁ : କ'ଣ କରିବି ? ଦେଖିବୁ ତତେ ଯଦି ନାକରେ ପାଣି ନପେଇଛି ମୁଁ ବି ସପନା ବିଶ୍ୱାଳ ପୁଅ....... ।

(ଗୌରାଙ୍ଗ ଓ ହରିବନ୍ଧୁ - ପରସ୍ପର ଝଗଡ଼ା କରିକରି କୋର୍ଟର ପ୍ରବେଶ ଦ୍ୱାର ପର୍ଯ୍ୟନ୍ତ ଚାଲିଆସନ୍ତି । ସଂପୃକ୍ତ ସଂଳାପ ଇଂପ୍ରୋଭିସେସନ୍ କରାଯାଇ ଝଗଡ଼ାକୁ ଏକ ଚରମ ସୀମାକୁ ଚାଲିଯିବ । ଏ ଅବସ୍ଥାରେ କୋର୍ଟ ପେଷ୍କାର ପାଟିକରି ଅଟକାଇ ଦେବେ ।)

ଦିନବନ୍ଧୁ : (ଚିତ୍କାର କରି) ବାସ - ବାସ । ବହୁତ ହେଇଗଲା । ଏଇଟା କୋର୍ଟନା ତୁମ ଗାଁ ଶୁକୁଆ ହାଟ । ଯାଅ ବରକନ୍ୟାଙ୍କୁ ଆଶୀର୍ବାଦ କରି ଘରକୁ ନିଅ । ହଁ ଶ୍ରୀକାନ୍ତ - ପଦ୍ମା ... ।

(ଶ୍ରୀକାନ୍ତ - ପଦ୍ମା ଆସି ଗୌରାଙ୍ଗ ଓ ହରିବନ୍ଧୁ ପାଦ ତଳେ ମୁଣ୍ଡଇଗାନ୍ତି ।)

ଫକୀର : ଓହୋଃ.... ପ୍ରଥମେ ହଜୁରଙ୍କ ପାଖରେ- ତା ପରେ ସେଇଠି । (ଶ୍ରୀକାନ୍ତ- ପଦ୍ମାକୁ ନେଇ ଗୌରାଙ୍ଗ ଓ ହିରବନ୍ଧୁ ଜଜ୍ ପାଖକୁ ଯାଆନ୍ତି । ସେମାନେ ଜଜ୍‌ଙ୍କ ପାଦ ଛୁଇଁ ମୁଣ୍ଡିଆ ମାରନ୍ତି ।

ବିଭୂତି : ତୁମମାନଙ୍କ ଭବିଷ୍ୟତ ସରସ ସୁନ୍ଦର ସୌଭାଗ୍ୟମୟ ହେଉ ।

ହରିବନ୍ଧୁ : (ଗୌରାଙ୍ଗକୁ) ଚାଲ ଚାଲ... ତୋତେ ପଚାରୁଛି ।

ଗୌରାଙ୍ଗ : ଆଉ ପଚାରିବାକୁ ବାଟ ଅଛି ଯେ ପଚାରିବୁ । ଏ ବାହାଘର ନେଇ ଯଦି କିଛି ଭବିଷ୍ୟତରେ ଝାମଲା କରୁ ସେତେବେଳେ ଦେଖିବୁ । ହଜୁର ଆପଣ ସବୁକଥା ତ ଜାଣିଲେ । ଆପଣଙ୍କ ସରକାରୀ କାଗଜରେ ସବୁ ଲେଖିଲେ । ଭବିଷ୍ୟତରେ ଏଥିରେ ଯଦି ହରିବନ୍ଧୁ କିଛି ଗଣ୍ଡଗୋଳ ପୂରାଏ ତେବେ ଆପଣ ସାକ୍ଷୀ ରହିଲେ ହଜୁର ।

ଫକୀର : ହଁ ଉପରେ ଜଗନ୍ନାଥ - ଆଉ ଏଠି ମର୍ତ୍ତ୍ୟ ଭୁବନରେ ଅପାଣ ସାକ୍ଷୀ ରହିଲେ ହଜୁର ।

ଗୌରାଙ୍ଗ
ଶ୍ରୀକାନ୍ତ
ଫକିର
ପଦ୍ମା

: (କୋରସ) ହଁ ଆପଣ ସାକ୍ଷୀ ରହିଲେ ହଜୁର ।

(ସମସ୍ତେ ହସିଉଠନ୍ତି । ସାହାନାଇର ମଧୁର ମୂର୍ଚ୍ଛନାରେ ପରିବେଶ ପୂରିଯାଏ । ଫକିର ତା ବ୍ୟାଗରୁ ଜିଲାପି ବାହାର କରି ଖାଇବାରେ ଲାଗେ ।)



***ସମାପ୍ତ***

# ତତ୍କାଳ ସମାଧାନ

(ନାରୀ ଚରିତ୍ର ବିହିନ ହାସ୍ୟରସର ନାଟିକା)

ଦିଲ୍ଲୀଶ୍ବର ମହାରଣା

# ତତ୍କାଳ ସମାଧାନ

## ଚରିତ୍ର ଲିପି

ବ୍ରଜବିହାରୀ,

ମୁକୁନ୍ଦରାଜ,

ପବନା,

ମି. ହରକ୍ଲୁଏସ,

ଗଣେଶ୍ୱର,

ବିନବିହାରୀ

( ଗୋଟିଏ ସେଟ୍ - ସମୟ ଅବଧି -୧ ଘଣ୍ଟା)

# ତତ୍‌କାଳ ସମାଧାନ

## ପ୍ରଥମ ପାଦ

(ପ୍ରଜାପତି ଘଟସୂତ୍ର ସେବା ସଦନର ଅଫିସ ଗୃହ । ଗୋଟିଏ ପଟେ ପ୍ରବେଶ ଦ୍ୱାର ଅନ୍ୟଦିଗରେ ଅନ୍ୟାନ୍ୟ ଘରକୁ ଯିବାକୁ ରାସ୍ତା ।

ଅଫିସ ଗୃହ କାଛରେ ହିନ୍ଦୁ ମୁସଲିମ ଖ୍ରିଷ୍ଟାନ ଦମ୍ପତିଙ୍କର ବିବାହ ସମୟର ଫଟୋଗ୍ରାଫ ସହିତ ଦୁଇଟି ଦୃଷ୍ଟି ଆକର୍ଷଣ କାରି ବୋର୍ଡରେ ବଡ ବଡ ଅକ୍ଷରରେ ଲେଖାଯାଇଛି - "ବୈକୁଣ୍ଠ ସମାନ ଅଟେ ଆହା ସେଇଘର । ପତି ପତ୍ନୀ ସ୍ନେହ ଯହିଁଥାଏ ନିରନ୍ତର ।" ଅନ୍ୟ ଗୋଟିଏ ଫଳକରେ "Marriages are settled in the heaven, but performed on the earth" ଆସବାବ ଭିତରେ ଗୋଟିଏ V.I.P. Chair ଓ ଟେବୁଲ । ଯେଉଁଠି ଅଫିସର ମୁଖ୍ୟ ଶ୍ରୀଯୁକ୍ତ ବ୍ରଜସୁନ୍ଦର ବାବୁ ବସନ୍ତି । ଟେବୁଲ ସାମନାରେ ଦୁଇଟି ଚୌକି, ବାହାରର ଲୋକ ବସିବା ପାଇଁ । ପ୍ରବେଶ ଦ୍ୱାର ନିକଟରେ ଗୋଟିଏ ଟୁଲ, ଯଉଠି ଅଫିସ ପିଅନ ପବନାର ବସିବାର ଯାଗା ।

ସମୟ ଅପରାହ୍ନ । ବ୍ରଜସୁନ୍ଦର ବାବୁଙ୍କର ସହକାରୀ ତଳେବସି ମୁକୁନ୍ଦରାଜ ବାବୁ ଗୋଟିଏ ତୂଳିନେଇ ଗୋଟିଏ Sighnboard ଲେଖୁଛନ୍ତି । ପ୍ରବେଶ ଦ୍ୱାର ପାଖରେ ପବନା କାଛକୁ ଆଉଜି ଘୁମେଇ ପଡିଛି । ମୁଣ୍ଡରେ ପିନ୍ଧିଥିବା ପିଅନ ଟୋପିଟି ମୁହଁ ଉପରକୁ ଖସି ଆସିଛି ।)

ମୁକୁନ୍ଦ — ପବନା... ପବନା... ଆରେ ହେ ପବନା ।

ପବନା — (ଆଖି ଖୋଲି ପୁଣି ଶୋଇ ପଡେ )

ମୁକୁନ୍ଦ — ପବନା.... ପଦନା (ଚିତ୍କାର କରି) ।

ପବନା — (ନିଦରୁ ଉଠି) ଆଜ୍ଞା ।

ମୁକୁନ୍ଦ — ଅଫିସ ଖୋଲୁ ଖୋଲୁ ତୋତେ ନିଦ ଲାଗିଯାଇଛି ।

ପବନା : (ହସି) ନାଇଁମ ସାର ଆଖିଟା ଖାଲି ଟିକିଏ ମାଡି ପଡିଥିଲା ।

ମୁକୁନ୍ଦ ସାର କାଲି କଣ କହିଯାଇଥିଲେ ମନେ ନାହିଁ ।

ପବନା ଆପଣଙ୍କୁ କଣ କହିଯାଇଥିବେ ମୁଁ କେମିତି ମନେ ରଖିବି ।

ମୁକୁନ୍ଦ ମୋତେ ଯାହା କହିଯାଇଥିଲେ ମୁଁ ମନେରଖି ସେ କଥା କରୁଛି । କିନ୍ତୁ ତୋତେ ଯାହା କହିଯାଇଥିଲେ ସେ କଥା ମୁଁ ପଚାରୁଛି ।

ପବନା କଣଟା କହିଯାଇଥିଲେ ମନେ ପଡୁନି ସାର, କଣ ଗୋଟେ କରିବାକୁ କହିଯାଇଥିଲେ........... ।

ମୁକୁନ୍ଦ ସେ ଅଫିସରେ ପହଞ୍ଚିବା ପୂର୍ବରୁ ଯେମିତି ଏଇ ବୋର୍ଡଟି ଟଙ୍ଗା ସରିଥିବ, ସେଇକଥା କହିଯାଇଥିଲେ ।

ପବନା ହଁ ଅଫିସଟା ନୂଆଘରେ ଖୋଲିଛି । ଲୋକଙ୍କ ସୁବିଧା ପାଇଁ ସାମନା ଛକରେ ଏଇଟା ମରାହବ । ଲେଖି ସାରିଲେଣି ଯଦି ଦିଅନ୍ତୁ ।

ମୁକୁନ୍ଦ ଦେଖିଲୁ କେମିତି ହେଇଛି ।

ପବନା ବାଃ, ଏଇ ବୋର୍ଡଟା ସେଇଠି ଲାଗିଗଲେ ନା ଆମ ପ୍ରଜାପ୍ରତି ଘଟସୂତ୍ର ସେବାସଦନର ଯଉ ନାଁ ଅଛି କଷ୍ଟମର ପୁରା ଖୁଦି ହୋଇଯିବେ । (ବୋର୍ଡକୁ ପଢ଼ି) "ପ୍ରଜାପତି ଘଟସୂତ୍ର ସେବାସଦନକୁ ରସ୍ତା । ଏଠାରେ ସମସ୍ତ ପ୍ରକାର ବୈବାହିକ ସମସ୍ୟାର ତତ୍କାଳ ସମାଧାନ କରାଯାଏ ।" ବଢ଼ିଆ ହେଉଛି ସାର । ଯାଉଛି ଟାଙ୍ଗିଦେବି ।

ମୁକୁନ୍ଦ ଜଲଦି – ସାର ଆସିବାର ଟାଇମ୍ ହେଇଗଲାଣି । ଆସିଲେ ପୁଣି ପ୍ରେସକୁ ଯିବୁ । ଆମର ବୁଲେଟିନ୍ ଗୁଡାକୁ ନେଇ ଆସିବୁ ।

ପବନା ଏଇ କାମଟା ସାରି ଦେଇ ଆସେ ।

(ପବନା ଚାଲିଯାଏ, ମୁକୁନ୍ଦ ରାଜ ଗୋଟିଏ ଫାଇଲ ଦେଖିବାରେ ବ୍ୟସ୍ତ ରହିଲେ । ବାହାରୁ ଆସିଲେ ଜଣେ ଭଦ୍ରବ୍ୟକ୍ତି । ନାମ ତାଙ୍କର ମି. ହରକ୍ଲ୍ୟୁସ)

ହରକ୍ଲ୍ୟୁସ୍ ଆଜ୍ଞା, ଏଇଟା ପ୍ରଜାପତି ଘଟସୂତ୍ର ସେବା ସଦନ ନା?

ମୁକନ୍ଦ ହଁ ଆଜ୍ଞା, ପି.ଜି.ଏସ୍. ଏସ୍. ର ବ୍ରାଞ୍ଚ ଅଫିସ ନମ୍ବର Four ।

ହରକ୍ଲ୍ୟୁସ୍ ପ୍ରଜାପତି ଘଟସୂତ୍ର ସେବାସଦନ ହେଲା P.G.S.S କିନ୍ତୁ ନମ୍ବର Four ବ୍ରାଞ୍ଚ ଅଫିସମାନେ । ବ୍ରଜସୁନ୍ଦର ବାବୁ ପ୍ରଥମେ ତ କାଜି ବଜାରରେ ଗୋଟିଏ ଛୋଟିଆ ଘରେ ଜଣକିଆ ଅଫିସ କରୁଥିଲେ ।

ମୁକୁନ୍ଦ — ସେ ସବୁ ଦୁଇବର୍ଷ ତଳକଥା ଆଜ୍ଞା । ଦୁଇ ବର୍ଷ ଭିତରେ ଆମ ପ୍ରଜାପତି ଘଟସୂତ୍ର ସେବା ସଦନ କଷ୍ଟମର ସର୍ଭିସ ପାଇଁ ଚାରିଗୋଟି ସ୍ୱତନ୍ତ୍ର ବ୍ରାଞ୍ଚ ଖୋଲିଛି ।

ହର — ଚାରୋଟି ବ୍ରାଞ୍ଚରେ କଣ କଣ ସବୁ କରୁଛନ୍ତି ।

ମୁକୁନ୍ଦ — ସେବା Sir, ଆମ ସେବାସଦନର ମଟୋ ହେଲା ସେବା । Service to man kind is service to God. ପ୍ରତ୍ୟେକ ବ୍ରାଞ୍ଚର ଆମର ଅଲଗା ଅଲଗା ସେବାର ବ୍ୟବସ୍ଥା ଅଛି ।

ହର — How ?

ମୁକୁନ୍ଦ — ଏଇ ଦେଖନ୍ତୁ ଆଜ୍ଞା, ନମ୍ବର ୱାନ- ମାନେ ପ୍ରଜାପତି ଘଟସୂତ୍ର ସେବା ସଦନର ପ୍ରଥମ ଚାରଟି ଅକ୍ଷର "ପ୍ରଜାପତି" ସେଇ ବ୍ରାଞ୍ଚଟି ବାଦାମବାଡି ବସଷ୍ଟାଣ୍ଡ ପାଖରେ ଚାଲିଛି । ତାର କାମ ହେଲା Marriage News ବୁଲେଟିନ ଛପେଇବା । ଏଇ ଦେଖନ୍ତୁ ତାର କପି, ଏପଟେ ବିବାହଯୋଗ୍ୟ ପାତ୍ରଙ୍କର ଫଟୋ, ବୟସ, ରୁଚି, ଶିକ୍ଷାଗତ ଯୋଗ୍ୟତା ଇତ୍ୟାଦି ଆଉ ଏପଟେ ପାତ୍ରୀମାନଙ୍କର ସେମିତି ଫଟୋ ସହ ସବୁ Information ଦିଆଯାଇଛି । ପାଞ୍ଚଶହ ଟଙ୍କା ଦାଖଲ କଲେ ଅନ୍ତତଃ ୫୦ପାତ୍ର ପାତ୍ରୀଙ୍କର ଠିକଣା ପାଇପାରିବେ । ଉଭୟ ପକ୍ଷ ଉଭୟ ପକ୍ଷ ସହିତ ଯୋଗାଯୋଗ କରିପାରିବେ । ପୁଅଝିଅ ଖୋଜା ଝନଝଟ୍‌ରୁ ମୁକ୍ତି ପାଇବେ ।

ହର — ଠିକ୍ ଅଛି ଦୁଇ ନମ୍ବର ବ୍ରାଞ୍ଚର କାମଟା ।

ମୁକୁନ୍ଦ — ଏକ ନମ୍ବର ପ୍ରଜାପତି ଗଲା ଆଜ୍ଞା, ତାପରେ Number Two ହେଲା ଘଟସୂତ୍ର- ବ୍ରାଞ୍ଚଟା ଆମର ଚୌଧୁରୀ ବଜାର ଉପରେ ।

ହର — ହଁ ସେଇଠି ସେଟା ଥାଇପାରେ? ହେଲେ ତାର କାମଟା କଣ?

ମୁକୁନ୍ଦ — ଘଟସୂତ୍ର ମାନେ ବୁଝୁନାହାନ୍ତି ଆଜ୍ଞା । ଉପଯୁକ୍ତ ପାତ୍ର ସହିତ ଉପଯୁକ୍ତ ପାତ୍ରୀଙ୍କର ମିଳନ । ମାନେ ଯେଉଁଟା କୁହନ୍ତୁ ମଧ୍ୟସ୍ଥି କାମ , Mediator କାମ ।

ହର — ହୁଁ ବ୍ରାଇଡଗ୍ରୁମ ସହିତ ବ୍ରାଇଡ୍‌ର ମିଳେଇ ଦବାତ । Engagement ।

ମୁକୁନ୍ଦ — ଖାଲି ମିଳେଇ ଦେବା ନୁହେଁ ଆଜ୍ଞା । ପୁରା ହାତ ଗଣ୍ଠି ପଡିବା ପର୍ଯ୍ୟନ୍ତ ସମସ୍ତ କାର୍ଯ୍ୟ କରିବାକୁ ହୁଏ ।

ହର — ବୁଝିଗଲି ବୁଝିଗଲି । ତେବେ ତୃତୀୟ ବ୍ରାଞ୍ଚର କାମ ?

ମୁକୁନ୍ଦ : ତୃତୀୟ ବ୍ରାଞ୍ଚ ହେଲା ଆଜ୍ଞା, ସେବା ଅର୍ଥାତ ପ୍ରଜାପତି ଗଲା ଏକ ନଂବର, ଘଟସୂତ୍ର ଗଲା ଦୁଇ ନଂବର ତାପରେ ଆସିଲା ସେବା । ଏଇ ଧରନ୍ତୁ ବାହାଘର ପାଇଁ ଆପଣଙ୍କର ଯାହା ଯାହା ଦରକାର, ଯଥା କୁଣବନ୍ଧୁ, ବ୍ରାହ୍ମଣଠୁ ଆରମ୍ଭ କରି- ବାଣ, ବ୍ୟାଣ୍ଡପାଟି ଇତ୍ୟାଦି ଇତ୍ୟାଦି । ସବୁକଥା order ମୁତାବକ ଯୋଗାଇ ଦେବାକୁ ହୁଏ ।

ହର : ବାଃ, Very good । ଝିଅ ପୁଅ ଖୋଜାଠୁ ଆରମ୍ଭ କରି ବିବାହ କାର୍ଯ୍ୟ ପର୍ଯ୍ୟନ୍ତ ସବୁ ଏଇ ତିନୋଟି ବ୍ରାଞ୍ଚରେ ହେଇଗଲା । ତେବେ ଚାରି ନମ୍ବର ବ୍ରାଞ୍ଚ ପାଇଁ କଣ କାମ ରହିଲା ।ପୁଣି ସେଇଟା କଉଠି ?

ମୁକୁନ୍ଦ : ଏଇଠି ସାର ଆପଣ ଚାରି ନଂବର ବ୍ରାଞ୍ଚ ଅଫିସରେ ଦଣ୍ଡାୟମାନ ହୋଇଛନ୍ତି । ଦୁଇଦିନ ତଳେ ଏଇ ବ୍ରାଞ୍ଚଟି ଖୋଲିଛି ।

ହର : ଓଃ ପ୍ରଜାପତି ଘଟସୂତ୍ର ସେବା ସଦନ ମାନେ ଏଇ ବ୍ରାଞ୍ଚଟା ସଦନ ।

ମୁକୁନ୍ଦ : Yes Sir. ସଦନ... (ଦୁହେଁ ହସିଉଠିଛନ୍ତି)

ହର : ଯାର କାମ ?

ମୁକୁନ୍ଦ : ଯାର କାମ ବଡ ଗୁରୁତର ଆଜ୍ଞା।

ହର : ଗୁରୁତର କାମ ମାନେ Serious ?

ମୁକୁନ୍ଦ : ହଁ ଆଜ୍ଞା, ବାହାଘର ଇତ୍ୟାଦିରେ ଗୁରୁତର ସମସ୍ୟାର ତତ୍କାଳ ସମାଧାନ କରିବାକୁ ଏଇ ବ୍ରାଞ୍ଚ ପ୍ରତିଶ୍ରୁତି ବଧ । ଏଇ ଧରନ୍ତୁ ବରପକ୍ଷ କନ୍ୟାପକ୍ଷ ଉଭୟେ ରାଜି ହଠାତ୍ ବିଭ୍ରାଟ ଦେଖାଗଲା, ଏଇ ଧରନ୍ତୁ ପୁଅ ଝିଅ ଉଭୟେ ରାଜି କିନ୍ତୁ ପୁଅର ପରିବାର ଝିଅର ପରିବାର ରାଜି ନୁହଁନ୍ତି । ଏମିତି ଅନେକ ସମସ୍ୟାର ସମାଧାନ ସୂତ୍ର ବାହାର କରିବା ସବୁ ଏଇଠି ହେବ । ତାପରେ ଆମର କାମ ହେଲା ଯୌତୁକ ଇତ୍ୟାଦିକୁ ନିରୁତ୍ସାହିତ କରିବା । ଏଇ ଧରନ୍ତୁ ପୁତ୍ର ପକ୍ଷ ୫୦ହଜାର ଦାବି କରୁଛି, କନ୍ୟାପକ୍ଷ ଦେବାକୁ ଅକ୍ଷମ ସେଇ ଯାଗାରେ ମଧ୍ୟସ୍ଥି କରି ଗୋଟାଏ Settlement କରାଇ ଦେବା ହେଉଛି ଆମର କାମ । ଏଇ ସବୁ ବିଷୟରେ ଗତ ସପ୍ତାହ ହେଲା ଆମର Advertisement ମୁଖ୍ୟ ଖବର କାଗଜରେ ଦିଆଯାଇଛି ପଢ଼ିଥିବେ ନିଶ୍ଚୟ ।

ହର : ସେଇଟା ତ ପଢ଼ି ଚାଲି ଆସିଲି । ତେବେ ଏଠି ଏତେ ପ୍ରକାର ସେବାର ବନ୍ଦୋବସ୍ତ ଅଛି ସେକଥା ଜାଣି ନଥିଲି ।

ମୁକୁନ୍ଦ — ଖାଲି ସେତିକି ନୁହେଁ ଆଜ୍ଞା, ବର୍ଷ ବର୍ଷ ଧରି ଗୋଟେ ପ୍ରକାର ଗବେଷଣା କରି ଆମେ ପ୍ରତ୍ୟକ ସମସ୍ୟାର ଗୋଟାଏ List କରିଛୁ । ଏବଂ ତାର ତୁରନ୍ତ ସମାଧାନ ପାଇଁ କଣ କଣ କରାଯିବ ତାର ବି ଗୋଟେ Reference କରୁଛୁ ।

ହର — କରିଥିବେ କରିଥିବେ । ମୁଁ ବିଲିଭ କରୁଛି । ତେବେ ମୋର ଗୋଟେ ସମସ୍ୟା ନେଇ ମୁଁ ଚିଠି ଲେଖିଥିଲି ! By the by Who is ବ୍ରଜସୁନ୍ଦର ବାବୁ ।

ମୁକୁନ୍ଦ — ଆମର M.D. ଆଜ୍ଞା, ମ୍ୟାନେଜିଂ ଡାଇରେକ୍ଟର । ତାଙ୍କୁ କେମିତି ଚିହ୍ନିଲେ ।

ହର — ଗତ ସପ୍ତାହରେ ଆପଣଙ୍କର ବିଜ୍ଞାପନ ପଢ଼ି ଗୋଟେ ବିଷୟରେ ବୁଝିବାକୁ ତାଙ୍କୁ ଚିଠି ଲେଖିଥିଲି । ସେ ଏଇ ଠିକଣାରେ ମିଟ୍ କରିବାକୁ ଲେଖିଥିଲେ ।

ମୁକୁନ୍ଦ — ଆସିଯିବେ ଆଜ୍ଞା, ତାଙ୍କର ଆସିବାର ସମୟ ହୋଇଗଲାଣି । ଆପଣ ବସନ୍ତୁ । ଯଦି କିଛି ନଭାବନ୍ତି ସମସ୍ୟାଟା ମୋତେ କୁହନ୍ତୁ ।

ହର — ଆପଣଙ୍କର ପରିଚୟଟାମାନେ ଆପଣଙ୍କର ନାଁ ଟା କଣ ?

ମୁକୁନ୍ଦ — ମୁକୁନ୍ଦ ରାଜ ଚମ୍ପେତ ସିଂ । ମି. ବ୍ରଜସୁନ୍ଦରଙ୍କର ...... ପାଟନର । ମାନେ ମି. ବ୍ରଜସୁନ୍ଦରଙ୍କ ବୁଦ୍ଧି ଆଉ ଏଇ ମୁକୁନ୍ଦ ରାଜଙ୍କର କାମ ପାଇଁ ଏଇ ବିଜିନେସ ଦୁଇବର୍ଷ ଭିତରେ ଏତେବାଟ ଆସିପାରିଛି ଆଜ୍ଞା । ସମସ୍ୟାଟି ଆପଣ ମୋତେ କହିପାରନ୍ତି ।

ହର — ଆପଣଙ୍କୁ କହିବି ?

ମୁକୁନ୍ଦ — ହଁ ସାର ବିନା ସଂକୋଚରେ କହିପାରନ୍ତି । ସମସ୍ତ ପ୍ରକାର ଗୋପନୀୟତା ରକ୍ଷାକରି ସମସ୍ୟାଟାର ସମୀକ୍ଷା କରିବି । ପରେ ପରେ ବ୍ରଜସୁନ୍ଦର ବାବୁ ଆସିଗଲେ ସମାଧାନର ସୁତ୍ର ବାହାର କରିବେ । (ଗୋଟିଏ ଖାତା ଖୋଲି) କୁହନ୍ତୁ ଆପଣଙ୍କ ନାଁ ଟା ।

ହର — ମୋ ନାଁ ?

ମୁକୁନ୍ଦ — ହଁ ଆଜ୍ଞା, ଆପଣଙ୍କର ନାଁ । ଆମର ସଦନର ନିୟମ ଅନୁଶାରେ ଆପଣଙ୍କର ସମସ୍ତ ପ୍ରକାର ଡାଟା ଏଇଥିରେ ପୁରଣ କରିବାକୁ ପଡିବ । ନାଁଟା କୁହନ୍ତୁ ।

ହର — ହରକ୍ଲ୍ୟୁସ୍ ମ୍ୟାଖୁଡ ।

ମୁକୁନ୍ଦ — (ଲେଖି) ହରକ୍ଲ୍ୟୁସ୍ ମ୍ୟାଖୁଡ ??

ହର : ହିଁ .....ହରକ୍ଲ୍ୟାସ୍ ।

ମୁକୁନ୍ଦ ଗିଲିଜିୟନ ?

ହର ହିନ୍ଦୁ ।

ମୁକୁନ୍ଦ ତେବେ ନାଁ ଟା ହରକ୍ଲ୍ୟାସ୍, ଓଡିଆ ନୁହନ୍ତି ବୋଧ ହୁଏ ।

ହର ଖାଣ୍ଟି ଓଡିଆ ହିନ୍ଦୁ ।

ମୁକୁନ୍ଦ ନାଁ ଟା ହେଲେ... ??

ହର (ହସି) ପ୍ରକୃତ ନାଁଟି ହରକାଳୀ ମହାଖୁଡ । ପ୍ରଥମେ ଜଣେ ସାହେବଙ୍କ ପାଖରେ କାମ କରୁଥିଲି । ସେ ମୋ ନାଁ ହରକାଳୀରୁ ହରକ୍ଲ୍ୟାସ୍ ଆଉ ମହାଖୁଡକୁ ମ୍ୟାଖୁଡ କରି ଦେଲେ । ସେଇ ଦିନୁଁ ରହିଯାଇଛି ।

ମୁକୁନ୍ଦ ଆଛା ଆଛା ।

(ଦୁହେଁ ହସି ଉଠିଛନ୍ତି ବାହାରୁ ପବନା ଆସିଛି)

ପବନା MD ଆସିଗଲେ ଆଜ୍ଞା ।

ମୁକୁନ୍ଦ ସାର ତ ଆସିଗଲେଣି । ସବୁ ଠିକ୍ ଠାକ୍ ହେଇଯିବ ।

(ପ୍ରବେଶ କଲେ ବ୍ରଜସୁନ୍ଦର)

ମୁକୁନ୍ଦ ନମସ୍କାର ସାର ଏଇ ବାବୁ ଆପଣଙ୍କର ସାକ୍ଷାତ ପାଇଁ ଆସିଛନ୍ତି । ମି: ହରକ୍ଲ୍ୟାସ୍ ।

ବ୍ରଜ ମି: ମ୍ୟାଖୁଡ, ଖୁବ ଭଲ ବସନ୍ତୁ । ଆପଣ ଚାଲି ଆସିଲେ ଭଲ ହେଲା । Problem ଟା ଶୁଣିଲଣି ମୁକୁନ୍ଦରାଜ ?

ମୁକୁନ୍ଦ ନା ସାର। ଆପଣଙ୍କ ଅପେକ୍ଷାରେ ଥିଲୁ ।

ବ୍ରଜ ଆପଣଙ୍କ ଚିଠି ଅନୁସାରେ ଆପଣଙ୍କ କନ୍ୟାପାଇଁ ବରପାତ୍ର ମିଳୁ ନାହାଁନ୍ତି ।

ହର Not exactly that sir, ବରପାତ୍ର ମିଳିଯାଇଛି । ବରପିତା ରାଜି ମୋର କନ୍ୟା ମଧ୍ୟ ପୁଅକୁ ପସନ୍ଦ କରୁଛି । କିନ୍ତୁ ପୁଅ ଝିଅକୁ ପସନ୍ଦ କରୁନି ।

ମୁକୁନ୍ଦ ଏଗାର ନମ୍ବର ଖ ସାର୍ ।

ହର ଏଗାର ନଂ ଖ ମାନେ ?

ବ୍ରଜ ଏଗାର ନଂ ଖ ମାନେ – ଆମର ପ୍ରତ୍ୟେକ ସମସ୍ୟାର ଗୋଟାଏ ତାଲିକା କରାଯାଇ ତାର ସମ୍ଭାବ୍ୟ ସମାଧାନର ସୂତ୍ର ବାହାର କରାଯାଇଛି ।

ଆପଣଙ୍କର ସମସ୍ୟା ନଂବର ହେଉଛି ଏଗାର ନଂ ଖ ।

ମୁକୁନ୍ଦ — ସମାଧାନର ସୂତ୍ର ସଙ୍ଗେ ସଙ୍ଗେ ମିଳିଯାଇ ପାରିବ । ଫିସଟା ୨୫୦୦ ଟଙ୍କା ସାର ।

ବ୍ରଜ — ହଁ ମ୍ୟାଖୁଡ ବାବୁ ପ୍ରଥମେ ଫିସଟା ଦାଖଲ କରିଦିଅନ୍ତୁ ।

ହର — ଏଇ ସାମାନ୍ୟ ସମସ୍ୟାପାଇଁ ଦୁଇ ହଜାର ପାଞ୍ଚ ଶହ ଟଙ୍କା ?

ବ୍ରଜ — ଏଇଟାକୁ ଆପଣ ସାମାନ୍ୟ କହୁଛନ୍ତି ମ୍ୟାଖୁଡ ବାବୁ । ଏହା ଏକ ଗୁରୁତର ଜଟିଳ ସମସ୍ୟା ।

ମକୁନ୍ଦ — ହଁ ଏକ ଗଭୀର ସିରିଅସ ସମସ୍ୟାମାନଙ୍କ ମଧ୍ୟରୁ ଅନ୍ୟତମ ।

ବ୍ରଜ — Yes ଏଇଥିପାଇଁ ଆପଣ ସାମାନ୍ୟ ୨୫୦୦ ଟଙ୍କା ଖର୍ଚ୍ଚ କରିବାକୁ ପ୍ରସ୍ତୁତ ନୁହଁନ୍ତି । ଜାଣନ୍ତି ଏ ସାମାନ୍ୟ କଥାଟି ଆପଣଙ୍କୁ କେତେ ଗୁରୁତର ବିପଦକୁ ଟାଣିନେଇପାରେ ।

ମକୁନ୍ଦ — ତାହା ଫଳରେ ଆପଣଙ୍କର ପଚିଶ ଶହ ଟଙ୍କା ବଦଳରେ ଦୁଇଲକ୍ଷ ପଚାଶ ହଜାର ଟଙ୍କା ଖର୍ଚ୍ଚ ହୋଇଯାଇପାରେ ।

ହର — ମାନେ ?

ବ୍ରଜ — ମାନେ ପୁଅ ଆପଣଙ୍କ ଝିଅକୁ ପସନ୍ଦ କରୁନି ବୋଲି ପ୍ରଚାର ହୋଇଗଲେ ଅନ୍ୟ ବରପକ୍ଷ ଅନ୍ୟକଥା ଚିନ୍ତାକରି ପାରନ୍ତି ।

ମୁକୁନ୍ଦ — ହଁ ଆପଣ ଝିଅର ଯେ ବିଶେଷ ଦୋଷ ଅଛି । କିମ୍ବା ଏମିତି କିଛି କେଁ ଅଛି........... ।

ବ୍ରଜ — କିମ୍ବା ଝିଅ ଦେହରେ ଏମିତି ଏକ ଗୁପ୍ତ ବେମାର ଅଛି ଯାହାପାଇଁ ......... ।

ହର — ବନ୍ଦ କରନ୍ତୁ ଦୟାକରି ବନ୍ଦ କରନ୍ତୁ.......... ।

ପବନା — (ଗୋଟିଏ ଗ୍ଲାସରେ ପାଣିଧରି) ଆଜ୍ଞା ପାଣି ।

ହର — ପାଣି ???

ପବନା — ମୋ Duty ଆଜ୍ଞା । ଆପଣଙ୍କର Blood Pressur ବଢ଼ିଯିବାକୁ ଆମେ ଦେବୁନି । ସେଇଥି ପାଇଁ ...... ନିଅନ୍ତୁ ପିଅନ୍ତୁ । ଲବଙ୍ଗ ଚୋବାନ୍ତୁ ।

(ହର ଢକ ଢକ କରି ପାଣି ପିଆଲେ ପବନା ତାଙ୍କ ପାଟିରେ ସୁଯୋଗ ଦେଖି ଲବଙ୍ଗଟି ଗଳେଇ ଦେଲା)

ହର — ମୁଁ ଟଙ୍କା ଦେବାକୁ ପ୍ରସ୍ତୁତ ଅଛି କିନ୍ତୁ ସମସ୍ୟାର ସମାଧାନ ଯଦି ନହୁଏ ।

ବ୍ରଜ — ଜରୁର ହେବ ।

ମକୁନ୍ଦ		ଅଲବତ ହେବ ।

ବ୍ରଜ		ବ୍ରଜ ସୁନ୍ଦର ଯେଉଁ କାମରେ ବୁଦ୍ଧି ଖର୍ଚ୍ଚ କରେ.......... ।

ମୁକୁନ୍ଦ		ଆଉ ମୁକୁନ୍ଦ ରାଜ ଯଉକାମ ହାତକୁ ନିଏ........... ।

ବ୍ରଜ ମୁକୁନ୍ଦ		କେବେ ଫେଲ ହୁଏନା ।

ହର		ଯଦି ଫେଲ୍ ହୋଇଗଲା ମୋର ଦୁଇ ହଜାର ପାଞ୍ଚ ଶହ ଟଙ୍କା ପାଣିରେ ପଡିଗଲା ଜାଣ ।

ବ୍ରଜ		ଆଉ ଯଦି ସମାଧାନ ହୋଇଯାଏ ।

ମୁକୁନ୍ଦ		କିଏ କହିବ ଆପଣ ଅଢେଇ ଲକ୍ଷ ଟଙ୍କା କ୍ଷତିରୁ ବଞ୍ଚିଯାଇପାରିବେ ।

ବ୍ରଜ		ଝିଅଟି ତାର ପସନ୍ଦ ମୁତାବକ ପାତ୍ର ପାଇପାରିବ ।

ମୁକୁନ୍ଦ		ଆପଣ ଆପଣଙ୍କର ଇଚ୍ଛାମୁତାବକ ବନ୍ଧୁ ପାଇ ପାରିବେ ।

ବ୍ରଜ		ଚିନ୍ତା କରନ୍ତୁ.......... ।

ମୁକୁନ୍ଦ		ଗଭୀର ଭାବରେ ଚିନ୍ତା କରନ୍ତୁ........... ।

ବ୍ରଜ		ତର ତର ହବା ଦରକାର ନାହିଁ ।

ମୁକୁନ୍ଦ		ଥଣ୍ଡା ମନରେ ଧୀରେ ସୁସ୍ଥେ......... ।

ହର		(କିଛିସମୟ ନିରବରେ ବସି) ଠିକ୍ ଅଛି ମୁଁ ଟଙ୍କା ଦେବାକୁ ପ୍ରସ୍ତୁତ ଅଛି ।

ମୁକୁନ୍ଦ		ତେବେ ବାହାର କରନ୍ତୁ ।

ବ୍ରଜ		ରସିଦ୍‌ଟି ନେଇଯାଆନ୍ତୁ ( ଟଙ୍କାବାହାର କରି ଦେଲେ) ।

ପବନା		ସାର ଲବଙ୍ଗଟିଏ ବି ପାଟିରେ ପକାନ୍ତୁ ।

ହର		ଲବଙ୍ଗ ??

ପବନା		ସେବା ଆଜ୍ଞା, ପାଣି ପିଇ ଲବଙ୍ଗ ଖାଇଲେ ମୁଣ୍ଡ ଥଣ୍ଡା ରହିବା ସଙ୍ଗେ ସଙ୍ଗେ କୌମସି Tention ରହିବନି ।

(ହର ଲବଙ୍ଗ ନେଇ ପାଟିରେ ପକାଇଲେ)

ବ୍ରଜ		ଦେଖନ୍ତୁ ଆପଣଙ୍କର ସମସ୍ୟା ହେଲା, ଆପଣଙ୍କର କନ୍ୟାପାତ୍ରୀକୁ ପୁତ୍ରର ବାପାମାଆ ସମସ୍ତେ ପସନ୍ଦ କରୁଛନ୍ତି କିନ୍ତୁ ପାତ୍ର ମାନେ ପୁଅ ପସନ୍ଦ କରୁନି । ସମସ୍ୟା ନଂବର ୧୧ -ଖ  ମୁକୁନ୍ଦ ରାଜ ତାର ସଂଭାବ୍ୟ କାରଣ ଗୁଡିକ ବାହାର କର ।

ମୁକୁନ୍ଦ (ଗୋଟେ ମୋଟା ଖାତା ଧରି) ୧୧ ନମ୍ବର (ଖ) ସମସ୍ୟାର ସମ୍ଭାବ୍ୟ କାରଣ ଗୁଡିକ ହେଲା

ଏକ ପୁଅ ଓ ଝିଅ ଭିତରେ ମିଳାମିଶା କରି ପରସ୍ପରକୁ ଭଲଭାବେ ଜାଣିବାର ସୁଯୋଗ ଦିଆଯାଇନାହିଁ ।

ହର ଯଥେଷ୍ଟ ଦିଆଯାଇଛି । ଦୁହେଁ ପିଲାଦିନରୁ ସାଙ୍ଗ ।

ବ୍ରଜ ଏଇଟା କଟିଗଲା । ବାଶ୍ ଦୁଇ ପଢନ୍ତୁ ।

ମୁକୁନ୍ଦ ଦୁଇରେ ହେଲା- ଝିଅ ବିଷୟରେ ପୁଅ ଏମିତି କିଛି ଜାଣିଛି ଅଥଚ ପୁଅର ବାପାମାଆ ଜାଣିନାହାନ୍ତି ।

ହର ସବୁକଥା ଜାଣିଛନ୍ତି । ପୁଅର ଘର ଆଉ ମୋ ଘର ଗୋଟିଏ ପ୍ଲଟରେ । ଆମେ ତାଙ୍କ କଥା - ସେ ଆମ କଥା, ସବୁ ଜାଣିଛୁ ।

ମୁକୁନ୍ଦ ପୁଅ ଓ ଝିଅ ମଧ୍ୟରେ ଭଲ ବନ୍ଧୁତା ଥିଲେ ମଧ୍ୟ ଝିଅ ଯଦି କିଛି ପୁଅର ରୁଚି ବିରୁଦ୍ଧ କାର୍ଯ୍ୟକରୁଥାଏ ତେବେ ପୁଅ ରାଜି ହେଇ ନଥାଇପାରେ ।

ହର ଭୁଲ୍ । ମୋ ଝିଅ ସବୁକଥା ପୁଅର ରୁଚି ଅନୁଯାୟୀ କରେ । ପୁଅର Test ଅନୁସାରେ କଥା କହିବାଠାରୁ ଆରମ୍ଭ କରି ସିନେମା ଦେଖିବା ପର୍ଯ୍ୟନ୍ତ ମଧ୍ୟ କରିଥାଏ ।

ବ୍ରଜ ବାବା ଏତିକି କହିଦେଲେ ହେବ । ମନେପକାନ୍ତୁ ଅନ୍ୟକିଛି ଥାଇପାରେ ।

ମୁକୁନ୍ଦ ଗଭୀର ଭାବରେ ଚିନ୍ତା କରନ୍ତୁ । କାରଣ ଆପଣଙ୍କର ମନେ ପକାଇବା ଭୁଲ ଘଟଣା ଉପରେ ଆମ ସମସ୍ୟାର ସମାଧାନ ବି ଭୁଲ ଭାଇ ହେଇଯାଇପାରେ ।

ବ୍ରଜ ଅବଶ୍ୟ ତାର ସମ୍ଭାବନାଟା ଶତକଡା Ninety nine point nine ନାହିଁ ।

ମୁକୁନ୍ଦ ମନେ ପକାନ୍ତୁ ।

ବ୍ରଜ ସବୁକଥା ଧିରେ ସୁସ୍ଥେ ଅନୁଧ୍ୟାନ କରି କରନ୍ତୁ ।

ମୁକୁନ୍ଦ ଝିଅ ନିଶ୍ଚୟ କିଛି ଭୁଲ କରୁଛି ପୁଅ ଯଉଟାକୁ ପସନ୍ଦ କରୁନି । ସେମିତି କିଛି ମନେ ପକାନ୍ତୁ ।

ପବନା ପାଣି?

ହର ଦରକାର ନାହିଁ ।

| | |
|---|---|
| ପବନା | ଲବଙ୍ଗ ? |
| ହର | ଦରକାର ନାହିଁ |
| ପବନା | ପଙ୍ଖା ? |
| ହର | ପଙ୍ଖା ?? |
| ପବନା | ଥଣ୍ଡା ମୁଣ୍ଡରେ ଚିନ୍ତା କରିବାକୁ ପାଣି, ଲବଙ୍ଗ ଆଉ ପଙ୍ଖା ଦରକାର, ପାଣି ଲବଙ୍ଗ ହୋଇଯାଇଛି ପଂଖା କରୁଛି । (ପଙ୍ଖା କରିବାକୁ ଲାଗିଲା) |
| ହର | ହଁ ମନେ ପଡିଲା । |
| ବ୍ରଜ | ନିଶ୍ଚୟ ମନେ ପଡିବ । |
| ମୁକୁନ୍ଦ | ନପଡି ଯିବ କୁଆଡେ ... । |
| ପବନା | ପାଣି ଲବଙ୍ଗ ଲାଗିଯାଇଛି ପଙ୍ଖା ଚାଲିଛି ଏତେ ଥଣ୍ଡା ଯେ କଥାଟା ଯଉଠି ଥାଉନା କାହିଁକି ଗଡାମାରି ବାହାରି ପଡିବ । |
| ହର | ହଁ ମୋ ଝିଅ ଟିକିଏ ଅପେକ୍ଷାକୃତ ବେଶୀ ମୋଟା । |
| ମୁକୁନ୍ଦ | ମୋଟା ନୁହେଁ ମୋଟୀ । |
| ହର | ହଁ ମୋଟୀ ସେଇଥି ପାଇଁ ପୁଅଡାକୁ ସବୁବେଳେ ଡାଏଟିଂ କରିବାକୁ କୁହେ । |
| ବ୍ରଜ | ଅଥଚ ଝିଅ ଖାଇବାର ଲୋଭକୁ ସମ୍ଭାଳି ପାରେନା । |
| ହର | Right, hundred percent right । |
| ମୁକୁନ୍ଦ | ତାହେଲେ ପ୍ରଥମ କାମ ହେଲା ଝିଅର ଓଜନ କମେଇବା । |
| ବ୍ରଜ | ଦ୍ୱିତୀୟ କାର୍ଯ୍ୟ ହେଲା ପୁଅ ମନରେ ପ୍ରତ୍ୟୟ ସୃଷ୍ଟି କରିବା ଯେ ଝିଅ ପୁଅ ପସନ୍ଦ ଅନୁସାରେ କାମ କରିଚାଲିଛି । |
| ହର | କିନ୍ତୁ ଝିଅ ମୋର ଖାଇବାଟା କମ କରି ପାରୁନି । |
| ବ୍ରଜ | Yes, ସମସ୍ୟା ଅସାଧାରଣ ମାନେ ଖୁବ ଜଟିଳ- ଅଥଚ ସମାଧାନ ଖୋଜି ବାହାର କରିବାକୁ ହେବ । |
| ମୁକୁନ୍ଦ | କନ୍ୟାର ଦୈନିକ ଖାଦ୍ୟର ବିନ୍ଦୁମାତ୍ର କମିବନି ଅଥଚ ଦିନକୁ ଦିନ ଓଜନ କମେଇବାକୁ ହବ । |
| ବ୍ରଜ | ମିଳିଯିବ !! |
| ମୁକୁନ୍ଦ | ସୂତ୍ର ମିଳିଯିବ ସାର । |

ହର — ମାନେ.... ?

ବ୍ରଜ — ଅର୍ଥାତ ଆପଣଙ୍କର ଝିଅ ଯେତେ ପରିମାଣରେ ଖାଇବାର ଅଭ୍ୟାସ କରିଛନ୍ତି ସେଇଟା ଅବ୍ୟାହତ ରହିବ ଅଥଚ... ।

ମୁକୁନ୍ଦ — ଅଥଚ ଏମିତି ସମାଧାନ କରାଯିବ ଯେ ସେ Slim and smart ହେବାକୁ ଲାଗିବେ ।

ହର — Oh my God ସତରେ ସମାଧାନ ହୋଇଯିବ ।

ବ୍ରଜ — ସମାଧାନ ସୁତ୍ର ୧୫୯ର (ଡ) ବିଭାଗଟା ଦେଖ ମୁକୁନ୍ଦରାଜ ।

ମୁକୁନ୍ଦ — (ଅନ୍ୟ ଗୋଟିଏ ଖାତା ଦେଖି) ୧୫୯(ଡ଼) ସମାଧାନ ସୁତ୍ର Health is wealth by Dr. H.K. Hanga ଙ୍କର ବହି ୯୮୨ ପୃଷ୍ଠାର ତୃତୀୟ ପାରାଗ୍ରାଫ ଦେଖିବାକୁ କହିଛି ସାର ।

ହର — ତୃତୀୟ ପାରାଗ୍ରାଫ ମାନେ ।

ବ୍ରଜ — ସମସ୍ୟା ଗୁଡିକର ଯେମିତି List କରାଯାଇଛି ଆଉ ତାର କାରଣ ଗୁଡିକ ବାହାର କରାଯାଇଛି, ସେମିତି ସମସ୍ୟାର ସମାଧାନ କେଉଁ କେଉଁ ଜିନିଷର ସାହାଯ୍ୟ ନେଲେ ହେଇ ପାରିବ ତାହାର ବି ଗୋଟାଏ List କରାଯାଇଛି । ଆପଣଙ୍କର ଝିଅର ସମସ୍ୟା ଓଜନ କମେଇବା । ତାର ସମାଧାନ health is wealth ବହିରେ ମିଳିବାରିବ ବୋଲି ଆମର Reference registar କହୁଛି । ମୁକୁନ୍ଦ ବାବୁ ସେଇ ବହିଟା ଅଛିନା ??

ମୁକୁନ୍ଦ — ଅଛି ସାର ନେଇ ଆସୁଛି ।

(ବହି ଆଣି ତର ତର ହୋଇ ପୃଷ୍ଠା ଆଡେଇବାକୁ ଲାଗିଲେ ଏବଂ ବ୍ରଜସୁନ୍ଦରଙ୍କୁ ଧରେଇ ଦେଲେ)

(ବହିଟି ପଢିବାକୁ ଲାଗିଲେ । ହରକୃଷ୍ଣ ବାବୁ- ସଂଭାଳି ନପାରି ବହିକୁ ଚୁଙ୍କିବାକୁ ଠିଆ ହୋଇଗଲେ । ମୁକୁନ୍ଦରାଜ ତାକୁ ବସାଇଦେଲେ)

ମୁକୁନ୍ଦ — ଧର୍ଯ୍ୟଧରନ୍ତୁ - ସାରଙ୍କ Disturb କରନ୍ତୁନି ।

ପବନା — ଯଦି ଚାହୁଁଛନ୍ତି ଆଉ ପାଣି ପିଅନ୍ତୁ ।

ବ୍ରଜ — ମିଳିଗଲା ।

ହର — ମିଳିଗଲା?

ବ୍ରଜ — ଓଜନ କମାଇବାର ସୂତ୍ର ମିଳିଗଲା ।

| | |
|---|---|
| ହର | କଣ ମିଳିଗଲା ସାର । |
| ବୁଢ | ଘୋଡା । |
| ହର | ଘୋଡା ? |
| ମୁକୁନ୍ଦ | ହଁ ଘୋଡା । |
| ହର | ଘୋ...... ଡା !!!! |
| ପବନା | (ଘୋଡା ଭଳି ହସି ) ଘୋଡା .... । |
| ହର | ଘୋଡା ମାନେ କିଛି ବୁଝି ହେଉନି ଆଜ୍ଞା । |
| ମୁକୁନ୍ଦ | ଘୋଡାମାନେ ବୁଝିପାରୁନାହାଁନ୍ତି. Horse । |
| ପବନା | ଅଶ୍ୱ.... । |
| ହର | ହର୍ସ, ଅଶ୍ୱ ସବୁ ବୁଝୁଛି ହେଲେ ମୋ ଝିଅର ଓଜନ କମେଇବାକୁ ଘୋଡା କଣ କରିବ । |
| ବୁଢ | ପ୍ରତ୍ୟେକ ଦିନ ଅନ୍ତତଃ ଦୁଇଘଣ୍ଟା ଆପଣ ଝିଅକୁ ଘୋଡା ଚଢି ବୁଲିବାକୁ ହବ । |
| ବର | ବୁଲିଲେ କଣ ହେବ । |
| ବୁଢ | (ବହିଟି ଦେଖାଇ) ହେଇ ଦେଖନ୍ତୁ Dr. Hugu କଣ ଲେଖିଛନ୍ତି । ପ୍ରଥମେ ରୋଗୀର ଓଜନ ନେଇ ନିଅନ୍ତୁ ! ପରେ ଏକମାସ ଦୈନିକ ଦୁଇଘଣ୍ଟା ଘୋଡା ଚଢିବା ଅଭ୍ୟାସ କରନ୍ତୁ । ଗୋଟିଏ ମାସ ଭିତରେ ୧୦ ପାଉଣ୍ଡରୁ ୧୫ପାଉଣ୍ଡ ନିଶ୍ଚୟ କମିବ, ବହୁ ପରିକ୍ଷୀତ । |
| ମୁକୁନ୍ଦ | Sure sucess । |
| ପବନା | ପରୀକ୍ଷା ପାର୍ଥିନୀୟ ସାର । |
| ହର | ହେଲେ ଗୋଡା ପାଇବି କଉଠୁ । |
| ବୁଢ | ମିଳିଯିବ, ଖୋଜିଲେ ଅନେକ ମିଳିଯିବ । |
| ମୁକୁନ୍ଦ | କିଣିଦେବେ ନହେଲେ ଭଡାସୂତ୍ରରେ ନେଇ ଆସିବେ । ନପାରିଲେ କିଛି commission ଦେଲେ ଆମେ ଯୋଗେଇ ଦେବୁ । |
| ହର | କିନ୍ତୁ ମୋ ଝିଅର ଓଜନ କମିବ ତ ? |
| ବୁଢ | ସେକଥା ଆଉ ଭାବିବାକୁ ଅଛି । Dr. Hugu ଲେଖିଛନ୍ତି । ବିଦେଶୀ ଡାକ୍ତର ତାଙ୍କ କଥା ବେଦର ଗାର. । |

ମୁକୁନ୍ଦ — ସବୁବେଳେ pure କଥା ଲେଖନ୍ତି. ସେ କ'ଣ Indian ହୋଇଛନ୍ତି? ପୁଣି ବହୁ ପରିକ୍ଷୀତ । Dr. Hugu PHD, London, FRCS ନ୍ୟୁଅର୍କ ।

ହର — ଠିକ୍ ଅଛି (ମୁକୁନ୍ଦକୁ ) ଘୋଡାଟା ଆପଣ ଯୋଗେଇ ଦେବେତ ।

ମୁକୁନ୍ଦ — କାଲି ସକାଳେ ଅପାକ୍ଷା କରିଥିବେ ନେଇ ପହଞ୍ଚେଇ ଦେବି ।

ହର — Sure ?

ମକୁନ୍ଦ — Oh hundred percent sure.

ହର — ତାହାଲେ ଆସୁଛି (ହରକ୍ଲୁବସ ଚାଲିଗଲେ) ପୁଣି ଫେରିଛନ୍ତି ।

ହର — (ଫେରିଆସି) ଆଚ୍ଛା ଘୋଡାର ଦାମ୍ ।

ବ୍ରଜ — ଦାମ ?ଏକାବେଳେ କିଣିଦେବ ନା କଣ ?

ମୁକୁନ୍ଦ — ହଁ ଝିଅଟା ଦିନକୁ ଦିନକୁ ମୋଟା ହୋଇ ଯାଉଛି ଯେତେବେଳେ ଔଷଧଟା ପାଖରେ ରଖିବା ଭଲ ।

ହର — ମୋର ଆଉ ଦୁଇଟା ପୁଅ ଅଛନ୍ତି. ତାଙ୍କର ଅବସ୍ଥା ବି ସେୟା ।

ମୁକୁନ୍ଦ — ତେବେ ଇଏ ଗୋଟିଏ ବଂଶଗତ ଖାନଦାନ ରୋଗ ଯେତେବେଳେ ଗୋଟିଏ ଘୋଡାରେ ଚଳିବନି- କିଣି ଦିଅନ୍ତୁ, ଗୋଟାଏ ଦୁର୍ଜନ କିଣିଦିଅନ୍ତୁ ଆଜ୍ଞା ।

ବ୍ରଜ — ନାଇଁ. କଷ୍ଟମର କୁ ଅଯଥା ଖର୍ଚ୍ଚାନ୍ତ କରିବାକୁ କେତେବେଳେ ଉପଦେଶ ଦେବନି ମୁକୁନ୍ଦ ରାଉ ।

ମୁକୁନ୍ଦ — ହଁ ସାର କମ ଖର୍ଚ୍ଚରେ ବେଶୀ ସେବା...Less expense more service ଆମ ମୋଟୋ ଟା ଭୁଲିଯାଇଥିଲା ସାର୍ । ସାରଙ୍କର ଏକ ଝିଅ ଦୁଇ ପୁଅ ମୋଟା ହୋଇଯାଇଛନ୍ତି । ସର୍ବ ମୋଟ ୩ଜଣ ୩ଟା ଘୋଡା ଅନ୍ତତଃ କିଣିବାକୁ ପଡିବ ସାର ।

ବର — ଦୁଇଜଣ ପୁଅ ଭିତରୁ ଗୋଟାଏ ହେଉଚି, ମାନେ ବୟସ ୮ବର୍ଷ ଛୋଟ ତାକୁ କଣ ଘୋଡା ଚଢିବାକୁ ପଡିବ ।

ମୁକୁନ୍ଦ — ଓଃ ଛୋଟ ଅଥଚ ମୋଟା ।

ବ୍ରଜ — ୯ ବର୍ଷ ଦରକାର ନହୋଇ ପାରେ କିନ୍ତୁ ଆସନ୍ତା ବର୍ଷକୁ ଦରକାର ।

ମୁକୁନ୍ଦ — ମିଳିଗଲା Sir ମିଳିଗଲା ।

ବ୍ରଜ — କଣ?

ମୁକୁନ୍ଦ — ଆଇଡିଆ ।

ହର : କଣ ଆଇଡିଆ , ଆହାହା. First class ।

ହର What first class ?
First Class ଘୋଡା?

ମୁକୁନ୍ଦ No sir, first class ଘୋଡା ଆଇଡିଆ ।

ହର ମାନେ ?

ମୁକୁନ୍ଦ ଆପଣଙ୍କର ଖର୍ଚ୍ଚ କମ ହେବ ଅଥଚ ଓଜନ କମାଇବା ପାଇଁ ଦୁଇଜଣ ମୋଟା ପୁଅ ଜଣେ ମୋଟା ଝିଅ । ପ୍ରତ୍ୟେକଙ୍କ ପାଇଁ ଗୋଟେ ଗୋଟେ ଘୋଡା ପୁଣି କମ ଖର୍ଚ୍ଚରେ ।

ହର How ?

ମୁକୁନ୍ଦ ଆପଣ ୩ଟା ଘୋଡା କିଣିବା ଦରକାର ନାହିଁ ୨ଟା କିଣିବେ ଅଥଚ ତିନିଟାର ସର୍ଭିସ ପାଇପାରିବେ ।

ହର But how ?

ମୁକୁନ୍ଦ ଦୁଇଟାର ଟଙ୍କା ଦିଅନ୍ତୁ ତିନିଟା ମୁଁ ଯୋଗେଇ ଦେବି ।

ହର What non sense କଥା କିଛି ପରିଷ୍କାର ବୁଝା ପଡୁନି ।

ମୁକୁନ୍ଦ ଆପଣଙ୍କୁ ଗୋଟିଏ ଘୋଡା couple କିଣିବାକୁ ହେବ । ମାନେ ସ୍ୱାମୀସ୍ତ୍ରୀ ଘୋଡା ଯୋଡି । ବଡ ପୁଅ ଆଉ ଝିଅ ୧ ବର୍ଷ ଚଢିବେ । ସାନପୁଅ ପାଇଁ ଆସନ୍ତା ବର୍ଷ ଭିତରେ ଗୋଟେ ଛୋଟିଆ ଘୋଡା ଜନ୍ମ ହୋଇ ଯାଇଥିବା ଟଙ୍କା ଦିଅନ୍ତୁ ।

ହର ଦିଟା ଘୋଡା କିଣିବା ନିହାତି ଦରକାର ?

ମୁକୁନ୍ଦ ଗୋଟାଏ ବଂଶଗତ ଖାନଦାନୀ ରୋଗର ମୂଳଉତ୍ପାଟନ ହେବ, ତା ଆଗରେ ଦିଟା ଘୋଡା ମୂଲ୍ୟ କଣ ବେଶୀ ହୋଇଗଲା । ଟଙ୍କା ଦିଅନ୍ତୁ ୫୦ହଜାର ଗଣି ଦିଅନ୍ତୁ ।

ହର ଓଃ ରୁହନ୍ତୁ ଏତେ ତର ତର ହୁଅନ୍ତୁ ନି - ଏତେଗୁଡାଏ ଟଙ୍କା ଖର୍ଚ୍ଚ କରିବି ମୋତେ ଭାବିବାକୁ ସମୟ ଦିଅନ୍ତୁ ।

ପବନା ପାଣି - ପବନ ଲବଙ୍ଗ ଯାହା କହିବେ ସବୁ ଯୋଗୋଇ ଦେବି ସାର୍ । ଧୀର ସ୍ଥିର ଭାବରେ ଚିନ୍ତା କରନ୍ତୁ ସାର ।

ହର ନା’ ମୁଁ ଏତେ ଖର୍ଚ୍ଚ କରିପାରିବିନି ମୋ Acountରେ ମୋଟେ ଆଠ ହଜାର ଟଙ୍କା ଅଛି ।

ମୁକୁନ୍ଦ — ଚଳିଯିବ, ଚଳେଇ ନେବା ସାର୍ ଦିଟା ଛୋଟ ଘୋଡାରେ ଚଳାଇ ନେବା । ଟଙ୍କା ଦିଅନ୍ତୁ - ଜଲଦି, ଜଲଦି ।

ଦ୍ରୁଜ — Shut up

ମୁକୁନ୍ଦ — କଣ ହେଲା ସାର - ?

ଦ୍ରୁଜ — ତୁମେ କଷ୍ଟମର କୁ ଶୋଷଣ କରିବାକୁ ଚାହୁଁଛ । ଖର୍ଚ୍ଚାନ୍ତ କରାଇବାକୁ ଚାହୁଁଛ । ଦୁଇଟା ଘୋଡାର ଆବଶ୍ୟକ ନାହିଁ ।

ମୁକୁନ୍ଦ — ଗୋଟାଏ ହେଲେ ଚଳିଯିବ ସାର । ତେବେ ୧୫ହଜାର ଟଙ୍କା ଦିଅନ୍ତୁ କାଲି ଆସି ଘୋଡାଟା ଅଡେଇ ନିଅନ୍ତୁ ।

ଦ୍ରୁଜ — No !

ମୁକୁନ୍ଦ — No? What No ସାର ଅଡେଇ ଅଡେଇ ନେବେନି ଠିକ୍ ଅଛି- ଘୋଡାରେ ଚଢ଼ି ଚାଲିଯାଆନ୍ତୁ ।

ଦ୍ରୁଜ — ଓଃ No never ।

ମୁକୁନ୍ଦ — ଘୋଡାଟା ହରକ୍ଲ୍ୟୁସ୍ ବାବୁଙ୍କ ଘରେ ଆମେ ପହଞ୍ଚେଇ ଦେବାସାର ।

ଦ୍ରୁଜ — No !

ମୁକୁନ୍ଦ — କିଛି ବୁଝି ହେଲାନି ସାର ।

ଦ୍ରୁଜ — ଘୋଡା କିଣାବାର ଆବଶ୍ୟକତା ନାହିଁ । Customer ଅଯଥା ଖର୍ଚ୍ଚାନ୍ତ କରିବା ଦରକାର ନାହିଁ ତାଙ୍କୁ ଦୁଇମାସ ପାଇଁ ଘୋଡା ଭଡାରେ ଯୋଗାଇ ଦିଆଯାଉ ।

ମୁକୁନ୍ଦ — ଦିଆଗଲା ସାର ।

ହର — ଦିଆଗଲା ମାନେ ?

ମୁକୁନ୍ଦ — ଟଙ୍କା ଘରର ଠିକଣା ଦିଅନ୍ତୁ, କାଲି ସକାଳେ ଘୋଡା ଭଡାରେ ଯୋଗାଇ ଦିଆଯିବ ।

ହର — ନାଁ ଘୋଡା ନ ଦେଖିଲା ଯାଏ ମୁଁ ଟଙ୍କା ନେବିନି । ତେବେ ଦୁଇ ମାସକୁ କେତେ ଭଡା ଲାଗିବ ସେଇଟା ବି ମୁଁ ଜାଣିବା ଉଚିତ୍ ।

ମୁକୁନ୍ଦ — ଦୁଇମାସକୁ ଧରନ୍ତୁ ପାଞ୍ଚ ପାଞ୍ଚ ହଜାରେ ! ଆଉ ଘୋଡା ଯଦି ଦେଖିବାକୁ ଚାହାଁନ୍ତି ଦେଖନ୍ତୁ ସେଇ ଦୂରକୁ ଚାହଁନ୍ତୁ ସେଇ ପଡିଆରେ ଚରୁଛି ।

ହର — ସେଇଟା ମୋତେ ଦି ମାସ ଯାଏ ମିଳିଯିବ ତ ।

ମୁକୁନ୍ଦ — ହଁ, ସେ ଘୋଡା ମାଲିକ ସହିତ ଆମ Office ତରଫରୁ ଆମେ Agrement କରିଦେଇଛୁ । ଯେତେବେଳେ ଘୋଡା ଦରକାର ସେ ଯୋଗାଇ ଦେବାକୁ ବାଧ୍ୟ ।

ହର : ମିଛ କଥା । ଆପଣ କେମିତି ଜାଣିଲେ ଯେ ମୁଁ ଆଜି ଆସିବି ମୋ ଝିଅ ପାଇଁ ଘୋଡା ଦରକାର ହେବ । ମିଛ କଥା, ଆପଣ ମୋତେ ଭୁଡେଇ ଦଉଛନ୍ତି ।

ବୁଜ No । ଆମର ବାହାଘର ପାଇଁ କୁସ ବଟୁଠୁ ଆରମ୍ଭ କରି ବତ୍ସାୟନଙ୍କ କାମସୂତ୍ର ବହି ପର୍ଯ୍ୟନ୍ତ ଯୋଗାଇ ଦେବାର ବ୍ୟବସ୍ଥା ଅଛି । ତେଣୁ Order ମୁତାବକ ବାହାଘର ପାଇଁ ସବୁ ଜିନିଷ ଉତାରେ ଯୋଗାଇ ଦେବାର ବ୍ୟବସ୍ଥା ଅଛି ।

ମୁକୁନ୍ଦ ହଁ, ସାର । ବର କନ୍ୟାଙ୍କର ଯୋଗ୍ୟତା ଅନୁସାରେ ସବୁ ପ୍ରକାର ଯାନବାହାନ ଏମିତିକି ଗଧ ପର୍ଯ୍ୟନ୍ତ ।

ହର ଗଧ ? ବାହାଘରରେ ତ ଗଧର ଆବଶ୍ୟକତା ନାହିଁ ।

ମୁକୁନ୍ଦ ଆପଣଙ୍କର ନାହିଁ । ଏସବୁ କ୍ଷମତା ଅନୁସାରେ- ଅତି ଧନୀ ବର Aeroplane ଚଢି ଆସିବ ତାଠୁ ଯିଏ କମ ହେଲିକାପ୍ଟର, ତାଠୁ ଯିଏ କମ୍ କାର- ତାଠୁ ଯିଏ କମ ଘୋଡା, ତାଠୁ ଯିଏ କମ୍ - ଗଧ, ବୁଝୁନାହାଁନ୍ତି ପଇସା ଅନୁସାରେ କାମ - ସେବା ଯୋଗାଇବା ଆମ କର୍ତ୍ତବ୍ୟ ।

ହର ତେବେ ଠିକ୍ ଅଛି କାଲି ଘୋଡା ଧରି ଆସନ୍ତୁ ଏଇ ମୋର ଠିକଣା ଏଇ Form ରେ ଲେଖା ହୋଇଛି ।

ବୁଜ ଆପଣ ଆସିପାରନ୍ତି । ଘୋଡା କାଲି ମିଳିଯିବ ... Ok ।

(ହର ଚାଲିଗଲେ)

ବୁଜ, ମୁକୁନ୍ଦ ନମସ୍କାର । Result କଣ ହେଲା ଜରୁର ଜଣାଇବେ ।

ପବନା କାମଟା ହୋଇଗଲେ ପରେ ଆସିଲା ବେଳକୁ ଦୁଇ କିଲୋ ମିଠା ଆଣିଥିବେ ସାର । ନମସ୍କାର ।

ମୁକୁନ୍ଦ ଚମତ୍କାର ସମାଧାନ କରିଦେଲେ ସାର ।

ବୁଜ ଆଉ ତୁମେ ବୁଦ୍ଧି ଖର୍ଚ୍ଚ କରି ବହିଟି ଆଣି ଦେଖେଇ ଦେଲ ।

ମୁକୁନ୍ଦ ସେଇଟା Dictionary ସାର ।

ବୁଜ ସେକଥା ମୁଁ ଜାଣିନି । ତେବେ ଏତେ ତତ୍ପର ଦେଖେଇବାରେ କଣ ଅଛି । ସେ ସନ୍ଦେହ କରିବନି ।

ମୁକୁନ୍ଦ କିଏ ସନ୍ଦେହ କରିବ କିଏ ସନ୍ଦେହ ନକରିବ କଷ୍ଟମର ସାଇକୋଲୋଜି ମୁଁ କଣ study କରିନି ସାର ।

ପବନା — ଜଣେ ବୁଢ଼ାବାବୁ ଆମ ଅଫିସର Sign ବୋଡ ପଢ଼ୁଛନ୍ତି ସାର ।

ମୁକୁନ୍ଦ — ଦେଖିଲୁ ଦେଖିଲୁ ୟାଡେ ଆସୁଛନ୍ତି, ନା ନାହିଁ ।

ପବନା — (ଦେଖି) ଆମ ଅଫିସ ଆଡକୁ ମୁହେଁଇଲେଣି ଆଜ୍ଞା ।

ବ୍ରଜ — ପାଟିତୁଣ୍ଡ ନକରି କିଛି କାମରେ ଲାଗିଯାଅ । ବାହାରୁ କେହି ଆସିଲେ ଯେମିତି ଆମେ ଖୁବ କାର୍ଯ୍ୟବ୍ୟସ୍ତ ବୋଲି ଦେଖାଯାଉଥିବା । ମୁଁ ଭିତରକୁ ଯାଉଛି । (ଭିତରକୁ ଚାଲିଗଲେ)

ପବନା — ଆସନ୍ତୁ ଆଜ୍ଞା ଆସନ୍ତୁ । Sir ଅଛନ୍ତି ?

ଗଣେଶ୍ୱର — ଏଇଟା ପ୍ରଜାପତି ଘଟସୂତ୍ର ସେବା ସଦନ .....?

ପବନା — ଆଜ୍ଞା ହଁ ଏଇଠି ବସନ୍ତୁ । ଆପଣଙ୍କର କଣ ବୁଝିବାର ଅଛି କହନ୍ତୁ ।

ଗଣେଶ୍ୱର — ସାର ??

ମୁକୁନ୍ଦ — ମୁକୁନ୍ଦ ରାଜ ଚମ୍ପେତି ସିଂ । Managing Partner of ପ୍ରଜାପତି ଘଟସୂତ୍ର ସେବା ସଦନ Sir। କୁହନ୍ତୁ ଆପଣଙ୍କର କ'ଣ ସେବା କରାଯାଇପାରେ ।

ଗଣେଶ୍ୱର — ଦେଖନ୍ତୁ ଖବରକାଗଜରେ ତ ଖୁବ୍ ବଡ ବଡ Advertisement ଦେଇ ସବୁଲେଖିଛନ୍ତି । ପ୍ରକୃତରେ କ'ଣ ଆପଣମାନେ ସମସ୍ତ ସମସ୍ୟାର ସମାଧାନ କରୁଛନ୍ତି ।

ମୁକୁନ୍ଦ — ନିଶ୍ଚୟ । ବ୍ରଜସୁନ୍ଦର ବାବୁଙ୍କର ବୁଦ୍ଧି ଆଉ ମୁକୁନ୍ଦରାଜଙ୍କର କାର୍ଯ୍ୟରେ କୌଣସି ସମସ୍ୟା ସମାଧାନ ହୋଇପାରିବନି ସେମିତି କେବେ ଘଟିନି ସାର ।

ଗଣେଶ୍ୱର — ବ୍ରଜସୁନ୍ଦର ସେ ପୁଣି କିଏ ?

ମୁକୁନ୍ଦ — ଭିତରେ ଅଚନ୍ତି ଏବେ ଆସିଯିବେ ଆଜ୍ଞା, ସେ ହେଉଚନ୍ତି ଏଇ ଅନୁଷ୍ଠାନର ପ୍ରତିଷ୍ଠାତା, କେନ୍ଦ୍ରବିନ୍ଦୁ, ବୈବାହିକ ସମସ୍ୟା ବିଶାରଦ । ବେଳେବେଳେ foriegn university କୁ ଏ ବିଷୟ ଉପରେ ଭାଷଣ ଦେବାକୁ ଯାଆନ୍ତି ।

ଗଣେଶ୍ୱର — ବୈବାହିକ ସମସ୍ୟା ବିଶାରଦ ମାନେ ? ଏଇ ସମସ୍ୟା ଉପରେ କଣ University ମାନଙ୍କରେ Degree ଦିଆଗଲାଣି ।

ମୁକୁନ୍ଦ — ସେମିତି ନୁହେଁ ସାର । ତେବେ ବ୍ରଜ ସୁନ୍ଦର ବାବୁଙ୍କର ଏଇ Marrige ଇତ୍ୟାଦି ବ୍ୟାପାରରେ ଦୀର୍ଘ ୨୦ ବର୍ଷର ଅଭିଜ୍ଞତା ରହିଛି ।

ଗଣେଶ୍ୱର : କିଓ କାହାକୁ କଣ କହିବାକୁ ଯାଉଛ । କହିଲେ ମୋ ବାହାଘର ୩୦ ବର୍ଷ ହୋଇଗଲାଣି । ମୁଁ ବି ବିଷାରଦ ହୋଇଗଲିଣି ।

ମୁକୁନ୍ଦ ଭୁଲ ସାର । ଆପଣ ମୋତେ ଭୁଲ ବୁଝୁଛନ୍ତି । ଆପଣ ବିବାହ କରି ୩୦ ବର୍ଷ କଟେଇ ଦେଇ ପାରନ୍ତି । କିନ୍ତୁ ଆପଣ ଜଣେ ମାତ୍ର ସ୍ତ୍ରୀ ଲୋକକୁ ବିବାହ କରିଛନ୍ତି ମାତ୍ର । କିନ୍ତୁ ଆମର ସାର ଗତ ୨୦ବର୍ଷ ଭିତରେ ଅନ୍ତତଃ ଗୋଟିକ ପରେ ଗୋଟିଏ ବାରଗୋଟି ବିବାହ କରିବା ସଙ୍ଗେ ସଙ୍ଗେ ଗତ କୋଡିଏ ବର୍ଷ ହେଲା ବଂଗ, ବିହାର ଓଡିଶା ଭିତରେ ଅନ୍ତତଃ ୨୦ହଜାର ବାହାଘର କରେଇଛନ୍ତି ।

ଗଣେଶ୍ୱର ମାନେ.. ?

ମୁକୁନ୍ଦ ମାନେ ଆଉ କଣ । ବାହାଘର ନେଇ ଏମିତି କୌଣସି ସମସ୍ୟା ନାହିଁ ଯାହାକୁ ସେ ସମ୍ମୁଖିନ ହୋଇନାହାଁନ୍ତି । ତା ପରେ ଜ୍ୟୋତିଷ, ବିଦ୍ୟାରେ ପ୍ରଖର ଜ୍ଞାନ ଯୋଗୁ କଉ କାମଟା ହେବ କଉଟା ନହେବ ସେ ମୁହଁ ଦେଖୁ ଦେଖୁ କହିଦେଇ ପାରନ୍ତି ।

ଗଣେଶ୍ୱର ଆଛା- ତାଙ୍କୁ ଡାକୁ ନାହାଁନ୍ତି କାହିଁକି ? ମୋର ତାଙ୍କ ସହତି କଥାବାର୍ତ୍ତା କରିବାର ଅଛି । ମୋ ସମସ୍ୟାଟା ଭିନ୍ନ ଧରଣରତ, ସେଇଟା ସେ ସମାଧାନ କରିପାରବେ କି ନାହିଁ ତାଙ୍କ ମୁହଁରୁ ଟିକିଏ ଶୁଣିବି ।

(ବ୍ରଜସୁନ୍ଦର ଆସିଗଲେ )

ମୁକୁନ୍ଦ ହେଇ ସାର ଆସିଗଲେ । ଆପଣଙ୍କ ସମସ୍ୟାଟା କୁହନ୍ତୁ ଏଥର ।

ଗଣେଶ୍ୱର ଦେଖନ୍ତୁ ବ୍ରଜ ସୁନ୍ଦର ବାବୁ । ଆପଣଙ୍କ ବିଷୟରେ ଏଇ ମୁକୁନ୍ଦରାଜ ବାବୁ ବହୁତ କଥା କହିଲେଣି । ମୋ ସମସ୍ୟାଟା କିନ୍ତୁ ଟିକିଏ ଭିନ୍ନ ଧରଣର ତେଣୁ ତାକୁ ଗୋପନ ଭାବରେ ସମାଧାନ କରିବାକୁ ପଡିବ ।

ବ୍ରଜ ସେ ସବୁ ଆମର ଦାୟିତ୍ୱ ।

ମୁକୁନ୍ଦ ଗୋପନୀୟତା ରକ୍ଷା କରିବାକୁ ଆମ୍ଭେମାନେ ଶପଥ ନେଇଛୁ ।

ଗଣେଶ୍ୱର ଦେଖନ୍ତୁ ମୋ ଝିଅ ବାହାଘରକୁ ମୁଁ ବାଧ୍ୟ ହୋଇ ଗୁଡେ ଯୌତୁକ ଦେଇଛି । ସେଇଥିପାଇଁ ପୁଅ ବାହାଘରରେ ।

ବ୍ରଜ ସେ ସବୁ ଭରଣା କରିବାକୁ ଚାହୁଁଛନ୍ତି ।

ମୁକୁନ୍ଦ ତେବେ ଆମ୍ଭେ ନିଶ୍ଚୟ ଗୋଟାଏ ଭଲ ଯୌତୁକ ଦେଲାବାଲା କନ୍ୟାଘର ଯୁଟେଇ ଦବା ।

ଗଣେଶ୍ୱର — କନ୍ୟା ଠିକ୍ ହୋଇସାରିଛି । କେବଳ ନିର୍ବନ୍ଧ ହୋଇ ବାହାଘର ହେବା କଥା ।

ବ୍ରଜ — ତେବେ ସମସ୍ୟାଟା ... ?

ଗଣେଶ୍ୱର — ମୁଁ ଚାହୁଁଛି ପୁଅ ବାହାଘରରେ ଗାଡି, ଫ୍ରିଜ୍, ଟିଭି, ଇତ୍ୟାଦି ଗୋଟେ ଲମ୍ବା List demand କରିବି । କିନ୍ତୁ ମୋ ସ୍ତ୍ରୀ ଏଥିରେ ନାରାଜ ।

ମୁକୁନ୍ଦ — ଓଃ ସେ ଯୌତୁକ ଚାହୁଁନାହାଁନ୍ତି । ତେବେ ଖୁବ୍ ଭଲ ।

ଗଣେଶ୍ୱର — ଛେନା ଗୁଡ ! ସ୍ତ୍ରୀ ଆମର ଜଣେ ନାରୀନେତ୍ରୀ । ନିଜ ଝିଅ ବେଳକୁ ଏଇଟା ଦିଅ ସେଇଟା ଦିଅ କହି ମୋତେ ଖୋଳ କରିଦେଲା । ଏବେବେଳକୁ କିଛି Demand କରିବାକୁ ମନା କରିଦେଉଛି ।

ବ୍ରଜ — ପୁଅର ମତାମତ .... !

ଗଣେଶ୍ୱର — ସେଟା ବି ତା ମା ପଟର । ତାହାରି ଯୋଗୁଁ ତ ମୋତେ ସେଇ ଘରେ ସମ୍ବନ୍ଧ କରିବାକୁ ପଡୁଛି । ସେ ଝିଅଟାକୁ ବାହାହେବାକୁ ଯଦି ଧରି ବସିଛି ବୋଲି ଏତେ କଥା ।

ବ୍ରଜ — ତାହେଲେ ଆପଣ କଣ ଚାହୁଁଛନ୍ତି ।

ଗଣେଶ୍ୱର — କଥାଟା କଣ କି । ଝିଅର ବାପ ଲୋକଟା ମୋଟେ ସୁବିଧାର ଲୋକ ନୁହେଁ । ତିନି ତିନିଟା ଝିଅ ବାହାକଲାଣି ହେଲେ ସମସ୍ତଙ୍କୁ ଠକି ଦେଇଛି । ବିଶେଷ କିଛି ଦେଇନି !

ମୁକୁନ୍ଦ — ଗରିବ ଲୋକ ବୋଧହୁଏ ।

ଗଣେଶ୍ୱର — ଗରିବ ? ହୁଁ, ହାଇସ୍କୁଲରେ ମାଷ୍ଟର ଥିଲା । ଏକାବେଳକେ ୧୦ପିଲାଙ୍କୁ ଟିଉସନ କରୁଥିଲା । କେତେଟଙ୍କା ରଖିଥିବ ଏଥିରୁ ବୁଝନ୍ତୁ ।

ବ୍ରଜ — ତେବେ ଆପଣ କଣ ଚାହୁଁଛନ୍ତି । କୌଣସି ଉପାୟରେ ସେଇ ଯାଗାରୁ ପୁଅକୁ ଭଙ୍ଗେଇ ଆଣିବା... ଅନ୍ୟ ଯାଗାରେ ସମ୍ବନ୍ଧ କଲେ ମନମୁତାବକ ଯୌତୁକ ମିଳିବ ।

ଗଣେଶ୍ୱର — ନା, ସେ ଝିଅଟାକୁ ମୁଁ ଜାଣେ, ବେଶ ଭଦ୍ର ଆଉ ଭଲ । ତାକୁହିଁ ବୋହୂ କରିବି । ଅସଲ କଥା ହେଲା । ପୁଅର ସେଇଠି ବାହାଘର ହେବ । ମା କହିବା ଅନୁସାରେ ମୁଁ ମୁହଁ ଖୋଲି କିଛି Demand କରିବିନି ଅଥଚ ଝିଅର ବାପ ଯେମିତି ହଜାର ହଜାର ଟଙ୍କାର ଜିନିଷ ଦେଇଦେବ ।

ବ୍ରଜ — ଆଚ୍ଛା କନ୍ୟାପିତା କଣ କିଛି ଦେବେ ନାହିଁ ବୋଲି ମନା କରିଦେଇଛନ୍ତି ।

| | |
|---|---|
| ଗଣେଶ୍ବର | ନାଁ ତେବେ ପୁଅର ଯୋଗ୍ୟତା ଅନୁସାରେ ଦେବ ବୋଲି ମଧ୍ୟସ୍ଥି ପାଖରେ କହୁଛନ୍ତି । |
| ମୁକୁନ୍ଦ | ବୁଝିଗଲି ଆଜ୍ଞା ଆପଣ ଚାହୁଁଛନ୍ତି କନ୍ୟାପିତା ଯେମିତି କଣ କଣ ଦେବ ସେକଥା ଆପଣ ଜାଣିପାରିବେ । |
| ବ୍ରଜ | ନାଁ, ସାର ଚାହୁଁଛନ୍ତି କିଛି Demand କରିବେନି ଅଥଚ କନ୍ୟାଘର ସାରଙ୍କ ଚାହିଁବା ମୁତାବକ ଯୌତୁକ ଦେଇ ଦେବେ । |
| ଗଣେଶ୍ବର | ହଁ, ଠିକ୍ ସେୟା । |
| ମୁକୁନ୍ଦ | ହେଇଯିବ ସାର । |
| ଗଣେଶ୍ବର | ସତରେ ହେଇଯିବ ? ଧରାପଡିବିନିତ । |
| ବ୍ରଜ | ସବୁ ହେଇଯିବ । ଏଇତ ସାମାନ୍ୟ ସମସ୍ୟା । |
| ଗଣେଶ୍ବର | ତାହେଲେ କୁହନ୍ତୁ । ମୋତେ କଣ କରିବାକୁ ପଡିବ । |
| ମୁକୁନ୍ଦ | ପ୍ରଥମେ ଫିସ୍‌ଟା ଦାଖଲ କରିବାକୁ ପଡିବ । |
| ଗଣେଶ୍ବର | ଫିସ୍, କେତେ ପଡିବ । |
| ମୁକୁନ୍ଦ | ଦେଖନ୍ତୁ ଯୌତୁକ ହିସାବରେ ଆମେ ପ୍ରାୟ ପାଞ୍ଚ ଲକ୍ଷ ଟଙ୍କା କଗାଇଦେବୁ । ତା ଅନୁସାରେ ଫିସ୍‌ଟା ଧରନ୍ତୁ Ten Percent |
| ଗଣେଶ୍ବର | ମାନେ ପଚାଶ ହଜାର, ଏତେ ଗୁଡେ ଟଙ୍କା । |
| ମୁକୁନ୍ଦ | ତେବେ ଆପଣଙ୍କ ପାଇଁ 20 percent concession କରିବେବୁ । |
| ଗଣେଶ୍ବର | ଏତେ ଖର୍ଚ୍ଚ ଦେଇ ଯଦି Successful ନହୁଏ । |
| ବ୍ରଜ | ନ ହେବାର ପ୍ରଶ୍ନ ଉଠୁନି ସ୍ତାର । |
| ମୁକୁନ୍ଦ | ଏ ପର୍ଯ୍ୟନ୍ତ ସଦନ ଇତିହାସରେ ଏସବୁ ଘଟିନି । |
| ବ୍ରଜ | ଘଟିବାର ସଂଭାବନା ବହୁତ କମ । |
| ମୁକୁନ୍ଦ | ତା ଛଡା ଲାଭ ଛଡା ଏଥିରେ କ୍ଷତି ନାହିଁ । |
| ବ୍ରଜ | ହୁଏତ ଆପଣ ଯେତିକି ଯୌତୁକ ଭାବିଛନ୍ତି ତାଠାରୁ ଅଧିକ ମିଳିଯାଇ ପାରେ । |
| ମୁକୁନ୍ଦ | ପାଞ୍ଚ ଲକ୍ଷର ଫିସ୍ ଦାଖଲ କରି ଆପଣ ଆଠ ଲକ୍ଷ କି ଦଶ ଲକ୍ଷ ପାଇପାରନ୍ତି । |
| ଗଣେଶ୍ବର | ଆଁ ........ । |

ବ୍ରଜ — ଆପଣଙ୍କ କଥା ରହିବ । ମର୍ଯ୍ୟାଦା ସହକାରେ ବିବାହ ହେବ । ବିନା Demand ରେ କନ୍ୟାପକ୍ଷ ଆପଣଙ୍କୁ ଆଶାଠାରୁ ଅଧିକ ଧନଦେବେ ।

ଗଣେଶ୍ୱର — କିନ୍ତୁ କେମିତି । ମୁଁ ତ ବୁଝିପାରୁନି ।

ମୁକୁନ୍ଦ — ବ୍ରଜ ସୁନ୍ଦର ବାବୁଙ୍କର ଉନ୍ନତ ମଗଜ ।

ବ୍ରଜ — ମୁକୁନ୍ଦରାଜ ବାବୁଙ୍କର କୌଶଳପୂର୍ଣ୍ଣ କାର୍ଯ୍ୟ ।

ମୁକୁନ୍ଦ, ବ୍ରଜ — Hundred percent success.

ଗଣେଶ୍ୱର — ଆଁ ।

ପବନା — ପାଣି .... (ଗ୍ଲାସ ନେଇ)

ଗଣେଶ୍ୱର — ପାଣି, ଠିକ୍ କଥା ମୋର ପାଣି ଦରକାର ଥିଲା । (ପାଣିପିଇ) ଓଠଟା ବହୁତ ଶୁଖିଯାଉଥିଲା । ଓହୋ.

ପବନା — ଏଠିକି ଯିଏ ଆସନ୍ତି ତାଙ୍କର ଦରକାର ହୁଏ ସାର । ଲବଙ୍ଗ ନିଅନ୍ତୁ ସାର ଓ ଆଉ ସୁଖିବନି ।

ଗଣେଶ୍ୱର — ବାଃ ସୁନ୍ଦର ବ୍ୟବସ୍ଥା .. ।

ପବନା — ସେବା ସାର । ଆମର ଲକ୍ଷ୍ୟ ହେଲା ସେବା ... ।

ଗଣେଶ୍ୱର — ମୁଁ ଆପଣଙ୍କ ଫିସ୍ ଦେବାକୁ ରାଜି ଅଛି । କିନ୍ତୁ ପ୍ରଥମେ ମୋତେ କହନ୍ତୁ ସମାଧାନଟା ଆପଣ କଣ କରିବେ ।

ମୁକୁନ୍ଦ — ସେଇଟା Professional trick ଆଜ୍ଞା ସେଇଟା କହିଦେଲେ ସବୁ ଶେଷ ହୋଇଗଲା ।

ଗଣେଶ୍ୱର — ତା ମାନେ ମୁଁ ଟଙ୍କା ଦେବିନି ବୋଲି ଭାବୁଛନ୍ତି ।

ବ୍ରଜ — ନାଁ ତେବେ ଆମର ପଲିସି ଟା ଆମେ ଭାଙ୍ଗିପାରିବୁନି ।

ଗଣେଶ୍ୱର — ଦେଖନ୍ତୁ 50% ଟଙ୍କା Advance ଦେବାକୁ ପ୍ରସ୍ତୁତ ଅଛି । ମୋତେ କିନ୍ତୁ ଆପଣମାନଙ୍କୁ ଗ୍ୟାରେଣ୍ଟି ଦେବାକୁ ପଡିବ ।

ମୁକୁନ୍ଦ — ହେଲା ଗ୍ୟାରେଣ୍ଟି ଦିଆଯିବ ।

ବ୍ରଜ — କିନ୍ତୁ fifty percent ଗ୍ୟାରେଣ୍ଟି ।

ଗଣେଶ୍ୱର — ଠିକ୍ ଅଛି । ଦେଖନ୍ତୁ ମୁଁ ହଉଛି ଓକିଲ ଗଣେଶ୍ୱର ଦାସ । ନାଁଟା ଶୁଣିଥିବେ । ଯଦି ଠକାମିରେ ପଡେ Court କୁ ଟାଣି ନେବି କହୁଛି । ଆଉ କାମଟା କେମିତି ହବ କୁହନ୍ତୁ ।

ବୃଜ : ଆଚ୍ଛା ଆପଣଙ୍କର ପୁଅ ବର୍ତ୍ତମାନ କଉଠି ?

ଗଣେଶ୍ୱର ତାକୁ ଏଥିରେ ପୁରାନ୍ତୁନି । କହିଛି ପରା ସେ ତା ମା ଦଳରେ । ଯୌତୁକ ବିରୁଦ୍ଧରେ ।

ବୃଜ ସେ କଥା ମୁଁ ବୁଝୁଛି । ସେ କଣ କରନ୍ତି କଉଠି କାମ କରନ୍ତି ଆମର ଜାଣିବା ଦରକାର ।

ଗଣେଶ୍ୱର ଦିଲ୍ଲୀରେ ଗୋଟେ Private Company କାମ କରୁଛି । ଏଇ ବର୍ଷେ ହେଲା MCA Pass କରି ଚାକିରୀ କରୁଛି ।

ବୃଜ ତାହେଲେ ହୋଇଗଲା । ଆଛା ବାହାଘର ଅନ୍ତତଃ କେବେକୁ ଠିକ୍ କରୁଛନ୍ତି ।

ଗଣେଶ୍ୱର ଏଇ ମାସେ ଦୁଇମାସ ଭିତରେ । ତେବେ ଅବସ୍ଥା ଦେଖି ଘୁଞ୍ଚାଯାଇପାରେ ।

ବୃଜ ଟଙ୍କାଟା ଦାଖଲ କରନ୍ତୁ ।

ଗଣେଶ୍ୱର କେମିତି କଣ ହେବ କହୁନାହାଁନ୍ତି ।

ମୁକୁନ୍ଦ ସେଇତାକ ଦାମ ତ ପାଞ୍ଚହଜାର ଆଜ୍ଞା, ବୁଦ୍ଧିର ଖେଳ ଆପଣ ଲକ୍ଷପତି ହେବେ ।

ଗଣେଶ୍ୱର ଆପଣ ବୁଦ୍ଧି ଖେଳ କରି ମୋତେ ଲକ୍ଷପତି କରାଇ ଦେବେ ନିଜେ ଲକ୍ଷ୍ମୀପତି ନହୋଇ ଏ ଅଫିସ ଖୋଲୁଛନ୍ତି କାହିଁକି ।

ମୁକୁନ୍ଦ ଏ ସବୁ ଭଗବାନଙ୍କ ବୈଚିତ୍ର ଆଜ୍ଞା.. ଛାଗ ଦୁଗ୍ଧ ନ୍ୟାୟ ।

ଗଣେଶ୍ୱର ମାନେ ?

ବୃଜ ମାନେ ଛେଳି କ୍ଷୀର ଖାଇଲେ କୌଣସି ରୋଗ ବ୍ୟାଧି ହେବନି ! ତା ବୋଲି ଛେଳି ପେଟରେ ତ ତାର କ୍ଷୀର ଅଛି ସେ କୁଣି ରୋଗ ବ୍ୟାଧିରେ ପଡି ମରିଛୁ କେମିତି ।

ମୁକୁନ୍ଦ ସେମିତି ଏଇ ଛାଗ ଦୁଗ୍ଧ ନ୍ୟାୟରେ ଆମେ ଲକ୍ଷପତି ହୋଇ ପାରୁନୁ ସାର ।

ଗଣେଶ୍ୱର ମୋ ପାଖରେ କିନ୍ତୁ ଏତେ ଟଙ୍କା ନାହିଁ ।

ମୁକୁନ୍ଦ ଟଙ୍କା ହେଲେ ଆସିବେ । ଆମେ ଅଫିସ ୨୪ଘଣ୍ଟାଭିତରୁ ୧୮ଘଣ୍ଟା ଖୋଲା ରହିଛି ।

ବୃଜ ପାଖରେ କେତେ ଅଛି ?

ଗଣେଶ୍ୱର ପାଞ୍ଚ ଭିତରେ ଅଛି ।

ବୃଜ ହଉ ଦେଇ ଦିଅନ୍ତୁ ବାକିଟା ପରେ ଦେଇଯିବେ ।

(ଗଣେଶ୍ୱର ଟଙ୍କା ଦେଲେ - ମୁକୁନ୍ଦ ଭିତରକୁ ନେଇ ଚାଲିଗଲେ )

ଗଣେଶ୍ୱର — କଣ କରିବାକୁ ହେବ କହୁନାହାଁନ୍ତି ।

ବ୍ରଜ — ଆପଣଙ୍କୁ କିଛି କରିବାକୁ ପଡିବନି । ଦେଖନ୍ତୁ ଏଇ ପେପର News ଟା ଆମକୁ ସାହାଯ୍ୟ କରିବ ।

ଗଣେଶ୍ୱର — ଦେଖି ଦେଖି News ଟା କଣ ।

ବ୍ରଜ — (ପେପର ପଢ଼ି)ଆଇ.ଏ.ଏସ୍.ର ଫଳାଫଳ ପ୍ରକାଶ । ନୂଆଦିଲ୍ଲୀ । ଆଜି ଏଠାରୁ ଖବର ନେବାରେ ଜଣା ଯାଇଛି ଯେ ଏ ବର୍ଷ ଆଇ.ଏ.ଏସ୍. ଆଲାଏଡ୍ ଇତ୍ୟାଦି ପରୀକ୍ଷାରେ ୨୬୧ ଜଣ ଯୁବକ କୃତିତ୍ୱର ସହ ଉତ୍ତିର୍ଣ୍ଣ ହୋଇଛନ୍ତି । ତେବେ ସଂପୂର୍ଣ୍ଣ ବିବରଣୀ ସହ ନାମ ଆସନ୍ତା ୮ ତାରିଖରେ ପ୍ରକାଶ ପାଇବ ।

ଗଣେଶ୍ୱର — ଏହାଦ୍ୱାରା ମୋର ଲାଭ ।

ବ୍ରଜ — ଆପଣଙ୍କର ଭାବି ସମୁଦି ପରା ଯୋଗ୍ୟତା ଅନୁଶାରେ ଯୌତୁକ ଦେବେ ବୋଲି କହିଛନ୍ତି ।

ଗଣେଶ୍ୱର — ହଁ ସେଇଥିପାଇଁ ତ ଏତେ କଥା । ସେ ଯଦି ମୂଳରୁ କହି ଦିଅନ୍ତା ଯେ କଣ କଣ ଦେବ ମୁଁ କାହିଁକି ହଇରାଣ ହେଉଥାନ୍ତି ।

ବ୍ରଜ — ଠିକ୍ ଅଛି । ଆପଣ ବର୍ତ୍ତମାନଠୁ ପ୍ରଚାର କରନ୍ତୁ ଆପଣଙ୍କ ପୁଅ IAS ପାଇଛି ।

ଗଣେଶ୍ୱର — ଆଁ....... ।

ଗଣେଶ୍ୱର — ମିଛ କଥାଟା ପ୍ରଚାର କରିବି । ନିକଟରେ ନାଁ ଗୁଡାକ ପ୍ରକାଶ ପାଇଗଲେ ସବୁ ଗୋଳମାଳ ହୋଇଯିବ ।

ବ୍ରଜ — ନାଁ ଗୁଡାକ ଭିତରେ ଆପଣଙ୍କର ପୁଅର ନାଁ ଥିବ ।

ଗଣେଶ୍ୱର — ସେତ ସେ ପରୀକ୍ଷା ଦେଇନି ଥିବ କେମିତି ।

ବ୍ରଜ — ସେଇତକ ବୁଦ୍ଧି ଆମର । ପେପରରେ କେମିତି ବାହାରିବ ଆମରି କାମ । ଯାହା Information ଦରକାର ମୁକୁନ୍ଦ ବାବୁଙ୍କୁ ଦେଇ ଦିଅନ୍ତୁ । ଏଇ IAS କଥାଟା ବର୍ତ୍ତମାନ ପ୍ରଚାର କରନ୍ତୁ । ତା ପରେ ଅନ୍ୟ ତିନି ଚାରି ଯାଗାରୁ ପ୍ରସ୍ତାବ ଆସିବା କଥା ଭାବି ସମୁଦିକୁ କୁହନ୍ତୁ ।

ଗଣେଶ୍ୱର — କିନ୍ତୁ ଧରାପଡିଗଲେ ।

ବ୍ରଜ — Chance ନାହିଁ ।

ମୁକୁନ୍ଦ : କାମଟା କେମିତି ହବ ଆମର ଦାୟିତ୍ୱ । ବାକି ଟଙ୍କାଟା ଆମେ ଯେମିତି ଚମ୍ପଲ ପାଇ ଯାଉ ।

ଗଣେଶ୍ୱର କାମଟା ଦେଇଯିବତ ।

ବ୍ରଜ ସବୁ ହୋଇଯିବ । ପୁଅ ସେଇଠି ବାହାହବ, ଆପଣ କିଛି Demand କରିବେନି । କିନ୍ତୁ ଲକ୍ଷ୍ୟ ଲକ୍ଷ୍ୟ ଟଙ୍କାର ସମ୍ପତ୍ତି ହାସଲ କରିବେ ।

ମୁକୁନ୍ଦ ପୁଅ ଯାହାକୁ ପସନ୍ଦ କରିଛି ସେଠି ବାହା ହୋଇ ଖୁସ୍, ଆପଣଙ୍କର ସମାଜସେବି ସ୍ତ୍ରୀ- ଆପଣ ଯୌତୁକ ଦାବି କରୁନାହାଁନ୍ତି ବୋଲି - ଖୁସି, ଆପଣ ପଦାରେ ପଡିବେନି ଅଥଚ ଗାଡି, ଫ୍ରିଜ୍, ୱାସିଂମେସିନ, କଲର ଟିଭି, Godrej ଆଲମିରା ସବୁ ଆସି ଘରେ ଥୁଆ ହୋଇଯିବ ।

ବ୍ରଜ ଆପଣ କାଦୁଅରେ ପଶିଯିବେ ଅଥଚ ଗୋଡରେ ବିନ୍ଦୁଏ କାଦୁଆ ଲଗାଇବାକୁ ଆମେ ନେବୁନି ।

ମୁକୁନ୍ଦ ଥଣ୍ଡା ଜଳରେ ବୁଡ ମାରିବେ ଅଥଚ ସର୍ଦ୍ଦିକାଶ, ଛିଙ୍କ କିଛି ହବନି ।

ଗଣେଶ୍ୱର ସାପ ମରିବ ଅଥଚ ବାଡି ଭାଙ୍ଗିବନି । ମୋ ଘରେ ସମ୍ପତ୍ତି ଭରିଯିବତ ?

ବ୍ରଜ, ମୁକୁନ୍ଦ ହଁ । (ସମସ୍ତେ ହସି ଉଠନ୍ତି)



# ଦ୍ୱିତୀୟ ପାଦ

(ସେଇ ଘର । ଅନ୍ୟ ଦିନର ଘଟଣା)

ମୁକୁନ୍ଦ — ସାର ସେ ଗଣେଶ୍ୱର ବାବୁଙ୍କ ପୁଅ ଆଇ.ଏ.ଏସ୍. କଥା ପେପରରେ ବାହାରିଗଲା ପରେ କନ୍ୟାପକ୍ଷ ସବୁକଥାରେ ରାଜି ହୋଇ ଯାଇଛନ୍ତି ।

ବ୍ରଜ — ସବୁ କଥାରେ ମାନେ ?

ମୁକୁନ୍ଦ — ମାନେ ପୁଅ ଘର ଯାହା ଯାହା ଚାହୁଁଚନ୍ତି ସେ ଗାଡି, ରଙ୍ଗିନ୍ ଟିଭି, ଫ୍ରିଜ୍, ୱାସିଙ୍ଗ ମେସିନ୍, AC, ୱାଟର ଫିଲଟର ଇତ୍ୟାଦି ଇତ୍ୟାଦି । ସେ ସବୁ କିଣା କିଣି ପାଇଁ ଝିଅଘର ପରା ତାଙ୍କର ଜମି ବିକ୍ରୀକରିବା ଆରମ୍ଭ କରିଦେଲେଣି ।

ବ୍ରଜ — ସତେ ? ଆପଣ ଏ ସବୁ ଖବର କାହାଠୁ ପାଇଲେ । କଣ ଗଣେଶ୍ୱର ବାବୁଙ୍କ ସହିତ ଦେଖା ହୋଇଥିଲା?ବାକିଟଙ୍କା ନେଇ ଆସିଲନି ।

ମୁକୁନ୍ଦ — ଚାରି ଚାରିଥର ଯାଇ ଫେରିଲିଣି, ଆଜ୍ଞା, ଘରେ ଥାଇବି ମନା କରିଦେଉଛନ୍ତି । କିନ୍ତୁ ୟା ଭିତରେ ପଅର ଦିନ ହେଉଛି ନିର୍ବନ୍ଧ ଆସନ୍ତା ସପ୍ତାହରେ ବାହାଘର ।

ବ୍ରଜ — ସେ ସବୁ ସତ,ଯେ ହେଲେ ଆପଣ ଏ ଖବର କେଉଁଠୁ ସଂଗ୍ରହ କଲେ ।

ମୁକୁନ୍ଦ — କନ୍ୟାର ମାମୁଁଙ୍କ ସହିତ ମୋ ଆଗରୁ ପରିଚୟ ଅଛି ତାଙ୍କୁ ପଚାରି ସବୁ ବୁଝିଗଲି । ଆପଣଙ୍କର ବୁଦ୍ଧି ଯୋଗୁଁ ଗଣେଶ୍ୱର ବାବୁ ଲକ୍ଷ ଲକ୍ଷ ଟଙ୍କାର ସମ୍ପତ୍ତି ପାଇଯିବେ ଆଜ୍ଞା ହେଲେ ସେ କନ୍ୟା ଘର ଜମିବାଡି ବିକ୍ରିକରି ଦାଣ୍ଡର ଭିକାରୀ ହୋଇଯିବେ ।

ବ୍ରଜ — ହଁ, ଜଣକୁ ଲକ୍ଷ୍ୟପତି କରିବାକୁ ଯାଇ ଆଉ ଜଣକୁ ଭିକାରୀ ହେବାକୁ ପଡିବ । ଗଣେଶ୍ୱର ବାବୁ ମଧ୍ୟ ଆମକଥା ଭୁଲିଗଲେ । ବାକିୟା ଟଙ୍କା ପଠାଇବା କଥା ଭୁଲିଗଲେ ।

ମୁକୁନ୍ଦ — ମୁଁ ଯେତେଥର ତାଙ୍କ ଘରକୁ ଗଲି କେବେ ଦେଖା ଦେଲେନି ଆଜ୍ଞା, ଓକିଲ ଲୋକତ.. ଆମ ସହିତ ଚାଲାକି ଖେଳିବାରେ ଲାଗିଛନ୍ତି ।

ବ୍ରଜ — ପ୍ରଜାପତି ଘଟସୁତ୍ର ସେବା ସଦନ ସହିତ ଚାଲାକିମାନେ ବ୍ରଜସୁନ୍ଦର ସହିତ ଚାଲାକି ।

ମୁକୁନ୍ଦ     ଆଜ୍ଞା ଆମ ବୁଦ୍ଧିରେ ଲକ୍ଷ୍ମୀପତି ହେବାକୁ ଯାଇ ଆମକୁ ପୁଣି ଚାରିଶବିଶ୍ ଦେଖାଉଛନ୍ତି ଏମିତି ବାଟ କରନ୍ତୁ ଯେମିତି ବୁଢ଼ା ଠିକ୍ ବୁଦ୍ଧି ଶିଖିବ ।

ବ୍ରଜ     ହୁଁ, ମୋତେ ସେଇକଥା ଚିନ୍ତା କରିବାକୁ ପଡିବ । କୌଣସି ଉପାୟରେ ଏ ବୃଦ୍ଧ ଟାଉଟର କବଳରୁ ଝିଅଘରକୁ ବଞ୍ଚେଇବାକୁ ପଡିବ ।

ମୁକୁନ୍ଦ     ନହେଲେ ଝିଅଘର ଦାଣ୍ଡର ଭିକାରି ହେଇଯିବେ ଆଜ୍ଞା ।

ବ୍ରଜ     ମୁକୁଳ ରାଜ ?

ମୁକୁନ୍ଦ     ସାର ।

ବ୍ରଜ     ବୁଦ୍ଧି ଯୁଟିଯାଇଛି ।

ମୁକୁନ୍ଦ     କୁହନ୍ତୁ ସାର । ସାଙ୍ଗେ ସାଙ୍ଗେ କାମରେ ଲଗେଇ ଦେବି ।

ବ୍ରଜ     ଝିଅର ବାପାଙ୍କୁ ଯାଇ ଖବର ଦିଅ ।

ମୁକୁନ୍ଦ     ଏଇ IAS ପାଇବା କଥା ମିଛ ବୋଲି କହି ଦେଲେ ଅହିଁରି ତ ମାର ?

ବ୍ରଜ     No, ତାହେଲେ ସବୁ ବିଭ୍ରାଟ ହୋଇଯିବ, ଆମ କାମଟି ମଧ୍ୟ ସେପରିକି, Business ଡାଉନ୍ ହୋଇଯିବ । ତମେ ବରଂ ଗୋଟେ କାମ କର, ଝିଅର ମାମୁଁ ସହିତ ତୁମର ପରିଚୟ ଅଛି ବୋଲି କହୁଛ ।

ମୁକୁନ୍ଦ     ଆଜ୍ଞା ହଁ ସେ ତ ସେ ବାହାଘର କଥା ସବୁ ବୁଝୁଛନ୍ତି । ଝିଅର ବାପା ବନମାଳୀ ବାବୁ ତାଙ୍କ ହାତରେ ସବୁ ବାହାଘର ଖର୍ଚ୍ଚ କରାଉଚନ୍ତି ।

ବ୍ରଜ     ଯାଅ । ତାଙ୍କୁ ଏଠିକି ଧରିଆଣ । ତାଙ୍କୁ କୁହ ଆମର ସାହାଯ୍ୟ ନେଲେ ସେ ଲକ୍ଷ ଲକ୍ଷ ଟଙ୍କା ଖର୍ଚ୍ଚରୁ ବଞ୍ଚିଯିବେ ।

ମୁକୁନ୍ଦ     କାଲି ତାକି ଆଣୁଛି ଆଜ୍ଞା, କାଲି First hourରେ ଧରି ଆଣିବି ।

ପବନା     ସେଇ ବାବୁ ଆସିଲେଣି ଆଜ୍ଞା

ମୁକୁନ୍ଦ     କେଉଁ ବାବୁ?

ପବନା     ଘୋଡା (ହଁ ହଁ ହସି) ।

ମୁକୁନ୍ଦ     Hurclus ମ୍ୟାଖ୍ଗୁଡ

(ହରକ୍ଲୁଏସ ବାବୁଙ୍କର ପ୍ରବେଶ)

ଆସନ୍ତୁ ଆସନ୍ତୁ ହରକ୍ଲୁଏସ ବାବୁ ଆସନ୍ତୁ ।

ହର     ବହୁତ ଧନ୍ୟବାଦ ଆପଣମାନଙ୍କୁ ସତରେ ମୁଁ କେମିତି କୃତଜ୍ଞତା ଜଣାଇବି ବୁଝିପାରୁନି ।

ମୁକୁନ୍ଦ — ଝିଅର ଓଜନ କମିଲା ତା ହେଲେ ! କମିବନି, Dr. Hanga ଲେଖିଛନ୍ତି ବହୁ ପରିକ୍ଷୀତ । ଆଚ୍ଛା ଆପଣଙ୍କ କନ୍ୟା ତା ହେଲେ ଗୋଟାଏ ମାସ ଘୋଡା ଦୌଡାଇ Result ପାଇଯାଇଛନ୍ତି ।

ପବନା — ନହେଲେ ଏତେ ଖୁସି କାହିଁକି ହୁଅନ୍ତେ ।

ମୁକୁନ୍ଦ — ଗୋଟେ ମାସ ଘୋଡା ଦୌଡରେ କେତେ ଓଜନ କମିଲା ?

ହର — ୧୦ ପାଉଣ୍ଡ ।

ବ୍ରଜ — ୧୦ ପାଉଣ୍ଡ ? ମୁଁ ୧୦ ପାଉଣ୍ଡ କହିଥିଲିନା, ଆପଣଙ୍କର କନ୍ୟା ତାହେଲେ ଟିକିଏ slim ହୋଇ ଯାଇଥିବେ ।

ହର — କାହିଁକି ?

ବ୍ରଜ — ୧୦ ପାଉଣ୍ଡ ଓଜନ କମିଚି ବୋଲି କହୁଛନ୍ତି ।

ହର — ହଁ ଗୋଟେ ମାସ ଘୋଡା ଦୌଡରେ ୧୦ ପାଉଣ୍ଡ ଓଜନ କମିଛି ସତ କିନ୍ତୁ ମୋ ଝିଅର ନୁହେଁ !

ମୁକୁନ୍ଦ — ଝିଅର ନୁହେଁ ମାନେ ।

ହର — ଘୋଡାର । ଘୋଡାର ଓଜନ ୧୦ ପାଉଣ୍ଡ କମିଛି ।

ବ୍ରଜ — ନା ଆପଣ ମିଛ କହୁଛନ୍ତି । ଆପୁ ଆନ୍ତୁ [illegible] କୃତଜ୍ଞତା ଜଣାଇଲେ ଯେ ।

ମୁକୁନ୍ଦ — ଧନ୍ୟବାଦ ବି ଜଣାଇଲେ ।

ହର — ମୋ ଝିଅର ଓଜନ କମୁକି ନକମୁ ପୁଅ କିନ୍ତୁ ମୋ ଝିଅକୁ ପସନ୍ଦ କରିଛି ଆଉ ଗତକାଲି ନିର୍ବନ୍ଧ ବି ସରିଯାଇଛି ।

ବ୍ରଜ — କେମିତି ?

ହର — ଘୋଡା ଦୌଡ ଭିତରେ ଦିନେ ଝିଅ ମୋର ଘୋଡାରୁ ପଡିଯାଇ ଯଖମ ହୋଇଗଲା । ତାକୁ କିଛି ଦିନ Bedରେ ରହିବାକୁ ପଡିଲା । ଅନେକ କଷ୍ଟ ପାଇଲା । ପୁଅ ଝିଅର ଏସବୁ ଅବସ୍ଥା ଦେଖି କହିଲା - ଡାର୍ଲିଂ ତୁମେ ମୋ କଥା ଅନୁଶାରେ ଓଜନ କମେଇବାକୁ ଘୋଡା ଦୌଡ କରିଲ । ମୋର ଯୋଗୁ ପଡି ଯଖମ ହୋଇ Bed ridden ହେଲ । ଆଉ ତୁମ ପ୍ରେମର ପରୀକ୍ଷା ଦରକାର ନାହିଁ ତୁମେ ହେଉଛ ପ୍ରକୃତରେ ମୋର ଜୀବନସାଥି ପାଇଁ ଯୋଗ୍ୟ । ବାଶ୍ Engagement ହୋଇଗଲା ।

ମୁକୁନ୍ଦ — ମୁଁ କହୁନି ହରକ୍ଯୁଏସ ବାବୁ, ଆମର ଏଠିକି ଆସି କୌଣସି ସମସ୍ୟା ସମାଧାନ ହୋଇ ରହିନି ।

ପବନା — ତା ମାନେ ଘୋଡା ତାର କାମ ଦେଖେଇଛି ।

ମୁକୁନ୍ଦ — ଚୁପ୍ । ଘୋଡା ତା କାମ ଦେଖାଇନି ବରଂ ଆମ MD.ଙ୍କର ବୁଦ୍ଧି ତାର କାମ ଦେଖେଇଛି ।

ହର — ସେ ଯାହା ହେଉ ଏଇ ନିଅନ୍ତୁ ନିମନ୍ତ୍ରଣ ପତ୍ର । ଝିଅର ମୋର ବାହାଘର fixed ହୋଇଯାଇଛି ଆସିବେ ନିଶ୍ଚୟ ତାରିଖ ହେଉଛି ଆସନ୍ତା ୧୧ ବୁଧବାର ରାତ୍ର ୯ଘଣ୍ଟା । ଆସିବେ ନିଶ୍ଚୟ ।

ବ୍ରଜ, ମୁକୁନ୍ଦ — ନିଶ୍ଚୟ ନିଶ୍ଚୟ ।

ହର — ତେବେ ଆଉ ଗୋଟେ କଥା, ପୁଅ କଥା କଣ କରିବା ସେ ଦିନକୁ ଦିନ ମୋଟା ହେଇ ଚାଲିଛି ।

ମୁକୁନ୍ଦ — ସେଇ ଘୋଡା ଚଢାନ୍ତୁ – ସେ ବି କେଉଦିନ ଖସିଗଡି Bed Ridden ହୋଇଗଲେ ଝିଅ ଭଳି Slim ହେଇଯିବ ।

ହର — ନାଁ ଝିଅଟା ଖାଲି ଘୋଡା ଉପରେ ଚଢୁଥିଲା ଯେ ପଡିଗଲା । ପୁଅ କିନ୍ତୁ ଜିନ୍ ଫିନ୍ ଚଢେଇ ବଡ ମଝବୁତ୍ ଭାବରେ ବସୁଛି । ଘୋଡା ପଡି ଯାଇ ଦୁର୍ବଳ ହୋଇ ଯାଉଛି ପଛେ ତାର କିଛି ପରିବର୍ତ୍ତନ ହେଉନି । ଆପଣଙ୍କ Formula ଠିକ୍ କାମ କରୁନି ।

ମୁକୁନ୍ଦ — କାମ କରିବ ସାର । Fees ଦାଖଲ କରନ୍ତୁ ।

ହର — ମାନେ କହୁଛି ଦିନକୁ ଦିନ ପୁଅ ବଦଳରେ ଘୋଡାର ଓଜନ କମୁଛି । ଏମତି ଠକାମି କାମ ବତାଇବାକୁ ପୁଣି Fees ଦେବି ।

ବ୍ରଜ — ଦେଖନ୍ତୁ ମାଖୁଡୁ ବାବୁ ବ୍ୟସ୍ତ ହୁଅନ୍ତୁନି । ଆପଣ ଆମର ଜଣେ ସହୃଦ Costomer ତେଣୁ Credit ରେ ଆମେ ପୁଅର ଓଜନ କମାଇବାର ବୁଦ୍ଧିଟା ବତେଇ ଦେଉଛୁ । ସେଇ Dr. Hanga ଙ୍କ ଲିଖିତ health is wealth ବହିରେ ଅଛି ।

ମୁକୁନ୍ଦ — କାଢି ଦେଉଛି ସାର । (ବହି ବଢେଇ)

ବ୍ରଜ — ଘୋଡା ଆପଣଙ୍କ ପୁଅର ଓଜନ ବୋହି ନପାରି ଦୁର୍ବଳ ହୋଇଯାଉଛି । ବର୍ତ୍ତମାନ ପୁଅର ଓଜନ କମାଇବାକୁ ହେଲେ ତା ଉପରେ ଘୋଡା ଚଢିବାକୁ ପଡିବ ।

ହର — ଘୋଡା ପୁଅ ଉପରେ ଚଢିବ।

ବ୍ରଜ — ଓଃ ଆପଣ ବୁଝୁ ନାହାଁନ୍ତି। ଘୋଡା ଆପଣଙ୍କ ପୁଅକୁ ବୋହି ବାଟଚାଲୁଥିଲା ଏବେ ଆପଣଙ୍କ ପୁଅ ଘୋଡାକୁ ବୋହି ବାଟ ଚାଲିବେ।

ହର — ମାନେ?

ବ୍ରଜ — ମାନେ ଆପଣଙ୍କ ପୁଅ ନିଜର ଓଜନ କମାଇବା ପାଇଁ କାନ୍ଧରେ ଘୋଡା ଓଜନର ଭାର ନେଇ ଚାଲିବ। ଦେଖିବେ ଗୋଟେ ମାସ ଭିତରେ ତାଙ୍କର ଓଜନଟା ପାଣି ଭଳି ବୋହିଯିବ।

ହର — ସେ କଣ ସେମିତି କରିବାକୁ ରାଜି ହେବ? ଆଉ କିଛି ଅନ୍ୟ ବାଟ କୁହନ୍ତୁ।

ମୁକୁନ୍ଦ — ସାର କହିବେ - ଠିକ୍ ବାଟ କହିଦେବେ ତେବେ ପ୍ରଥମେ ଆପଣଙ୍କ ଝିଅର ବାହାଘର ହେଇଯାଉ ତା ପରେ ପୁଅକୁ ଧରି ଏଠିକି ଚାଲି ଆସିବେ । ସାର ଆମର ତାକୁ ଦେଖି ତା ଓଜନ କମାଇବାର ସୂତ୍ରଟା ବାହାର କରିଦେବେ ।

ହର — ଠିକ୍ ଅଛି । ଆପଣମାନେ କିନ୍ତୁ ଝିଅ ବାହାଘର Recepetionକୁ ଆସିବେ ।

ପବନା — ମୋତେ କିନ୍ତୁ ସେ ଦିନ ଡବଲ ମିଠା ଖୁଆଇବେ ସାର ।

ହର — ଡବଲ ନୁହେଁ ଛବଲେ ମିଠା ଖୁଆଇବି ।

ପବନା — ଛବଲେ ମିଠା ମାନେ ?

ହର — ଛବଲ ପେଟି ଦେଖିନାହାଁନ୍ତି ସେଇଥିଲେ ଛବଲେ ମିଠା ଖୁଆଇବି। ଆସିବେ କିନ୍ତୁ । (ସମସ୍ତେ ହସି ଉଠିଲେ)

ସମସ୍ତେ — ନିଶ୍ଚୟ ସାର ନିଶ୍ଚୟ ।



# ତୃତୀୟ ପାଦ

(ସେଇଘର । ବ୍ରଜସୁନ୍ଦର ଓ ମୁକୁନ୍ଦରାଜ ଅଛନ୍ତି ବ୍ୟସ୍ତଭାବରେ ପଦଚାରଣ କରୁଛନ୍ତି ମି. ବନବିହାରୀ)

ବନବିହାରୀ — ଆପଣମାନେ କଣ କହିବାକୁ ଚାହାଁନ୍ତି ମୁଁ ଲଟେରି ପାଇଯିବି ପୁଣି ଲକ୍ଷ ଲକ୍ଷ ଟଙ୍କାର ?

ମୁକୁନ୍ଦ — ହଁ ସାର, ମୁଁ ଆପଣଙ୍କର ବହୁଦିନର ପରିଚିତ । ମୁଁ ମିଛ କହିବି?

ବନ — ନା ସବୁ ସତ ଗୁଡାକ କହିଦେଉଛ । କି ଓ ଲଟେରି, ମିରାକିଲ୍, ହଟଚମକ ଏ ସବୁରେ ମୋର ମୂଳରୁ ବିଶ୍ୱାସ ନାହିଁ । ସେସବୁ ପାଇଁ ଟିକେଟ କିଣିବା ମୋର ଜୀବନରେ ହେଇନି । ମୁଁ କେମିତି ଲଟେରି ପାଇଯିବି ।

ବ୍ରଜ — ପାଇଯିବେ ଆଜ୍ଞା, ଆପଣ ଧର୍ଯ୍ୟଧରି ବସିଲେ କେମିତି ପାଇବାକୁ ହେବ ଆମେ କହିଦେବୁ । ଦୟାକରି ବସନ୍ତୁ ।

ମୁକୁନ୍ଦ — ବସନ୍ତୁ ବନବିହାରୀ ବାବୁ । ଶାନ୍ତ ମନରେ ଆମର ବ୍ରଜସୁନ୍ଦର ବାବୁ ଯାହା କହୁଛନ୍ତି ଶୁଣନ୍ତୁ ।

ବନ — ବସୁଛି । ଦେଖନ୍ତୁ ମୋତେ ଏଠିକି ଡାକିଆଣି ଯାହା ସମୟ ନେଲେଣି ନେଲେଣି ଯାହା କହିବା କଥା ଚଞ୍ଚଳ କହନ୍ତୁ । ମୋ ଭାଣିଯୀର କାଲି ନିର୍ବନ୍ଧ । ନିର୍ବନ୍ଧ ଦିନ ପୁଅର ବାପା ଚାହିଁଛନ୍ତି । ସବୁ ଯୌତୁକ ଜିନିଷ ଯେମିତି ପ୍ୟାକ ହୋଇଯାଏ । ସେ ସେକଥା ଦେଖିବେ ।

ମୁକୁନ୍ଦ — ଏକଥା ଆପଣମାନେ କଣ ପୁଅର ବାପାଙ୍କ ଶୁଣିଛନ୍ତି ନା ଆଉ କା ପାଖରୁ ମୋର ବିଶ୍ୱାସ ସେ କେବେ କହି ନଥିଲେ ।

ବନ — ନା ଗଣେଶ୍ୱର ବାବୁ ଆମରକୁ କେବେ Direct କହିନାହାଁନ୍ତି । ଅନ୍ୟ କାହା ଜରୀଆରେ ଏ ଖବର ଆସିଛି । ସେଇଥିପାଇଁ ପ୍ୟାକ୍ କରିବାକୁ ପଡିବ ।

ବ୍ରଜ — ସେ କଥା ଆପଣଙ୍କୁ କିଛି କରିବାକୁ ପଡିବନି ଆମେ କରିବୁ ।

ବନ — ମାନେ ?

ବ୍ରଜ — ଆପଣଙ୍କର ଭାଣିଜୀର ଏଇ ସହରରେ ଶ୍ରୀଯୁକ୍ତ ଗଣେଶ୍ୱର ବାବୁଙ୍କ ପୁଅ ସହିତ ଆସନ୍ତା କାଲି ନିର୍ବନ୍ଧ ହେବ । ଯୌତୁକ ଜିନିଷ ନିର୍ବନ୍ଧ ପୂର୍ବରୁ ପ୍ୟାକ୍ ହୋଇ ଧୁଆ ହୋଇଥିବ । ଆମେ ପ୍ୟାକ କରିବୁ ।

ବ୍ରଜ — ମାନେ ମୁଁ ତ କିଛି ବୁଝି ପାରୁନି ।

ବ୍ରଜ — ଆମେ Supply କରିବୁ ଆପଣ ଆମକୁ order ଦେବେ ।

ବନ	କଣ ଢବରଦଛି । ମୁଁ ସିଆଡେ ବିଭିନ୍ନ ଦୋକାନ ବୁଲି ଜିନିଷ ସବୁ ଠିକ୍ କରିସାରିଲିଣି ।

ବୃଜ	ସେ ସବୁ ଜିନିଷ କିଛି ଦବା ଦରକାର ନାହିଁ । ଆପଣଙ୍କର ଭାଣିଜୀ ଉଚ୍ଚ ଶିକ୍ଷିତା, ତା ପରେ College ରେ ଅଧ୍ୟାପିକା ମାସକୁ ଟ ୩୦,୦୦୦ଙ୍କା ଦରମା ପୁଣି ଯୌତୁକ କାହିଁକି ?

ବନ	ପୁଅ ଯେ IAS । ତାକୁ ଜ୍ୱାଇଁ କରିବାକୁ ଲୋକେ ଲକ୍ଷ ଲକ୍ଷ ଟଙ୍କା ଧରି ବୁଲୁଛନ୍ତି ।

ବୃଜ	ମିଛ । ଏକଥା କେବଳ ଆପଣ ଅନ୍ୟମାନଙ୍କ ମୁହଁରୁ ଶୁଣିଥିବେ । ସବୁ ମିଛ ।

ବନ	କଣ ମିଛ?

ବୃଜ	ସବୁ ମିଛ, ନକଲି IAS ।

ବନ	ମାନେ ?

ମୁକୁନ୍ଦ	ମାନେ କିଛି ନୁହେଁ ଆଜ୍ଞା ଗଣେଶ୍ୱର ଅନ୍ୟମାନଙ୍କ ଦ୍ୱାରା ପୁଅକୁ IAS ପାଇଛନ୍ତି ବୋଲି ପ୍ରଚାର କରିଛନ୍ତି । ଆପଣଙ୍କର ଭିଣୋଇଙ୍କ ଠାରୁ ମାନ ଝଡେଇବା ପାଇଁ । ପ୍ରକୃତ ସେ କେବେ ତାଙ୍କ ପୁଅ IAS ପାଇଛି ବୋଲି କହିନଥିବେ ।

ବନ	ନାନା ମୁଁ ନିଜେ ପେପରରେ ଦେଖିଛି । ଶ୍ରୀମାନ ଭୈରବ ଗୌରବ ଦାସ ନାଁ ବି ମୁଁ ନିଜେ ପଢିଛି । ସେ କେବେ କହିନାହାଁନ୍ତି ।

ବୃଜ	ଭୈରବ ଗୌରବ ଦାସ ବାହାରିଛି ସତ ହେଲେ ସେ IAS ପାଇ ନଥାଇ ପାରନ୍ତି ।

ବନ	ଆପଣମାନେ ଏସବୁ କେମିତି ଜାଣିଲେ ?

ବୃଜ	ସେ ସବୁ ଖବର ଆମେ ସଂଗ୍ରହ କରିଛୁ । ଆଜ୍ଞା ଆପଣଙ୍କର ଭାଣିଜିଙ୍କର ଗଣେଶ୍ୱରବାବୁ ପୁଅଙ୍କ ସହିତ ବନ୍ଧୁତା ଅଛି, ତାଙ୍କୁ ପଚାରିଦେଲେ ଜାଣିବେନି ।

ବନ	ସେ ତ ଦିଲ୍ଲୀରେ କାଲି ଆସି ଏଠି ପହଞ୍ଚିବ । କିନ୍ତୁ ଏ ଠକାମି କଥା ମୋ ଭିଣୋଇ ଶୁଣିଲେ ତାଙ୍କ Blood pressure ବଢିଯିବ । IAS କଥା ଶୁଣି ସେ ପାଞ୍ଚମାଣ ଜମିବିକ୍ରୀ କରିବାକୁ ଠିକ୍ କରିଛନ୍ତି, କାଲି ଟଙ୍କା ମିଳିବ, ଟିଭି, ଫ୍ରିଜ ଇତ୍ୟାଦି ଇତ୍ୟାଦି କିଣାଯିବ ।

ବୃଜ	ସେଇଥିପାଇଁ କହୁଥିଲି ଆପଣ ଠକେଇ ପାଇଯିବେ । ଲକ୍ଷ ଲକ୍ଷ ଟଙ୍କାର ଜିନିଷ କିଛି କିଣିବା ଦରକାର ନାହିଁ ।

ବନ : କେମିତି ?

ବ୍ରଜ ଆପଣଙ୍କ ପୁଅଘର କିଛି ମୌଖିକ Demand କରିନାହାନ୍ତି ବରଂ IAS ର ଚାଲ ଦେଖେଇ ପ୍ରକାରନ୍ତରେ ନିର୍ବନ୍ଧ ଦିନ ଜିନିଷ ଦେଖିବେ ବୋଲି ଖବର ଦେଇଛନ୍ତି । ସେ ଆପଣଙ୍କୁ ଠକିଛନ୍ତି, ଆପଣ ତାଙ୍କୁ ଠକି ଦେବେ ।

ବନ କିନ୍ତୁ କେମିତି ଠକି ଦେବି ।

ବ୍ରଜ ଦେଖନ୍ତୁ ପୁଅ, ପୁଅର ମା ସମସ୍ତେ ଯୌତୁକ ବିରୁଦ୍ଧରେ । କେବଳ ଗଣେଶ୍ୱର ବାବୁ ବୁଢାଲୋକ ଯୌତୁକ ପାଇଁ ଅଣ୍ଟାଭିଡି ବସିଛନ୍ତି । ମୁହଁରେ କହିବାର ସାହସ ନାହିଁ ଅଥଚ ଠକାମିରେ ନେବାକୁ ଆଶା ।

ମୁକୁନ୍ଦ ଏମିତି କ୍ଷେତ୍ରରେ ମିଆଁ ବିବି ରାଜି କିନ୍ତୁ ବୁଢାବାପା ଗୋଳମାଳ କରୁଛି । ତେଣୁ ତାକୁ ପାନେ ଦେବାକୁ ହେଲେ ଆପଣ ଆମ କଥା ଅନୁସାରେ କାମ କରିବାକୁ ପଡିବ ।

ବ୍ରଜ ହଁ, ସେ ଯେମିତି ଠକିଛନ୍ତି ଆପଣ ସେମିତି ନିର୍ବନ୍ଧ ଦିନ, ଟିଭି, ଫ୍ରିଜ୍, ଗ୍ୟାସଚୁଲ୍ଲା, ୱାସିଙ୍ଗ ମେସିନ ସବୁଥିର ଖାଲି ପ୍ୟାକିଂ ଖୋଳ ଗୁଡାକ ଆଣି ଘରେ ସଜେଇ ଦେବେ । ବୁଢାତ ଆଉ ଭିତରେ କଣ ଅଛି ଦେଖିବନି । ବାହାରୁ ବାହାରୁ ସୁନ୍ଦର ସୁନ୍ଦର କାଗଜ ଖୋଳ ଦେଖି ବାୟା ।

ବନ କିନ୍ତୁ ପ୍ରକୃତରେ ଯଦି ସେ IAS ପାଇଯାଇଥାଏ ?

ମୁକୁନ୍ଦ ସେକଥା ଆମକୁ ଛାଡନ୍ତୁ । ଠିକ୍ ବାହାଘର ଦିନ ହାତ ଗଣ୍ଠି ପଡିଲା ବେଳକୁ ଦେଖିବେ ଖବର କାଗଜରେ ସଂଶୋଧନ ଫର୍ଦ୍ଦ ବାହାରି ପଡିଥିବ । ଯଦି ପୁଅ ସତରେ IAS ପାଇଥିବ ତେବେ ବାହାଘର ପରେ ସବୁ କିଣା କିଣି କରି ଦେଇଦେବେ ।

ବ୍ରଜ ଏବେ ଖାଲି ଢବଲ ରହିବ । ତା ଭିତରେ ଅସଲ ଜିନିଷ ନଥିବ ।

ବନ ସତକଥା ଆପଣ ଠିକ୍ କହୁଛନ୍ତି । ଭିଣୋଇ ମହାଶୟଙ୍କର ଚାରୋଟି କନ୍ୟା । ଗୋଟିଏ ବାହାଘରେ ପାଞ୍ଚମାଣ ଜମି ବିକିଦେଲେ ଆଉ ଚାରୋଟି ପାଇଁ କିଛି ରହିବନି । ସତରେ ଆପଣ ମୋ ଭିଣୋଇକୁ ରକ୍ଷା କରିଦେଇଛନ୍ତି ।

ମୁକୁନ୍ଦ ମୁଁ କହୁନଥିଲି ବନବିହାରୀବାବୁ ଆପଣ ଲଟେରି ପାଇଯିବେ ।

ବନ ଆପଣମାନେ ଯେମିତି ଭାବରେ ସାହାଯ୍ୟ କଲେ ସେକଥା ମୁଁ ବୁଝୁଛି । କେମିତି ଆପଣମାନଙ୍କୁ ଧନ୍ୟବାଦ ଜଣେଇବି ଜାଣିପାରୁନି ।

ବ୍ରଜ ଧନ୍ୟବାଦ ଜଣେଇବା ଦରକାର ନାହିଁ ସାର, ଆମେ ହେଲୁ ଲଟେରି ଟିକଟ ଏଜେଣ୍ଟ । ଏଇ ବିକା ବିକି ଭିତରୁ କାହାର ଯଦି ଉଠିଯାଏ ତା ପ୍ରାଇଜ ଟଙ୍କାରୁ ୧୦% ରେ ଭାଗ ପାଇଥାଉ ।

ମୁକୁନ୍ଦ   ସେ କଥା ବିଚାର କରି ଅନ୍ତତଃ ଆମ କମିସନଟା ।

ବନ   (ହସି) ଦିଆଯିବ ଦିଆଯିବ । କିନ୍ତୁ ଏତେ ଗୁଡେ ନୁହେଁ । ବାହାଘରଟା ସରିଯାଉ ଆପଣମାନେ ପ୍ରଥମେ ଭୋଜିଭାତ ଖାଇ ମୁହଁ ମିଠା କରନ୍ତୁ କମିସନଟା ମୁଁ ନିଶ୍ଚୟ ଦେବି । ବିଶ୍ୱାସ ରଖନ୍ତୁ ।

ବୃଦ୍ଧ   ବିରାଟ ଅଫିସ ଆଜ୍ଞା ଦୁନିଆ ଷ୍ଟାପ୍, ପଛରେ ଯାହାଦେବେ ଦେବେ, ଏବେ Advanceଟା ।

ବନା   ଆଚ୍ଛା ଆଚ୍ଛା ମୋ ପାଖରେତ ବିଶେଷ କିଛି ନାହିଁ ଏଇ ଦୁଇହଜାରେ ଟଙ୍କା ରଖିଥାନ୍ତୁ.... ।

(ଟଙ୍କା ଦେବା ଅବସ୍ଥାରେ ପଶିଆସିଲେ ଗଣେଶ୍ୱର)

ଗଣେଶ୍ୱର   ଥାଉ ବନବିହାରୀ ଥାଉ । ପ୍ରଜାପତି ଘଟସୂତ୍ର ସେବା ସଦନର ଏଇ ଟାଉଟର ଦିଇଟାଙ୍କୁ ଗୋଟେ ବି ପଇସା ଦିଅନ୍ତୁନି ।

ବନ   କାହିଁକି, ଦେବିନି କାହିଁକି, ମୋତେ ଯାହା ସବୁ ସାହାଯ୍ୟ କରିଛନ୍ତି ଏଇ ଟଙ୍କା କିଛି ନୁହେଁ ।

ଗଣେଶ୍ୱର   ସାହାଯ୍ୟ କରିଛନ୍ତି ନା ଟାଉଟରି କରିଛନ୍ତି । ତୁମକଥା ଏଇ ପାଖରେ ରହି ମୁଁ ସବୁ ଶୁଣିଛି । ଏଇମାନଙ୍କ ଦ୍ୱାରା ମୋ ପୁଅ IAS ପାଇଛି ବୋଲି ପେପରରେ ବାହାର କରାଯାଇଥିଲା । ଏଇମାନେ ପୁଣି ତୁମଠୁ ଟଙ୍କା ପାଇବା ପାଇଁ ମୋତେ କାଗଜ ଖୋଳ ଧରାଇବା ପାଇଁ ପରାମର୍ଶ ଦେଉଛନ୍ତି । ଏଇ ମାନଙ୍କୁ ଆମେ ପୋଲିସ୍‌ରେ ଦେବା ।

ବୃଦ୍ଧ   ଆମକୁ ପୋଲିସରେ ଦେବେ? ଆମର ଦୋଷ କଣ ଆଜ୍ଞା, ଆପଣ ପୁଅ ସେ ଝିଅଙ୍କୁ ପସନ୍ଦ କରଛନ୍ତି । ଉଭୟ ଶିକ୍ଷିତ ପୁଣି ଚାକିରି କରି ରୋଜଗାର କରୁଛନ୍ତି । ଆପଣ ବୁଢା ଲୋକ ଉପରକୁ ଟିକେଟ କାଟିବାକୁ ସମୟ ଆସିଲାଣି ଯୌତୁକ ପାଇଁ କାହିଁକି ଲୋଭ ବଳି ପଡୁଛି ଆପଣଙ୍କର । ଆମେ ଆପଣଙ୍କୁ ପୋଲିସରେ ଦେବୁ ।

ମୁକୁନ୍ଦ   ହଁ ଆମର ସଦନର ମଟୋ ହେଲା ସବୁ ସମସ୍ୟାର ସମାଧାନ କରିବା । ଆମେ ସେଇଟା କରିଛୁ । ଆପଣଙ୍କ ପୁଅ ସେଇଠି ହିଁ ବାହାହେବ ।

ବୃଦ୍ଧ   ହଁ ଆମର ପୁରା ବିଶ୍ୱାସ ଯେ କିଏ କାହାକୁ ବିବାହ କରିବ ଭଗବାନ ଆଗରୁ ସ୍ଥିର କରିଛନ୍ତି । ମଣିଷ କେବଳ ଏଇଠି ନିମିତ୍ତ ମାତ୍ର ଅନୁଷ୍ଠାନ କରୁଛନ୍ତି । ହେଲେ ଏଥିରେ ଯୌତୁକ, ଟଙ୍କା, ଜାତି, ଆଭିଜାତ୍ୟ, ଏସବୁ ଯେତେ ବାଜେ କଥା ଆପଣ ବୁଢାମାନେ ପୁରାଇ ଗୋଳମାଳ କରୁଛନ୍ତି । ଆମର ମଟୋ ଆମେ ରକ୍ଷା କରିଛୁ । ଆପଣମାନଙ୍କର ସମସ୍ୟା ସମାଧାନ

ହୋଇଛି । ବରଂ ଆପଣମାନେ ପ୍ରଜାପତି ଘଟସୂତ୍ର ସେବା ସଦନର ଜୟଗାନ କରିବା କଥା । କାରଣ ଏଇ ସଦନ ଯୋଗୁଁ ଆପଣଙ୍କ ଭୁଲ ବୁଝି ପାରିଛନ୍ତି ।

ଗଣେଶ୍ୱର — ଏତେବ ଲୋକ ବସ୍ତରେ ମୁଁ [illegible] ପାଉଥିଲି । ଲୋଭରେ ଅନ୍ଧ ହୋଇ ମୋ ସ୍ତ୍ରୀ ପୁଅ ସମ୍ପତ୍ତି [illegible] ହେଉଥିଲି । ମୋତେ ଏମାନେ ରକ୍ଷାକରି ଦେଲେ ।

ମୁକୁନ୍ଦ — ଏମାନେ ନୁହେଁ ସାର । ଭୁଜ ସୁନ୍ଦର କୁହନ୍ତି କି ଏଥି ମୁକୁନ୍ଦ ରାଜ ନୁହଁନ୍ତି ବରଂ କୁହନ୍ତୁ ପ୍ରଜାପତି ଘଟସୂତ୍ର ସେବା ସଦନ ।

ଗଣେଶ୍ୱର — ମାନେ ?

ଭୁଜ — ସମୟ ହେଉଛି ବଳବାନ । କାରଣ ସେ ସମୟ ହେଉଛି ଏକମାତ୍ର ସତ୍ୟ ଈଶ୍ୱରଙ୍କ ଅନ୍ୟନାମ । ତାକୁ ସମ୍ମାନ ଦେଇ ତା ନିର୍ଦ୍ଦେଶକୁ ଅପେକ୍ଷା କଲେ ସେ ସତଉପାୟରେ ସବୁ ସମସ୍ୟାର ସମାଧାନ କରିଥାଏ । ଆମେ କିନ୍ତୁ ଧୈର୍ଯ୍ୟହରା ହୋଇ କୌଣସି ଉପାୟରେ ସମସ୍ୟାର ତତ୍କାଳ ସମାଧାନ ପାଇଁ ବ୍ୟଗ୍ର ହୋଇ ଉଠୁ । ସେଇଥିପାଇଁ ଅନେକ ସମୟରେ ସବୁକିଛି ଗୋଳମାଳ ହୋଇଯାଇଥାଏ ।

ଗଣେଶ୍ୱର — ସେ ସବୁଠିକ ଯେ ସମୟ ସବୁ କରିଦେଲା । ହେଲେ ଆପଣଙ୍କ ପ୍ରଜାପତି ଘଟସୂତ୍ର ସେବା ସଦନ ଏଥିରେ କିଛି ତ ଭୂମିକା ରହିଲାନି ।

ମୁକୁନ୍ଦ — ରହିଲା ଆଜ୍ଞା ଆମର ମୋଟୋ ହେଲା ଉଭୟ ପକ୍ଷଙ୍କୁ ଯୋହାଇଲା ଭଳି କାମ କରିବୁ ଏବଂ ସମୟ ଗଡାଇ ତା ନିର୍ଦ୍ଦେଶକୁ ଅପେକ୍ଷା କରିବୁ ।

ଭୁଜ — ବାସ ସେ ସମୟ ଆସିଗଲେ ସବୁ ଆପେ ଆପେ ଠିକ୍ ହେଇଯିବ । ଏଇ ଦେଖୁନାହାଁନ୍ତି ଆପଣଙ୍କ ପୁଅ, ସ୍ତ୍ରୀ, କନ୍ୟା, କନ୍ୟାପିତା ଯାହା ଚାହିଁଥିଲେ ସମସ୍ତଙ୍କ ଆଶା ପୂରଣ ହେବାକୁ ଯାଉଛି । ଶେଷରେ ଆପଣ ବି ଆପଣଙ୍କ ମନକୁ ବୁଝେଇ ଦେଇଛନ୍ତି । ଏଇଟା ପ୍ରଜାପତି ଘଟସୂତ୍ର ସେବାସଦନ ଯୋଗୁଁ ସଂଭବ ହେଇଛି । ଅର୍ଥାତ ସତ୍ୟର ବିଜୟ ହେଉଛି ।

ମୁକୁନ୍ଦ — ସେଇଥିପାଇଁ ସମସ୍ତେ ପ୍ରଜାପତି ଘଟସୂତ୍ର ସେବାସଦନର ଜୟଗାନ କରନ୍ତୁ । ପ୍ରଜାପତି ଘଟସୂତ୍ର ସେବା ସଦନ କି ... । (୩ଥର)

ପବନା — ଜିନ୍ଦାବାଦ ଜିନ୍ଦାବାଦ ।(୩ଥର)

(ସମସ୍ତେ ପବନା କଥା ଶୁଣି ହସିଉଠନ୍ତି ଏବଂ ତା ସହିତ ମିଶି ଜିନ୍ଦାବାଦ କରନ୍ତି) ।

**– ସମାପ୍ତ –**

# ଭଲ ପାଇବାର ରଙ୍ଗ

(ସମ୍ପୂର୍ଣ୍ଣ ହାସ୍ୟରସର ନାଟକ)

ଦିଲ୍ଲୀଶ୍ୱର ମହାରଣା

(୧୧୬?)

# ଭଲ ପାଇବାର ରଙ୍ଗ

## ଚରିତ୍ର ଲିପି

ଶୁଭେନ୍ଦୁ

ପରମା

ଭବାନୀ

ବାଳ ବଳରାମ

ନିଧି ମଉସା

ବନ୍ୟା ଦେବୀ

( ଗୋଟିଏ ସେଟ୍ - ସମୟ ଅବଧି -୧ ଘଣ୍ଟା ୩୦ମିନିଟ୍)

# ଭଲ ପାଇବାର ରଂଗ ନାଟକରେ ବିଭିନ୍ନ ସମୟରେ ଭାଗ ନେଇଥିବା କଳାପରିଷଦ, ଢେଙ୍କାନାଳର ଶିଳ୍ପୀଗଣ

| ଚରିତ୍ର | | ଶିଳ୍ପୀଙ୍କ ନାମ |
| --- | --- | --- |
| ଶୁଭେନ୍ଦୁ | - | ପ୍ରବୀର ମହାନ୍ତି / ପ୍ରସନ୍ନ କୁମାର ପାଣି |
| ପରମା | - | କଳିଙ୍ଗ ପଟନାୟକ / ସୁରେଶ ମହାନ୍ତି |
| ଭବାନୀ | - | ମନୋରଂଜନ ସିଂ / ସୁରେଶ ମିଶ୍ର |
| ବାଳ ବଳରାମ | - | ଅଶୋକ ଦାଶ / ଶଶି ପାଣି / କିଶୋର ରାଉତ |
| ନିଧି ମଉସା | - | ବିନୋଦ ମହାନ୍ତି / ଶତ୍ରୁଘ୍ନ ମାଟି |
| ବନ୍ୟା ଦେବୀ | - | ଶ୍ରୀପଦ୍ମା ସାହୁ / ବବିତାରାଣୀ ସାହୁ |

**ନାଟକ ଅନ୍ତରାଳରେ କାମ କରିଥିବା ଶିଳ୍ପୀ-**

| | | |
| --- | --- | --- |
| ସଂଗୀତ | - | ପୁଷ୍କ ମହାନ୍ତି / ବ୍ରଜବଂଧୁ ରଣସିଂ |
| ମଂଚ ସହଯୋଗୀ | - | ଜୟନ୍ତ ବର୍ମା / ପୂର୍ଣ୍ଣ ଦେବତା |
| ନିର୍ଦ୍ଦେଶନା | - | ଦିଲ୍ଲୀଶ୍ୱର ମହାରଣା |

# ଭଲ ପାଇବାର ରଙ୍ଗ

## ପ୍ରଥମ ପାଦ

(ଗୋଟିଏ ଡ୍ରଇଂରୁମ୍ । ମଞ୍ଚର ପଶ୍ଚାତ୍ ଭାଗରୁ ଏଇ ଘରକୁ ପ୍ରବେଶ ଦ୍ୱାର । ଘରଟିର ଉଭୟ ପାର୍ଶ୍ୱରେ ଦୁଇଟି ଦ୍ୱାର । ଗୋଟିଏ ରୋଷେଇ ଘରକୁ, ଅନ୍ୟଟି ଶୋଇବା ଘରକୁ ଓ ଅନ୍ୟାନ୍ୟ ଘରକୁ ।

ଘରେ ଧାମିଧା ଦାମିକା ଆସବାବ ପଡ଼ିଥିଲେ ସୁଦ୍ଧା ସବୁ ଯେମିତି ଅସଜଡ଼ା, କୌଣସିଥିରେ ସଂଗତ ନାହିଁ । କାନ୍ଥରେ ଗୋଟିଏ ପେଣ୍ଟିଂ । କିନ୍ତୁ ତା' ଉପରେ ଗୋଟିଏ ମଇଳା ଗେଞ୍ଜି ଟଙ୍ଗାଯାଇଛି । ଘରର ଗୋଟିଏ କୋଣରେ ଗୋଟିଏ ବଡ଼ ଫୁଲଦାନି ତା ଭିତରେ ଫୁଲଝାଡୁ । କାନ୍ଥରେ କାଚ୍ ବନ୍ଧେଇ ଗୋଟିଏ ସମ୍ମାନ ପତ୍ର କିନ୍ତୁ ତା' ଉପରେ ଗୋଟିଏ ବ୍ୟାଗ୍ ଝୁଲା ହୋଇଛି ।

ଏ ଘରଟିରେ ଯେଉଁ ଭଦ୍ରବ୍ୟକ୍ତି ଭଡ଼ାରେ ରହୁଛନ୍ତି, ତାଙ୍କର ଜୀବନପ୍ରତି ଶ୍ରଦ୍ଧା କମି ନ ଥିଲେ ମଧ୍ୟ କେମିତି କେଜାଣି ସେ ବୀତସ୍ପୃହ ହୋଇ ଯାଇଛନ୍ତି । ସମୟ ସକାଳ, ସେ ସୋଫା ଉପରେ ପଡ଼ିରହି କାଗଜ ପଢ଼ିବାକୁ ଲାଗିଛନ୍ତି । ଖବର କାଗଜ ଆଢୁଆଳରୁ ତାଙ୍କର ମୁହଁ ଦେଖାଯାଉନି କିନ୍ତୁ ସିଗାରେଟ୍ ଧୂଆଁ ଦେଖାଯାଉଛି । ଆସ୍‌ଟ୍ରେରେ ଅଧାଜଳା ସିଗାରେଟ୍ ଭର୍ତ୍ତି । ସେ ଜଣେ କବି/ଲେଖକ ତଥା ସ୍ଥାନୀୟ କଲେଜର ଅଧ୍ୟାପକ । ବୟସ ୩୫ ବର୍ଷ । ଟ୍ରାଞ୍ଜିଷ୍ଟରରୁ ସକାଳର ମାଙ୍ଗଳିକ ସଂଗୀତ ଭାସି ଆସୁଛି ।)

ଶୁଭେନ୍ଦୁ : ପରମା, ପରମା ... ।

ପରମା : (ଭିତରୁ) ସାର୍ !

ଶୁଭେନ୍ଦୁ : ଚା' ହେଲା ?

ପରମା : (ପ୍ରବେଶ) କ୍ଷୀର ନାହିଁ ଆଜ୍ଞା ।

ଶୁଭେନ୍ଦୁ : ମାନେ ?

ପରମା : ନାଲି ଚା' କରିଦେଉଛି ।

ଶୁଭେନ୍ଦୁ : ନାଲି ଚା' କାହିଁକି, କାଲି ତ କ୍ଷୀର ଥିଲା ?

ପରମା : ସେ କ୍ଷୀର ବାଲା ମୋତେ ଭଲ କ୍ଷୀର ଦେଉନି । କ୍ଷୀର ଛିଣ୍ଡି ଯାଉଛି ।

ଶୁଭେନ୍ଦୁ : କ୍ଷୀର ଛିଣ୍ଡି ଯାଉଛି, ଦୋଷଟା ଗଉଡ଼ ଉପରକୁ ଚାଲିଯାଉଛି । ମୁଁ ସେ ନାଲି ଚା' ଖାଇବିନି ।

ପରମା : ତା' ହେଲେ ସାମନା ଦୋକାନରୁ ଇସ୍‌ପେସିଆଲ୍ ଚା' ନେଇ ଆସୁଛି । ସକାଳୁ ସକାଳୁ ହରିଭାଇନା ଲୁଣ, ତେଜପତ୍ର ଆଉ ଅଦା ଦେଇ ଫାଷ୍ଟକିଲାସ୍ ଚା' କରିଥିବ ।

ଶୁଭେନ୍ଦୁ : ନା' ଦରକାର ନାହିଁ । ଭଲରେ ଗଣ୍ଡେ ଖାଇ ପାରିବି ବୋଲି ନୂଆ ଘର ଭଡ଼ାନେଲି । ତୋତେ ଆଣି ପାଖରେ ରଖିଲି । ହେଲେ ତୋର କୋଉଦିନ ତରକାରୀ ଲୁଣିଆ ହୋଇଯାଉଛି ତ କ୍ଷୀର ଛିଣ୍ଡି ଯାଉଛି । କେତେବେଳେ ହଳଦୀ ବେଶୀ ତ କେତେବେଳେ ସବୁ ପୋଡ଼ି ଅଙ୍ଗାର । ଏ ସବୁ କ'ଣ ଚାଲିଛି ....?

ପରମା : ନିଆଁ ପାଣି କଥା ସାର, ମୋ ହାତରେ କ'ଣ ଅଛି ?

ଶୁଭେନ୍ଦୁ : ଚୋପ୍ । ବେଶୀ କୁହାଳିଆ ହୋଇଯାଇଛି । ୧୦ଟା ସୁଦ୍ଧା ରୋଷେଇ ଶେଷ କର । ୧୧ଟାରେ ମୋର କ୍ଲାସ୍ ଅଛି ।

ପରମା : ଦଶଟା ସୁଦ୍ଧା ତ ହୋଇପାରିବନି ।

ଶୁଭେନ୍ଦୁ : ଏବେ ସାତଟା ବି ହୋଇନି । ତିନିଘଣ୍ଟା ଭିତରେ ହୋଇପାରିବନି ?

ପରମା : ଷ୍ଟୋଭରେ କିରୋସିନ ନାହିଁ । ଆଠଟା ପରେ ସେ କଣ୍ଟ୍ରୋଲ୍ ଦୋକାନ ଯାଇ ଖୋଲିବ । ତା'ପରେ କିରୋସିନି ମିଳିବ ।

ଶୁଭେନ୍ଦୁ : ଆଗରୁ ଆଣି ରଖିଲୁନି କାହିଁକି ?

ପରମା : କାଲି କିରୋସିନ ଆଣିବାକୁ ବାହାରିଲା ବେଳେ ପରା ଆପଣ ମିଶ୍ର ବାବୁଙ୍କ ଘରୁ ବହି ଆଣିବାକୁ ପଠେଇଲେ ।

ଶୁଭେନ୍ଦୁ : ହଉ ହେଲା ମୋର ଦୋଷ, ନନା ଦୋକାନରୁ କାଠ ଆଣି ରୋଷେଇ ଆରମ୍ଭ କର... ।

ପରମା : କାଠ ଆଣି ଚୁଲି ଲଗାଇବି । ହେଲେ ଧୂଆଁ ହେଲେ ପାଟି କରିବେନି କହିଦଉଚି ।

ଶୁଭେନ୍ଦୁ : ଯାଉଛୁ ନା ଦେଖିବୁ ଏଇନା ... । (ପରମା ଚାଲିଯାଉଥିଲା) ପରମା, ଆରେ କାଲି ଧୋବା ପାଖରୁ ଲୁଗା ଆଣିଲୁ ?

ପରମା : ବରଷା ପାଗରେ ଲୁଗା ଶୁଖି ପାରୁନି. କହିଲା ରବିବାର ଦିନ ଆଣିଦେବ ।

ଶୁଭେନ୍ଦୁ : ପ୍ୟାଣ୍ଟ ସାର୍ଟ ସବୁ ମଇଳା, ଆଜି କ'ଣ ପିନ୍ଧି କଲେଜ୍ ଯିବି ?

ପରମା : ମୋ ସଫା ଆପଣଙ୍କ ମନକୁ ପାଉନି ବୋଲି ଧୋବାଘରେ ଦେଉଛନ୍ତି । ମୋର ଦୋଷ କଣ ? ଦିଅନ୍ତୁ ଏଇନା ସଫା କରିଦେଉଛି ।

ଶୁଭେନ୍ଦୁ : ଇଡ଼ିଅଟ୍, ଏଇନା ସଫାହେବ-ଶୁଖିବ, ଇସ୍ତ୍ରୀହେବ, ପିନ୍ଧି ଦଶଟା ବେଳକୁ ଯାଇପାରିବି ?

ପରମା : ସିଲ୍କ ପଞ୍ଜାବି ଟା ଆଗରୁ ସଫା ହୋଇଛି ।

ଶୁଭେନ୍ଦୁ : ଇସ୍ତ୍ରୀ ହୋଇଛି ?

ପରମା : ରୋଷେଇ ବସେଇ ଦେଇ ଇସ୍ତ୍ରୀ କରିଦେବିନି ?

ଶୁଭେନ୍ଦୁ : ଆଗରୁ ଶୋଇଥିଲୁ ଷ୍ଟୁପିଡ୍ । ଯା' ଯାହା କରିବା କଥା ଜଲଦି କର । (ପରମା ଚାଲିଗଲା, ପ୍ରବେଶ କଲେ ଶୁଭେନ୍ଦୁର ସାଙ୍ଗ ଭବାନୀ ବାବୁ)

ଭବାନୀ : ଆଜି ସୂର୍ଯ୍ୟଦେବଙ୍କର ପରମ ସୌଭାଗ୍ୟ ଯେ, ଆମର କବିଚନ୍ଦ୍ର ଶୁଭେନ୍ଦୁ ମୋହନଙ୍କର ମୁଖ ଦର୍ଶନ କରିଛନ୍ତି ।

ଶୁଭେନ୍ଦୁ : ବେଶୀ ବକ୍ ବକ୍ ନ କରି ସେଇଠି ବସ୍ । ଏ ଘରଟାରେ ରହିବା ଦିନୁ, ମାନେ ମାସେ ହେଲା ମୋର ସକାଳୁ ସକାଳୁ ଉଠିବା ଅଭ୍ୟାସ ହୋଇଗଲାଣି ।

ଭବାନୀ : ତୋର ବଦଭ୍ୟାସ ଗୁଡ଼ାକ ଧିରେ ଧିରେ ପରିତ୍ୟାଗ କରିବାକୁ ବସିଲୁଣି ସେଥିପାଇଁ ବହୁତ୍ ବହୁତ୍ ଧନ୍ୟବାଦ । ହେଲେ ପାଟିତୁଣ୍ଡ କାହିଁକି ହେଉଥିଲା?

ଶୁଭେନ୍ଦୁ : ତୋରି ଯୋଗୁଁ ପାଟିତୁଣ୍ଡ ।

ଭବାନୀ : ମୋ ଯୋଗୁଁ - ଆବେ ସେଠି ଲଜିଂରେ ରହି ହୋଟେଲରେ ଖାଉଥିଲୁ । ମାସକୁ ମାସ ମେଞ୍ଚେ ମେଞ୍ଚେ ଟଙ୍କା ଗଣୁଥିଲୁ । କେତେ ଖୋଜା ଖୋଜି କରି ଏ ଘର ଆଉ ଚାକର ପିଲାଟା ଯୋଗାଡ଼ କରିଦେଇଛି । ମୋର ବଦନାମ କରୁଛୁ । କୁମ୍ଭୀପାକ ନର୍କ ଛଡ଼ା ତୋର ଅନ୍ୟଗତି ନାହିଁ ଦେଖୁଛି ।

ଶୁଭେନ୍ଦୁ : ଥାଉ, ସକାଳୁ ସକାଳୁ କୁଆଡ଼େ ଆସିଥିଲୁ ?

ଭବାନୀ : କାଲି ଗାଁକୁ ଯାଇଥିଲି ତୋ ପାଇଁ ଖବର ନେଇ ଆସିଛି ।

ଶୁଭେନ୍ଦୁ : ବୋଉ ଦେହ ଭଲ ଅଛି ତ ?

ଭବାନୀ : ତୋ' ବୋଉ, ଭାଇ, ଭାଉଜ ସମସ୍ତେ ଭଲ ଅଛନ୍ତି । କିନ୍ତୁ ତୋ ନାଁରେ ସମସ୍ତଙ୍କର ଅଭିଯୋଗ ।

ଶୁଭେନ୍ଦୁ : କାହିଁକି ମୁଁ ତ ମାସକୁ ମାସ ଟଙ୍କା ପଠାଇ ଦେଉଛି ।

ଭବାନୀ : ଆବେ ଟଙ୍କା କଥା କିଏ କହୁଛି । ତୋର ବାହାଘର ନେଇ ସମସ୍ତେ ବ୍ୟସ୍ତ । ତୋ ଭାଇ ଭାଉଜ ଯେଉଁଠି ସ୍ଥିର କରୁଛନ୍ତି ତୁ କୁଆଡ଼େ ମୋଟରୁ ଝିଅ ଦେଖିବାକୁ ଯାଉନୁ । ସେମାନେ କହୁଛନ୍ତୁ ତୁ ତୋର -ଇଚ୍ଛା ଅନୁସାରେ ଝିଅ ପସନ୍ଦ କରି କହ, ସେମାନେ କଥାବାର୍ତ୍ତା କରିବେ ।

ଶୁଭେନ୍ଦୁ : ମୁଁ ବାହାହେବିନି ବୋଲି ମନା କରିଦେଇଛି । ସେମାନେ କାହିଁକି ଏତେ ଝିଅ ଦେଖୁଛନ୍ତି ଯେ ?

ଭବାନୀ : ଯାହାକୁ ଭଲ ପାଉଥିଲୁ ସେ ଅନ୍ୟ ଯାଗାରେ ବାହା ହୋଇଗଲା । ତା ବୋଲି ତାକୁ ଝୁରି ଝୁରି ତୁ ବାହା ହେବୁନି କାହିଁକି ?

ଶୁଭେନ୍ଦୁ : ସେ କଥା ତୋତେ ଅନେକଥର କହିଛି ।

ଭବାନୀ : କ'ଣତୋର ଏମିତି ହୋଇଯାଇଛି ? ତୁ ଉଚ୍ଚଶିକ୍ଷିତ, ସରକାରୀ କଲେଜରେ ଅଧ୍ୟାପକ, ପୁଣି ସୁନାମଧନ୍ୟ କବି । କାହିଁକି ତୁ ବାହା ହେବୁନି କହ ?

ଶୁଭେନ୍ଦୁ ତୁମେମାନେ ବାହାଘରଟା କ'ଣ ଭାବୁଛ ? ଗୋଟେ ଇଲେକ୍ଟ୍ରିକ୍ ସୁଇଚ୍ । ଛୁଇଁଦେଲେ ହେଇଯିବ । ଏଥିରେ ଗୋଟେ ପୁଅ, ଗୋଟେ ଝିଅର ଇମୋସନ୍ ରହିଛି । ଦି ଦି'ଟା ପରିବାରର ମାନସିକ ନିଷ୍ପତ୍ତି ରହିଛି ।

ଭବାନୀ : ରହିଲେ କ'ଣ ହେଲା, ତୁ ଆଜି ହଁ କରିଦେ, କାଲି ଡର୍ଜନେ ଝିଅ ଆଣି ଠିଆ କରେଇ ଦେବି ।

ଶୁଭେନ୍ଦୁ : ନା' ଏଇ ଅତିକ୍ରାନ୍ତ ବୟସ, ଏ ପାଚ଼ିଲା ବାଳ ଆଉ ବର୍ଦ୍ଧିତ ତ଼ର୍ବି ନେଇ ମୁଁ ଲୋକହସା ହେବାକୁ ଚାହୁଁନି ।

ଭବାନୀ : ଓଃ ବୁଝିଲି । ଏଇଥି ପାଇଁ ତୁ କୌଣସି ଝିଅ ଦେଖିବାକୁ ଯାଉନୁ । ତୋ ମନରେ ଗୋଟେ ଭୟ ରହିଯାଇଛି ଯେ, ଝିଅ କାଳେ ତୋତେ ରିଜେକ୍ଟ କରିଦେବ ।

ଶୁଭେନ୍ଦୁ : ନାଁ, ସେ କଥା ନାହିଁ ଯେ, ମୁଁ ବାହାହେବା କଥାଟା ମୋତେ ଚ଼ିନ୍ତା କରୁନି ।

ଭବାନୀ : ମୁଁ କିନ୍ତୁ କାଲି ତୋ ଭାଇ ଭାଉଜଙ୍କ ସାମନାରେ ପ୍ରମିସ୍ କରି ଆସିଛି । ଆସନ୍ତା ତିଥିରେ, ତୋ ବାହାର ହେବ ହିଁ ହେବ ।

ଶୁଭେନ୍ଦୁ : ସତେ ?

ଭବାନୀ : ଆଉ ଆସନ୍ତା ବର୍ଷ ଏତେବେଳକୁ ତୋ ପିଲାର ଏକୋଇଶା ଭୋଜି ।

ଶୁଭେନ୍ଦୁ : କ'ଣ ଢବରଦସ୍ତ ?

ଭବାନୀ : ହଁ, ଝିଅ ଠିକ୍ ହୋଇଯାଇଛି । ସମସ୍ତଙ୍କର ପସନ୍ଦ ବି ହୋଇଛି : ଆସନ୍ତା ରବିବାର ଦିନ ତୋତେ, ତାକୁ ଦେଖି ମତାମତ ଦେବାକୁ ପଡ଼ିବ ।

ଶୁଭେନ୍ଦୁ : ତୁମେମାନେ ଯଦି ପସନ୍ଦ କରିଛ, ମୋତେ କହିବାରେ କ'ଣ ଅଛି ?

ଭବାନୀ : ଅଛି ! ତୁ ନ ଦେଖିଲେ ନାହିଁ, ଝିଅ ଅନ୍ତତଃ ତୋତେ ଥରେ ଦେଖିବାକୁ ଚାହେଁ । ଶିକ୍ଷିତା ଝିଅ । ତା ଇଚ୍ଛାକୁ ସମ୍ମାନ ଦେବାକୁ ହେବ ।

ଶୁଭେନ୍ଦୁ : ସେ ଏମ୍ବାର୍‌ସ୍‌ମେଣ୍ଟ କଥା ମୋତେ କହନି । ମୁଁ ଚାଲିଲି ।

(ଉଠି ଚାଲିଯାଉଥିଲା)

ଭବାନୀ : ଯାଉଛୁ କୁଆଡ଼େ ?

ଶୁଭେନ୍ଦୁ  ବାଥ୍ ରୁମ୍, କଲେଜ୍ ସମୟ ହୋଇଗଲା ।

ଭବାନୀ : ତା ହେଲେ ରବିବାର ଦିନ ଝିଅ ଦେଖି ଯାଉଛୁ ?

ଶୁଭେନ୍ଦୁ : ନା ।

ଭବାନୀ : ତା ମାନେ ତୁ ଝିଅ ଦେଖିବୁନି ?

ଶୁଭେନ୍ଦୁ : ନା ।

ଭବାନୀ : ବାହା ହେବୁନି ?

ଶୁଭେନ୍ଦୁ : ନା ।

ଭବାନୀ : ଘର ସଂସାର କରିବୁନି ?

ଶୁଭେନ୍ଦୁ : ନା-ନା-ନା !

(ପରମା ପଶିଆସିଲା, ହାତରେ ତାର ଗୋଟିଏ ସିଲ୍କ ପଞ୍ଜାବି)

ପରମା : ଆଜ୍ଞା, ଲାଗିଗଲା ।

ଶୁଭେନ୍ଦୁ : ଆରେ କ'ଣ ଲାଗିଗଲା ?

ପରମା : ମଝିରୁ ଲାଗିଗଲା ଆଜ୍ଞା, କୋଉ କାମରେ ଆସିବନି । ହେଇ ଦେଖୁ ନାହାନ୍ତି । (ପରମା ହାତରେ ଧରିଥିବା ପଞ୍ଜାବିଟା ଖୋଲି ଦେଖେଇ ଦେଇଛି । ପଞ୍ଜାବିଟା ଇସ୍ତ୍ରୀ କରୁ କରୁ ପାନପତ୍ର ଆକାରରେ ମଝିରୁ ପୋଡ଼ିଯାଇଛି । ତାକୁ ଦେଖି ଶୁଭେନ୍ଦୁ ଚିତ୍କାର କରି ଉଠିଛି । ଚିରା ପଞ୍ଜାବୀ ଭିତରେ ମୁହଁକୁ ଗଳାଇ ପରମା ଚାହିଁଛି ।)

ଶୁଭେନ୍ଦୁ : You ପରମାନନ୍ଦ ।

(ଗୋଟିଏ ଦିଗକୁ ପରମା ଅନ୍ୟ ଦିଗକୁ ଭବାନୀ ଦୌଡ଼ି ପଳେଇ ଯାଆନ୍ତି । ପରମା ହାତରୁ ପଞ୍ଜାବି ନେଇ ଶୁଭେନ୍ଦୁ ରାଗରେ ଚିରିବାକୁ ଆରମ୍ଭ କରେ । ଆସ୍ତେ ଆସ୍ତେ ଦୃଶ୍ୟଟି ଅନ୍ଧାର ଭିତରେ ମିଳେଇଯାଏ ।)



# ଦ୍ୱିତୀୟ ପାଦ

(ସେଇ ଘର, ଅନ୍ୟ ଦିନ, ଅନ୍ତରାଳରୁ ଘରମାଲିକ ବାଳ ବଳରାମ ଚୌଧୁରୀଙ୍କ ପାଟି ଶୁଣାଯାଉଛି । ସେ ଜଣେ ରିଟାୟଡ୍ ପୋଲିସ୍ ଅଫିସର । ବାଘୁଆ ନିଶ ସହିତ ତାଙ୍କର ଚେ଼ହେରା ଆଉ କଣ୍ଠ ଯେ କୌଣସି ଲୋକ ମନରେ ଭୟ ସଂଚାର କରିବ । କିନ୍ତୁ ସେ ବେଶ୍ ଭଦ୍ର ଆଉ ଅମାୟିକ । ପୋଲିସ୍ ଚାକିରୀର ଅଭ୍ୟାସ ଯୋଗୁଁ ସବୁବେଳେ ଧମକ ଦେଲାଭଳି କଥାବାର୍ତ୍ତା କରନ୍ତି ।)

ବାଳ : (ଅନ୍ତରାଳରୁ) ଆରେ ବାଳ ବଳରାମ ଚୌଧୁରୀ ପୋଲିସ୍ ଅଫିସର ରିଟାୟଡ୍ କରିଗଲା ବୋଲି କ'ଣ ବାଘରୁ ବିରାଡ଼ି ପାଲଟିଗଲା । ଜଲଦି ଏ ଦଶ ମିନିଟ୍ ଭିତରେ ଏ ସବୁ ସଫାକର । ଏ ସବୁ ସଫା ହେବ ମୁଁ ଯିବି । (ଘର ଭିତରକୁ ପ୍ରବେଶ କରିଛନ୍ତି କାହାକୁ ନଦେଖି)ଆରେ ଏ ଘରେ କେହି ନାହାଁନ୍ତି ନା କ'ଣ ?

ପରମା : (ପ୍ରବେଶ) ଆଜ୍ଞା !

ବାଳ : ଆଜ୍ଞା କ'ଣ, ତୋ ବାବୁଙ୍କୁ ଡାକ୍ ।

ପରମା : ବାବୁ ଗାଧୁଆ ଘରେ । ଆପଣ ବସନ୍ତୁ ।

ବାଳ : ନାଇଁ, ବସିବାକୁ ମୋର ସମୟ ନାହିଁ । ତୋ ବାବୁଆଣୀକୁ ଡାକ ।

ପରମା : ବାବୁଆଣୀ ! ବାବୁଆଣୀ ଏଠି କେଉଁଠୁ ଆସିବେ ?

ବାଳ : କ'ଣ ? ତୋ ବାବୁ ଏ ପର୍ଯ୍ୟନ୍ତ ବାବୁଆଣୀକୁ ଆଣିନାହାଁନ୍ତି । ଗୋଟେ ମାସ ହୋଇଗଲାଣି ଘର ଭଡ଼ା ନେଲେଣି ।

ଶୁଭେନ୍ଦୁ : (ପ୍ରବେଶ) ନମସ୍କାର ଆଜ୍ଞା ।

ବାଳ : (ନମସ୍କାର) ଆଚ୍ଛା ଶୁଭେନ୍ଦୁବାବୁ । ଆପଣଙ୍କ ସାଙ୍ଗ ଭବାନୀବାବୁ ଘର ବୁଝିଲାବେଳୁ ମୁଁ ସଫାସଫା କହିଦେଇଛି ବିନା ଫାମିଲିରେ ଏଠି କେହି ରହିପାରିବେନି ।

ଶୁଭେନ୍ଦୁ : ଭବାନୀ କାହିଁ ଏ କଥା ମୋତେ କହିନି ।

ବାଳ : କହି ନାହାଁନ୍ତି ଯଦି ମୋଠୁ ଶୁଣିଯାଆନ୍ତୁ । ରିଟାୟାର୍ଡ ପୋଲିସ ଅଫିସର ବାଳ ବଳରାମ ଚୌଧୁରୀର ପ୍ରିନ୍‌ସପୁଲ୍ ଇଜ୍ ପ୍ରିନ୍‌ସପୁଲ୍ । ଏ ଘରେ ରହିବାକୁ ହେଲେ ପରିବାର ସହ ରହିବାକୁ ବାଧ୍ୟ ।

ଶୁଭେନ୍ଦୁ : କିନ୍ତୁ ଯାହାର ପରିବାର ନାହିଁ, ସେ କ'ଣ କରିବ ?

ବାଳ : ଘର ଛାଡିଦେବ । ମାଇଁ ପ୍ରିନ୍‌ସପିଲ ଇଜ୍ ପ୍ରିନ୍‌ସପିଲ୍ । ଉପରେ ମୋର ପାଞ୍ଚ ପାଞ୍ଚଟା ଅବିବାହିତ ଝିଅ । ବିନା ଫ୍ୟାମିଲିରେ ଲୋକଙ୍କୁ ଏଠି ରଖେଇ କାହାକୁ ଜଗି ପାରିବିନି । ଭବାନୀ ବାବୁ କହୁଥିଲେ ପନ୍ଦର ଦିନ ଭିତରେ ଆପଣଙ୍କର ସ୍ତ୍ରୀକୁ ନେଇଆସିବେ ବୋଲି, ଅସୁବିଧା କ'ଣ ହେଲା ?

ଶୁଭେନ୍ଦୁ ସ୍ତ୍ରୀ ଥିଲେ ସିନା ଆଣି ରଖିବି ! ମୋର ତ କେହି ସ୍ତ୍ରୀ ନାହାଁନ୍ତି ।

ବାଳ What ? ଭବାନୀ ବାବୁ ତା ହେଲେ ମୋତେ ଠକିଛି । ବାଳ ବଳରାମ ଚୌଧୁରୀ ରିଟାୟାର୍ଡ୍ ପୋଲିସ୍ ଅଫିସର ପାଖରେ ଚିଟିଂ ବାଜି ? (ହଠାତ୍ ଭବାନୀ ପଶିଆସିଛି)

ଭବାନୀ Good Morning ସାର୍ । ଆପଣଙ୍କୁ ପୁଣି ଚିଟିଂବାଜି ବାଳ ବଳରାମ ଚୌଧୁରୀ ୟାନିକି B.B.C. ପାଖରେ କିଏ କେବେ ଠକି ପାରିବ - Impossible, who is that fool ?

ବାଳ : ତୁମେ ! you have cheated me । ବିବାହିତ କହି ତୁମେ ମୋ ଘରେ ଜଣେ ବାଚେଲରକୁ ରଖେଇ ଦେଇଛ ।

ଭବାନୀ : (ହସି) ଆପଣଙ୍କୁ ଏ କଥା କିଏ କହିଲା ?

ବାଳ : ତୁମର ବନ୍ଧୁ ଶୁଭେନ୍ଦୁବାବୁ ନିଜେ ସ୍ୱୀକାରକଲେ ଯେ ତାଙ୍କର କେହି ସ୍ତ୍ରୀ ନାହିଁ ।

ଭବାନୀ : ହଇରେ ଶୁଭେନ୍ଦୁ, ତୁ ବାପା ହେବାକୁ ବସିଲୁଣି, ଏ କଥା କହି ପାରିଲୁ? ହେ ଭଗବାନ, ଆଉ ଆପଣ ବି ତା' କଥାରେ ବିଶ୍ୱାସ କରିଗଲେ ।

ବାଳ : ମାନେ ?

ଭବାନୀ : ମନ ମାଳିନ୍ୟ ଆଉ କ'ଣ ? ଯୌତୁକ ଫୌତୁକ ଉପରେ ଶ୍ୱଶୁର ଘର ସହିତ କ'ଣ ଟିକିଏ ଗଣ୍ଡଗୋଳ ହୋଇଯାଇଛି । ସେଇଥି ପାଇଁ ୟାଁ' ସ୍ତ୍ରୀ, ତା' ବାପ ଘରକୁ ଚାଲିଯାଇଛି ।

ବାଳ : ତା' ବୋଲି କହିବେ ମୋର ସ୍ତ୍ରୀ କେହି ନାହାଁନ୍ତି ।

ଭବାନୀ : କୁହନ୍ତୁ, ଆପଣ କୁହନ୍ତୁ ବାଳ ବଳରାମ ଚୌଧୁରୀ ବାବୁ । ଆପଣ ଦୀର୍ଘ ପୋଲିସ୍ ଚାକିରୀ ଭିତରେ କେତେ କ'ଣ ସମସ୍ୟାର ସମ୍ମୁଖୀନ ହୋଇଥିବେ ଆଉ ସମାଧାନ ବି କରିଥିବେ । ସାମାନ୍ୟ ସାମାନ୍ୟ କଥାରେ ବାହାହେଲା ସ୍ତ୍ରୀକୁ କିଏ ଏମିତି କୁହେ ?

ବାଳ : No, No, It is very bad । ଯୌତୁକ ଫୌତୁକ ଉପରେ ଯୋର ଦେଇ ସ୍ୱାମୀ-ସ୍ତ୍ରୀ ସମ୍ପର୍କଟା ଖରାପ୍ କଲେ family life ବରବାଦ ହୋଇଯିବ ।

ଭବାନୀ : ନା' ଆପଣ ସେଥିପାଇଁ ବ୍ୟସ୍ତ ହେବେନି ବଳରାମ ବାବୁ । ମୁଁ ବଞ୍ଚି ଥାଉ ଥାଉ ଶୁଭେନ୍ଦୁର ସେମିତି କିଛି ସର୍ବନାଶ କରିବାକୁ ଦେବିନି । କାଲି ଯାଉଛି ଭାଉଜଙ୍କୁ ବୁଝେଇ ସୁଝେଇ ନେଇ ଆସିବି ।

ବାଳ : ଭାଉଜ ?

ଭବାନୀ : ଶୁଭେନ୍ଦୁର ସ୍ତ୍ରୀ ମୋର ଭାଉଜ ହେବନି ? ଶୁଭେନ୍ଦୁର ଏକୋଇଶା ଦିନ ମୋର ଜନ୍ମ । ତା' ସ୍ତ୍ରୀକୁ ଭାଉଜ ଡାକିବିନି ? ଶୁଭେନ୍ଦୁର ବୋଉ ଶୁଭେନ୍ଦୁର ସ୍ତ୍ରୀକୁ ଡାକି ଆଣିବାକୁ ମୋତେ ଦାୟିତ୍ୱ ଦେଇଛନ୍ତି । ୟାଁ'କୁ ଦେଖୁ ନାହାଁନ୍ତି କେମିତି ବଦ୍‌ରାଗି, ଯୌତୁକ ଫୌତୁକ ନେଇ ଶ୍ୱଶୁର ଘରେ ଯାଇ ଗଣ୍ଡଗୋଳ କରିଦେବ ।

ବାଳ : ଠିକ୍ ଅଛି । ଆପଣ ଡାକି ଆଣନ୍ତୁ । ମୁଁ ଏବେ ପିଲାମାନଙ୍କୁ ନେଇ କିଛି ଦିନ ପାଇଁ ପୁରୀ ଚାଲିଯାଉଛି । ପାଞ୍ଚ ଦିନ ପରେ ଫେରିଲା ବେଳକୁ ଯେମିତି ତାଙ୍କ ସ୍ତ୍ରୀକୁ ଏଠି ଦେଖିବି ।

ଭବାନୀ : ଖାଲି ସ୍ତ୍ରୀ କାହିଁକି ଆପଣଙ୍କର ନାତି ଟୋକାକୁ ବି ଦେଇଖବେ ।

ବାଳ : ଘର ନେଲା ବେଳକୁ କହୁଥିଲେ ମୋତେ ଆଠ ମାସ ହେଲା ବାହାଘର ହେଇଛି । ନାତି ଟୋକା କେମିତି ଆସିଗଲା ?

ଭବାନୀ : ନା' ଆସିନି ଯେ, ଆସିବ ବୋଲି ନୋଟିସ୍ ଦେଇ ଦେଇଛି ।

ଶୁଭେନ୍ଦୁ : ଭବାନୀ ଏ ସବୁ କ'ଣ ଚାଲିଛି ? (ଶୁଭେନ୍ଦୁ ବଡବଡ ଆଖି ଦେଖାଇ ଭବାନୀକୁ ଚାହିଁଛି)

ଭବାନୀ : ମାନେ କ'ଣ କି ବାଳ ବଳରାମ ଚୌଧୁରୀ ବାବୁ, ଭାଉଜ ବର୍ତ୍ତମାନ advance

stage ରେ । ନାତି ହବ କି ନାତୁଣୀ ହେବ କିଛି ଜଣାପଡୁନି । ସେଇଥିପାଇଁ ମୋତେ ଡାକିକି ଦେଉଛି ।

ବାଳ : ଆଛା ଆଛା । ମୁଁ କିନ୍ତୁ କହି ଦେଉଛି ପୁରୀରୁ ଫେରି ମୁଁ ଯେମିତି ଦେଖେ ଯେ ଶୁଭେନ୍ଦୁ ବାବୁ ତାଙ୍କର ସ୍ତ୍ରୀ ସହିତ ଏଠି ଅଛନ୍ତି । ନଚେତ୍ ବାଳ ବଳରାମ ଚୌଧୁରୀର principle is principle.

ଭବାନୀ Right । ଲକ୍ଷ୍ମୀ ଭଳିଆ ଭାଉଜଙ୍କୁ ପାଖରେ ଆଣି ନ ରଖିଲେ ଆପଣ କ'ଣ, ମୁଁ ଏ stupid ଟାକୁ ଟେକି ନେଇ ବାହାରେ ଫୋପାଡି ଦେଇଆସିବି । ଗୃହଲକ୍ଷ୍ମୀ ସହିତ ପୁଣି ଝଗଡ଼ା ।

ବାଳ : ମୁଁ ତା ହେଲେ ଆସୁଛି । (ଯାଉ ଯାଉ ଫେରିଆସି) ଆଛା ଅଧ୍ୟାପକ ବାବୁ ଘର ସାମନାରେ ମ୍ୟୁନିସିପାଲଟି ବାଲା ପାଇଯାକର ମଇଳା ପକାଉଛନ୍ତି, ଆପଣ କିଛି କହୁନାହାଁନ୍ତି ?

ଶୁଭେନ୍ଦୁ : ମୁଁ ତ ମାସେ ହେଲା ଆସିଛି । ଭାବିଲି କାଳେ ଆଗରୁ ଏମିତି ଚାଲିଥିବ ।

ବାଳ : ଚାଲିଥିବ କ'ଣ ? ମୁଁ ଆଜି ସବୁ ସଫା କରିବାକୁ କହୁଛି । ପୁଣି ସେମିତି ହେଲେ ମୋତେ ମୋ ଘରୁ ଡାକି ଆଣିବେ । ବାଳ ବଳରାମ ଚୌଧୁରୀ ରିଟାୟାର୍ଡ୍ କଲା ବୋଲି ତାର ପ୍ରତାପ କ'ଣ କମିଗଲା । ସାରା ମ୍ୟୁନିସିପାଲଟିକୁ ପାଟିକରି କମ୍ପେଇ ଦେବି । ବୁଝିଲେ । ଆସୁଛି ।

(ଚାଲିଗଲେ । ଭବାନୀ ତାଙ୍କ ଯିବା ପଥକୁ ଚାହିଁ ତ୍ରାହିରେ ମୁଣ୍ଡିଆ ମାରିଲା)

ଭବାନୀ : ଓହୋ.... ରକ୍ଷା ପାଇଗଲା ମଣିଷ ।

ଶୁଭେନ୍ଦୁ : ତାଙ୍କୁ ମୁଁ ବିବାହିତ ବୋଲି କେମିତି କହି ଦେଇନ୍ଥ ?

ଭବାନୀ : ଆରେ ସେ କଥା କହିନଥଲେ, ଏ ଘର ମିଳିଥାନ୍ତା ? ତେଣେ ତାଙ୍କୁ କହି ଦେଇଛି କିନ୍ତୁ ତୋତେ କହିବାକୁ ଭୁଲି ଯାଇଥିଲି ।

ଶୁଭେନ୍ଦୁ : ମୁଁତ ସତକଥା କହି ଦେଇଥିଲି । ତୁ ଆସି ରକ୍ଷା କରିଦେଲୁ । ନ ହେଲେ ସବୁ ଯାଇଥାନ୍ତା ।

ଭବାନୀ : ଆରେ ମୁଁ ସେପଟ ଦୋକାନରେ ସଉଦା କିଣୁଛି-ବୁଢ଼ା ମ୍ୟୁନିସପାଲଟି ମେହେନ୍ତର ସହିତ ପାଟି କରିବାର ଶୁଣିଲି । ମୁଁ ଠିକ୍ ଅନୁମାନ କରିଦେଲି ଯେ ସେ ତୋ ପାଖକୁ ଆସିବ । ତୁ କାଳେ ନିଜକୁ ଅବିବାହିତ ବୋଲି କହିଦେବୁ, ସେଥିପାଇଁ ଧାଇଁ ଆସିଲି ।

ଶୁଭେନ୍ଦୁ : ଆଚ୍ଛା, ବୁଢ଼ା ବିନା ଫାମିଲି ଲୋକଙ୍କୁ କାହିଁକି ଘର ଦେବାକୁ ମନା କରୁଛି?

ଭବାନୀ : ଯାହା ଶୁଣିଛି ୟା' ପୂର୍ବରୁ ଏଇଠି କିଏ ଜଣେ ଭଡ଼ାରେ ରହିଥିଲା-ବୁଢ଼ାର ଗୋଟେ ଝିଅକୁ ପ୍ରେମ କରି କୋର୍ଟରେ ମ୍ୟାରେଜ୍ କରିଦେଲା । ସେଇ ଦିନଠୁ ବୁଢ଼ା ବିଗିଡ଼ି ଯାଇଛି । (ବାଳ ବଳରାମ ପଶି ଆସିଲେ)

ଶୁଭେନ୍ଦୁ : ଆପଣ ପୁଣି ଫେରିଲେ ମଉସା ?

ବାଳ : ସେ ମଇଳା ସବୁ ସଫା ହୋଇଗଲା ।

ଶୁଭେନ୍ଦୁ : ଭଲହେଲା । ମୁଁ ଏଥର ଦେଖିବି, ସେମାନେ ଯେମିତି ମଇଳା ପକେଇବେନି ।

ବାଳ : ଠିକ୍ ଅଛି । ଆଚ୍ଛା ତୁମ ଦୁଇଜଣଙ୍କୁ ମୁଁ ଆଉଥରେ ପଚାରିବାକୁ ଆସିଛି, ଏ ବାହାଘର କଥା ନେଇ ମୋତେ ଠକୁନତ ?

ଭବାନୀ : ଆପଣଙ୍କର ସେ ବାଘୁଆ ନିଶ ଆଉ ତିକ୍ଷ୍ଣ ଆଖି ଥରେଯିଏ ଦେଖିଛି, ତା ତ୍ରଉଦ ପୁରୁଷରେ କେବେ ଠକିବାର ସାହସ କରିପାରିବ ? ତା'ପରେ ଆପଣ ଜଣେ ଦୁର୍ଦାନ୍ତ ରିଟାୟାର୍ଡ ପୋଲିସ୍ ଅଫିସର୍ ବାଳବଳରାମ ଚୌଧୁରୀ ୟାନିକ୍ ବି.ବି.ସି. । ଆପଣଙ୍କ କାମ ବି ବ୍ରିଟିସ୍ ବ୍ରଡକାଷ୍ଟିଂ ସେଣ୍ଟର୍ ଭଳି । ଆପଣଙ୍କ ଚେଲା ଚେମୁଣ୍ଡା ସବୁଆଡ଼େ ଭର୍ତ୍ତି ହୋଇଛନ୍ତି । ଆମ କଥାର ସତ୍ୟତା ପରୀକ୍ଷା କରିବାକୁ ଆପଣଙ୍କୁ କେତେ ସମୟ ଲାଗିବ ?

ବାଳ ନାଇଁ ବୁଢ଼ା ହୋଇଗଲାଣିତ, ସେଇଥିପାଇଁ ସନ୍ଦେହ ହେଉଛି ।

ଭବାନୀ : କିଛି ସନ୍ଦେହ କରିବାର ନାହିଁ । ଆପଣ ପୁରୀରୁ ଜଗନ୍ନାଥ ଦର୍ଶନ କରି ଆସନ୍ତୁ ଭାଉଜଙ୍କ ହାତରେ ବଢିଆ ଖାନା ତିଆରି କରେଇ ମୁଁ ନିଜେ ନିମନ୍ତ୍ରଣ କରି ଆସିବି ।

ବାଳ : ସେ ସବୁର କିଛି ଦରକାର ନାହିଁ ଖାଲି ଶୁଭେନ୍ଦୁ ବାବୁଙ୍କର ସ୍ତ୍ରୀକୁ ଦେଖିଦେଲେ ମୋର ସନ୍ଦେହ ଦୂର ହୋଇଯିବ । ଆସୁଛି ।

(ବାଳ ବଳରାମ ଚାଲି ଯାଆନ୍ତି)

ଶୁଭେନ୍ଦୁ : ତାମାନେ ମୋତେ ଏ ଘର ଛାଡ଼ି ପୁଣି ସେଇ ହୋଟେଲରେ ରହିବାକୁ ପଡ଼ିବ ।

ଭବାନୀ : କାହିଁକି, ଏଇ ପନ୍ଦର ଦିନ ଭିତରେ ବାହା ହୋଇଗଲେ ?

ଶୁଭେନ୍ଦୁ : ପୁଣି ସେଇ ବାହାଘର ? ଏ ବୟସରେ ଏ ଚନ୍ଦାମୁଣ୍ଡ, ପାଚିଲା ବାଳ ନେଇ ଖାଲି ଲୋକହସା ହେବାକଥା ... ।

ଭବାନୀ : ହଉ ସେ କଥା ପରେ ବୁଝାଯିବ । ମୋତେ ତେଣେ ଖିଆପିଆ କରି ଅଫିସ୍

ଯିବାକୁ ହେବ । ମୁଁ ଚାଲିଲି ।

ଶୁଭେନ୍ଦୁ : ବୁଢା ଆସି ମୋ ସ୍ତ୍ରୀକୁ ଖୋଜିବା ପୂର୍ବରୁ ଘରଟା ଛାଡ଼ିଦେବି ବୋଲି ଭାବୁଛି ।

ଭବାନୀ : ଆରେ ଏବେ ଅନ୍ତତଃ କିଛିଦିନ ଆରାମରେ ରହ । ପରେ ଦେଖାଯିବ କ'ଣ ହେଉଛି । ନଈ ନ ଦେଖୁଣୁ ଲଙ୍ଗଳା କାହିଁକି ? ମୁଁ ଚାଲିଲି - ଅଫିସ୍ ଟାଇମ୍ ହେଇଗଲାଣି । (ଭବାନୀ ଚାଲିଗଲା)

ଶୁଭେନ୍ଦୁ ପରମା ।

ପରମା : (ଆସିଛି କିନ୍ତୁ ହାତଦୁଇଟା ପଛକୁ କରି ଗୋଟେ ଛୋଟ ସଣ୍ଣୁଆସି ଧରିଛି ।) ମୋତେ ଡାକିଲେ ଆଜ୍ଞା ?

ଶୁଭେନ୍ଦୁ : ହଁ, ଖାଇବାକୁ ହେଲା ?

ପରମା : ସବୁ ହେଇଯାଇଛି । ଖାଲି ଡାଲିଟା... ଆପଣ ଗାଧୁଆ ପାଧୁଆ କରନ୍ତୁ ।

ଶୁଭେନ୍ଦୁ ଡାଲିଟା କ'ଣ ହେଲା ?

ପରମା : କିଛି ହେଇନି ଯେ ... କେବଳ ଆପଣ ଚଳେଇ ନେଳେ ହେଲା... ।

ଶୁଭେନ୍ଦୁ : ତା'ମାନେ ଡାଲି କରିନୁ ?

ପରମା : କରିଛି, ହେଲେ ସେ ଚଣ୍ଡାଳଟା- ଥିଲା ଥିଲା ଡାଲି ଉପରେ ଡାଇଭ୍ ମାରିଲା ତ... ।

ଶୁଭେନ୍ଦୁ : ଡାଇଭ୍ ମାରିଲା... ?

ପରମା : ଆଜ୍ଞା । ଛାତ ତଳେ ତଳେ ବୁଲୁଥିଲା - ଯେମିତି ଡାଲିର ଛୁଙ୍କ ଦେଇଦେଇଛି- ବାସ୍ନାଟା ତାକୁ ଭଲଲାଗିଲା ନା କ'ଣ - ଡାଲି ଚାଖିବାକୁ ତଳକୁ ଡେଇଁ ପଡ଼ିଲା । ପୁଅ ପାନେ ପାଇଛି ଯେ... ।

ଶୁଭେନ୍ଦୁ : ଆରେ କିଏ ପାନେ ପାଇଛି ସିଧା ସିଧା କହ ?

ପରମା : ଏଇ ଜନ୍ତୁଟା ଆଜ୍ଞା... । (ପରମା ସଣ୍ଣୁଆସିରେ ଧରିଥିବା ମଲା ଝିଟିପିଟିକୁ ଦେଖାଏ ।)

ଶୁଭେନ୍ଦୁ : ଛାକ୍... । (ଶୁଭେନ୍ଦୁ ରାଗି ଚାଲିଯାଏ । ପରମା ମୁହଁକୁ ବିକୃତ କରି ଶୁଭେନ୍ଦୁ ବାଟକୁ ଚାହିଁରହେ ।)



# ତୃତୀୟ ପାଦ

(ସମୟ ସନ୍ଧ୍ୟା - ଝଡ଼ ଓ ବର୍ଷାର ଶବ୍ଦ ଶୁଣାଯାଉଅଛି । ଶୁଭେନ୍ଦୁ ଟେବୁଲ୍ ପାଖରେ ବସି କ'ଣ ଲେଖାଲେଖି କରୁଛି । ପରମା ଘର ସାରା କ'ଣ ଗୋଟେ ଖୋଜୁଛି)

ଶୁଭେନ୍ଦୁ : ପରମା, କ'ଣ ଖୋଜୁଛୁ ?

ପରମା : କ୍ୟାଣ୍ଡେଲ୍ ଖୋଜୁଛି । ଦେଖୁନାହାଁନ୍ତି ବାହାରେ କେମିତି ବର୍ଷା ! ଲାଇନ୍ କେତେବେଳେ କଟିଯାଇପାରେ । ଏଇଠି ରଖି ଦେଇଥିଲି ମିଳୁନି ... ।

ଶୁଭେନ୍ଦୁ : ରୋଷେଇ କେତେ ଦୂର ଗଲା ?

ପରମା : ଚାଲିଛି ଆଜ୍ଞା ।

ଶୁଭେନ୍ଦୁ : କ'ଣ କ'ଣ ରାନ୍ଧିବୁ ?

ପରମା : ଭାତ, ଡାଲମା, ଆଉ ଯାହା କହିବେ ଭଜାଭଜି କରିଦେବି ।

ଶୁଭେନ୍ଦୁ : ଯାହା କରିବା କଥା ଜଲଦି କର । ଦେଖୁଛୁ ତ କେମିତି ଲଗାଣ ବର୍ଷା ଲାଗିରହିଛି । ଜଲଦି ଖାଇ ଜଲଦି ଶୋଇପଡ଼ିବା ।

(ହଠାତ୍ ଗୋଟେ ଘଡ଼ଘଡ଼ି ସହ ବିଜୁଳୀ ଝଲସି ଉଠିଲା)

ପରମା : ଏଇ କ୍ୟାଣ୍ଡେଲ୍ ମିଳିଗଲା ଆଜ୍ଞା, ମୁଁ ଯାଏ ରୋଷେଇ ସାରିଦିଏ ।

(ପରମା ଚାଲିଗଲା । ପୁଣି ଗୋଟେ ଘଡ଼ଘଡ଼ି ଶବ୍ଦରେ ଦରଜା ଖୋଲିଗଲା । ବାହାରୁ ପଶି ଆସିଲେ ଜଣେ ଯୁବତୀ, ହାତରେ ଗୋଟିଏ ସୁଟକେସ୍ । ବର୍ଷାରେ ସେ ଭିଜି ଯାଇଛନ୍ତି ।)

ବନ୍ୟା : ନମସ୍କାର ।

ଶୁଭେନ୍ଦୁ : ନମସ୍କାର, ଆପଣ ?

ବନ୍ୟା : ଆପଣ ଶୁଭେନ୍ଦୁ ବାବୁ ନା ?

ଶୁଭେନ୍ଦୁ : ହଁ, ହେଲେ ଆପଣ କିଏ ?

ବନ୍ୟା : ମୋତେ ଆପଣ ଚିହ୍ନି ପାରିବେନି । ମୁଁ ଝରଣାର ସାଙ୍ଗ । ବାହାରେ ଭିଷଣ ଝଡ଼, କୌଣସି ଉପାୟରେ ବସଷ୍ଟାଣ୍ଡରୁ ଆସି ଏଠି ପହଁଚିଗଲି । ଝରଣା କେଉଁଠି?

ଶୁଭେନ୍ଦୁ : ଆପଣ କାହା କଥା କହୁଛନ୍ତି ?

ବନ୍ୟା : ଝରଣା ମହାନ୍ତି । ଆପଣଙ୍କର ସ୍ତ୍ରୀ ।

ଶୁଭେନ୍ଦୁ : ଆପଣ ବୋଧହୁଏ, ଭୁଲ୍ ଘରେ ପହଁଚ଼ି ଯାଇଛନ୍ତି ।

ବନ୍ୟା : ବାଃ, ଆପଣ ବଡ ମଜାଲୋକ ଦେଖୁଛି । ମୁଁ ପୁଣି ଭୁଲ୍ ଘରେ ପହଁଚ଼ିଛି ?

ଶୁଭେନ୍ଦୁ : ଆପଣ ମୋତେ ଚ଼ିହ୍ନନ୍ତି ? ମୁଁ ଶୁଭେନ୍ଦୁ ଦାସ ।

ବନ୍ୟା : ଜାଣେ, ବାହାଘରଟା ଆଟେଣ୍ଡ କରିପାରିଲିନି ବୋଲି, କ'ଣ ଚ଼ିହ୍ନି ପାରିବେନି ବୋଲି ଭାବୁଛନ୍ତି ? ଆପଣଙ୍କର ବାହାଘରର ସମସ୍ତ ଫଟୋ ଝରଣା ମୋ ପାଖକୁ ପଠେଇ ଦେଇଥିଲା । ମୁଁ ଠିକ୍ ଚ଼ିହ୍ନି ନେଇଛି ।

ଶୁଭେନ୍ଦୁ : ତଥାପି ଆପଣ ଭୁଲ୍ କରୁଛନ୍ତି ମିସ୍ ... ।

ବନ୍ୟା : ମୋ ବିଷୟରେ ଝରଣା ଆପଣଙ୍କୁ କିଛି କହିନି ବୋଧହୁଏ । ସେ ମୋ ପିଲାଦିନର ସାଙ୍ଗ । ମୋତେ ସେ "ବିନି" ବୋଲି ଡାକେ ।

ଶୁଭେନ୍ଦୁ : ଆପଣ ତଥାପି ଭୁଲ୍ ବୁଝୁଛନ୍ତି । ଆପଣ ଭୁଲ୍ ଘରେ ପହଁଚ଼ି ଯାଇଛନ୍ତି ।

ବନ୍ୟା : ବାହାଘର ପରେ ବରଂ ଆପଣ ଏ ଘରକୁ ନୂଆ ଆସି ରହିଛନ୍ତି । ମୁଁ କିନ୍ତୁ ୟା'ପୂର୍ବରୁ ଏଇ ଘରେ ଝରଣା ସାଙ୍ଗରେ ଅନେକ ବାର ରହିଛି । ଘରଟା କେମିତି ଭୁଲ୍ ହୋଇଯିବ । କୁଆଡ଼େ ଯାଇଛି ସେ, କ'ଣ ରୋଷେଇ ଘରେ? ଝରଣା ଝରଣା (ଭିତରକୁ ଚ଼ାଲି ଯାଉଥିଲା)

ଶୁଭେନ୍ଦୁ : ଆଜ୍ଞା ... ଶୁଣନ୍ତୁ ... ଶୁଣନ୍ତୁ ... ।

ବନ୍ୟା : ଶୁଣିବା ଦରକାର ନାହିଁ । ବର୍ଷାରେ ଭିଜି ଯାଇଛିତ, ଗୋଟେ କପ୍ ଚ଼ା' ନିହାତି ଦରକାର । (ପୁଣି ଭିତରକୁ ଯାଉଥିଲେ)

ଶୁଭେନ୍ଦୁ : ନା ଆପଣ ସିଆଡ଼େ ଯାଇପାରିବେନି । ସେଇଟା ରୋଷେଇ ଘର ।

ବନ୍ୟା : (ହସି) ଜାଣେ, ଭଲ ଭାବରେ ଜାଣେ ।ଏପଟେ ରଷେଇ ଘର, ସେପଟେ ବେଡ୍ ରୁମ୍, ତା ପାଖକୁ ଗାଧୁଆ ଘର, ପାଇଖାନା, ରୋଷେଇ ଘର ପଛ ପାଖରେ ଛୋଟ ଏକ ଦୁଆର । ଦୁଆରେ ଛୋଟ ଏକ ତୁଳସୀ ଚ଼ଉରା ପାଖରେ ଗୋଟେ ଅମୃତଭଣ୍ଡା ଗଛ, ଯଉଟା ମୁଁ ଗାଁରୁ ଆଣି ଝରଣାକୁ ଦେଇଥିଲି । ମୁଁ ଯାଏ ଝରଣାକୁ ଦେଖାକରି ଆସେ ।

ଶୁଭେନ୍ଦୁ : କାହାକୁ ଦେଖା କରି ଆସିବେ ?

ବନ୍ୟା : (ହସି) ଆପଣଙ୍କର ସହଧର୍ମିଣୀଙ୍କୁ ।

ଶୁଭେନ୍ଦୁ : ଏଠି ମୋର କୌଣସି ସହଧର୍ମିଣୀ ବା ସହକର୍ମିଣୀ ନାହାଁନ୍ତି ।

ବନ୍ୟା : କୁଆଡ଼େ ବାହାରକୁ ଯାଇଛି ତା ହେଲେ ?

ଶୁଭେନ୍ଦୁ : ନା, ଏ ଘରେ ମୁଁ ଏକା, ଅବିବାହିତ । I mean I am not married at all ।

ବନ୍ୟା : (ହସି) ଦେଖନ୍ତୁ ବେଶୀ ରସିକତା କରନ୍ତୁନି । ଝରଣା ଯଦି ଘରେ ନାହିଁ ସଫା ସଫା କହିଦିଅନ୍ତୁ ।

ଶୁଭେନ୍ଦୁ ଝରଣା, ଝରଣା, ଝରଣା । ବାରମ୍ବାର କହୁଛି ମୁଁ ଶୁଭେନ୍ଦୁ ଦାସ, ଇଂରାଜୀ ଅଧ୍ୟାପକ, ଅବିବାହିତ । କୌଣସି ଝରଣା ସହିତ ମୋର ଦେଖା ହୋଇନି, ବିବାହ ହୋଇନି କି ବିଚ୍ଛେଦ ବି ଘଟିନି । ଝରଣା କିଏ ମୁଁ ଆଦୌ ଜାଣିନି ।

ବନ୍ୟା : ତା' ମାନେ ?

ଶୁଭେନ୍ଦୁ : ଆପଣ ଗୋଟେ ଶୁଷ୍କ ମରୁଭୂମୀରେ ଆସି ଝରଣା ଖୋଜୁଛନ୍ତି । ବେକାର, ଏଠି ଯାହା କଲେ ବି ଝରଣା ମିଳିବେନି ।

ବନ୍ୟା : ଏଇଟା ତା ହେଲେ ଝରଣା ଘର ନୁହେଁ ?

ଶୁଭେନ୍ଦୁ : ଆଦୌ ନୁହେଁ ।

ବନ୍ୟା : କିନ୍ତୁ ବାହାଘର ପୂର୍ବରୁ ସେ ଏ ଘରେ ରହୁଥିଲା ? ମୁଁ ଅନେକ ଥର ଆସିଛି । ଗତ ଛ' ମାସ ହେଲା ଚିଠିପତ୍ର ନାହିଁ । ତା' ବାହାଘରର କାର୍ଡ ଯାହା ପାଇଛି ଆଉ ଫଟୋ ମଧ୍ୟ । ସେଇଥିପାଇଁ ଭାବିଲି ସେ ତା'ର ସ୍ୱାମୀ ସହିତ ଏଇଠି ରହୁଛି । ଆଚ୍ଛା ଆପଣଙ୍କ ନାଁ ଶୁଭେନ୍ଦୁ ଦାସ ବୋଲି କହିଲେ ଯେ ।

ଶୁଭେନ୍ଦୁ : ହଁ ମୋ ନାଁ ସେୟା, ବାହାରେ ନେମ୍ ପ୍ଲେଟ୍ ଲାଗିଛି ।

ବନ୍ୟା : ଦେଖନ୍ତୁ କି ଯୋଗାଯୋଗ, ଝରଣାର ସ୍ୱାମୀ ନାଁ ବି ଶୁଭେନ୍ଦୁ ଦାସ ।

ଶୁଭେନ୍ଦୁ : ସତେ ନା କ'ଣ ?

ବନ୍ୟା : ଦେଖିବେ ତାର ଚିଠି ଦେଖିବେ, ମୋ ଆଟାଚିରେ ଅଛି ।
(ଆଟାଚି ଖୋଲିବାକୁ ଯିବା)

ଶୁଭେନ୍ଦୁ : ଥାଉ, ସେ ସବୁର ଆବଶ୍ୟକତା ନାହିଁ । ଆପଣ ମିଛ କାହିଁକି କହିବେ । ମୁଁ ଏଇ ଘରେ ମାସେ ହେଲା ଭଡ଼ାରେ ରହୁଛି ।

ବନ୍ୟା : ମୋର ଭୁଲ୍ ହୋଇଯାଇଛି । ଆପଣଙ୍କୁ ହଇରାଣ କରିଥିବାରୁ ମୋତେ କ୍ଷମା ଦେବେ । ନମସ୍କାର । ମୁଁ ଆସୁଛି । (ସୁଟକେସ୍ ଧରି ଯିବାକୁ ପ୍ରସ୍ତୁତ)

ଶୁଭେନ୍ଦୁ : କିନ୍ତୁ ଏଇ ବର୍ଷା ପାଗରେ ଯିବେ କେଉଁଠିକି ? ପୁଣି ଏତେ ରାତି ହେଲାଣି?

ବନ୍ୟା : ପାଖରେ ଲଜ୍ ଫଜ୍ ନାହିଁ ?

ଶୁଭେନ୍ଦୁ : ଏ ପାଖରେ ତ ମିଳିବନି । ଯାହା ମିଳିବ ରେଳ ଷ୍ଟେସନ ପାଖରେ । ଏଠୁ ଚାରି ପାଞ୍ଚ କିଲୋମିଟର ଦୂର ।

ବନ୍ୟା : ସେଇଠିକି ଚାଲିଯିବି ।

ଶୁଭେନ୍ଦୁ : କେମିତି ଯିବେ । ଏଇ ଝଡ଼ ବର୍ଷାରେ ଆଦୌ ନିରାପଦ ନୁହେଁ ।

ବନ୍ୟା : ଆଉ କଣ କରିବି । ମୋର ଏଇଠି ଝରଣା ଛଡ଼ା ଯେ କେହି ନାହିଁ ।

ଶୁଭେନ୍ଦୁ : ହଁ ମୋ ପୂର୍ବରୁ ଏଠି କେହି ଜଣେ ମହିଳା ରହୁଥିଲେ । ତାଙ୍କ ନାଁ ଝରଣା ହୋଇଥିବ । ଆଚ୍ଛା କଣ କରିବେ, ଆପଣଙ୍କର ବହୁତ୍ ଅସୁବିଧା ହେଲା ।

ବନ୍ୟା : ଆଜି ଶୁକ୍ରବାର, ମୋ ପାଇଁ ଶୁଭଦିନ । ଆଜି କାହିଁକି ଅସୁବିଧା ହେଲା ଜାଣିପାରୁନି । ଆଚ୍ଛା ଟର୍ଚ୍ଚ ଅଛି ?

ଶୁଭେନ୍ଦୁ : ଟର୍ଚ୍ଚ ?

ବନ୍ୟା : ଷ୍ଟେସନ ପାଖରେ ଲଜ୍ ନା, ଟର୍ଚ୍ଚ ଥିଲେ ଯାଇ ହୁଅନ୍ତା । ଛତା ବି ରଖିନି । ଟିକିଏ ଛାଡ଼ିଦେଇ ଆସିବେ? ନ ହେଲେ ଛତା ବା ଟର୍ଚ୍ଚ ଗୋଟେ ଯୋଗାଡ଼ କରିଦେଲେ ଏକା ଏକା ପଳେଇ ଯାଇପାରିବି ।

ଶୁଭେନ୍ଦୁ : ଦେଖନ୍ତୁ , ଗୋଟେ କଥା କହିବି ।

ବନ୍ୟା : କୁହନ୍ତୁ ।

ଶୁଭେନ୍ଦୁ : ଏତେ ରାତିରେ କୁଆଡ଼େ ହଇରାଣ ହୋଇ ଯିବା ଅପେକ୍ଷା ବରଂ ଏଇଠି ରହିଯାଆନ୍ତୁ ।

ବନ୍ୟା : ଏଠି ଜଣେ ଅବିବାହିତ ପୁରୁଷ ପାଖରେ ।

ଶୁଭେନ୍ଦୁ : ଆପଣ ଏଇଠି ରହିବେ । ମୋର ସାଙ୍ଗ ଘର ଏଇ ପାଖରେ ମୁଁ ତା ଘରେ ଯାଇ ଶୋଇଯିବି ।

ବନ୍ୟା : ଏଇ ବର୍ଷା ପାଗରେ ମୋ ପାଇଁ ଆପଣ କାହିଁକି ଅସୁବିଧା ଭୋଗିବେ ?

ଶୁଭେନ୍ଦୁ : ଗୋଟିଏ ରାତି କଥା ତ ମୁଁ ଚଳେଇ ନେବି ।

ବନ୍ୟା : ମୋତେ କିନ୍ତୁ ଏକା ଏକା ଭୟ ଲାଗିବ ।

ଶୁଭେନ୍ଦୁ : ରମା ଅଛି , ମୋ ଚାକର ପିଲା ।

ବନ୍ୟା : ନା-ନା, ଆପଣଗଲେ ଚଳିବନି, ବରଂ ଆପଣ ରୁହନ୍ତୁ ।

ଶୁଭେନ୍ଦୁ : ଏ ଘର ଛଡ଼ା ଶୋଇବା ପାଇଁ ଗୋଟିଏ ଘର ମାତ୍ର ।

ବନ୍ୟା : ସେଥିରେ କ'ଣ ଅଛି । ଆପଣ ସେ ଘରେ ଶୋଇଯିବେ । ମୁଁ ଏଇଠି ରାତିସାରା ବସି ବସି କଟେଇ ଦେବି ।

ଶୁଭେନ୍ଦୁ : ବସି ବସି କଟେଇ ଦେବେ କାହିଁକି ?

ବନ୍ୟା : ମୋତେ ନିଦ ହବନି । କାରଣ ବର୍ଷାରେ ଭିଜିଛି ପୁଣି ଅଲଗା ଯାଗା ।

ଶୁଭେନ୍ଦୁ : ନାଁ, ଆପଣ ଭିତରେ ଶୋଇଯିବେ, ମୁଁବରଂ ଏଇଠି ସୋଫା ଉପରେ ଆଡ଼ଜଷ୍ଟ କରିନେବି ।

ବନ୍ୟା : ମୋ ପାଇଁ ଆପଣ ଏତେଟା ଅସୁବିଧା ଭୋଗିବେ ?

ଶୁଭେନ୍ଦୁ : ନା, ଅସୁବିଧା କ'ଣ? ଏମିତି ବିପଦରେ କ'ଣ କେହି ସାହାଯ୍ୟ କରେନି । ଆପଣ ଟିକେ ବଦଳା ବଦଳି କରି ଫ୍ରେସ୍ ହୁଅନ୍ତୁ, ମୁଁ ଖାଇବା କଥାଟା ବୁଝେଁ । (ବନ୍ୟା ଆଣିଥିବା ଆଟାଚିଟି ଶୁଭେନ୍ଦୁ ଉଠାଇଲା ବେଳକୁ ବନ୍ୟା ବି ହାତ ବଢ଼ାଇ ଦିଏ । ଫଳରେ ଉଭୟଙ୍କ ମୁଣ୍ଡ ବାଜେ, ଦୁହେଁ ହସିଉଠନ୍ତି । ପରେ ଶୁଭେନ୍ଦୁ ଆଟାଚି ନେଇ ବେଡ୍‌ରୁମକୁ ଯାଏ, ତା ପଛେ ପଛେ ବନ୍ୟା ।)

ଶୁଭେନ୍ଦୁ : (ଭିତରୋ ପରମା, ପରମା (ବାଃ ନିଦରେ ଶୋଇ ପଡ଼ିଛୁ ଟି) ପରମା । (ଶୁଭେନ୍ଦୁ ପ୍ରବେଶ କରେ । ନିଦ ମଳ ମଳ ଆଖିରେ ପରମା ଆସି ପହଁଚେ) ଭାତ ବସେଇ ଦେଇ ଶୋଇ ଯାଇଥିଲୁ ଟି ।

ପରମା : ମୁଣ୍ଡଟା ଭିଷଣ ବିନ୍ଧୁଛି ଆଜ୍ଞା, ଚ଼ାହିଁ ହଉନି । ଆଜି କିଛି କରିହବନି । ଭାତରେ ଦି'ଟା ଆଳୁ ପକେଇ ଦେଇଛି । ଭାତ ଆଳୁ ଭରତା ।

ଶୁଭେନ୍ଦୁ : ନା-ଭାତ, ଆଳୁ ଭରତାରେ ଚ଼ଳିବନି । ଗେଷ୍ଟ ଅଛନ୍ତି । ବଜାରକୁ ଯା' କିଛି ହେଲେ ନେଇଆସିବୁ ।

ବନ୍ୟା : (ପ୍ରବେଶ) ବଜାରକୁ ଯିବାଦରକାର ନାହିଁ । ପରମା କ'ଣ ଅଛି କହିଲୁ ? ଚ଼ାଲ ମୁଁ ତୋତେ ସାହାଯ୍ୟ କରିବି ।
(ଭିତରକୁ ଯାଉଥିଲେ)

ଶୁଭେନ୍ଦୁ : ଆପଣ କିଛି କରିବା ଦରକାର ନାହଁ । ପରମା ଦେହ ଖରାପ ତ ବଜାରରୁ ମୁଁ ଯାଇ ସବୁ ନେଇ ଆସୁଛି ।

ବନ୍ୟା : ଘରେ ଜଣେ ଝିଅ ଥାଉ ଥାଉ ବଜାରରୁ ମଗେଇ ଖାଇବେ, ଏଇଟା କ'ଣ

ସୁନ୍ଦର ଦେଖାଯିବ । (ଚାଲି ଯାଉ ଯାଉ) ପରମା ତୁ ଆସିଲୁ ଭିତରକୁ ।
(ବନ୍ୟା ଭିତରକୁ ଚାଲି ଯାଆନ୍ତି)

ପରମା : ଇଏ କିଏ ବାବୁ ?

ଶୁଭେନ୍ଦୁ : ଉଁ ... (ଅନ୍ୟ ମନସ୍କ)

ପରମା : (ଆଖି ମଳି ମଳି) ମୁଁ ଶୋଇଛି ନା ଚେଇଁଚି ବାବୁ । ମୋ ଆଖି ସାମ୍ନାରେ ଆପଣଙ୍କ ହାତ ଆଙ୍ଗୁଠି ଦେଖାଇଲେ ।

ଶୁଭେନ୍ଦୁ : କାହିଁକି ?

ପରମା : ମୁଁ ସ୍ୱପ୍ନ ଦେଖୁନି ତ ବାବୁ ?

ଶୁଭେନ୍ଦୁ : ଚୋପ୍ ଇଡ଼ିଅଟ୍ ... ।
(ପରମା ଚାଲିଯାଏ । ମଞ୍ଚରୁ ଆଲୋକ କମିଯାଏ ଓ ପରେ ପରେ ଜଳିଉଠେ)

ବନ୍ୟା : (ଚା' କପ୍ ଧରି ପ୍ରବେଶ) ଚା' ନିଅନ୍ତୁ ।

ଶୁଭେନ୍ଦୁ : ଯା' ଭିତରେ ଆପଣ ଚା' କରି ଦେଲେଣି ?

ବନ୍ୟା : ବର୍ଷା ପାଗରେ ଚା' ଭଲ ଲାଗେନି ?

ଶୁଭେନ୍ଦୁ : ହଁ, ଆପଣ ?

ବନ୍ୟା : ଅଛି, ମୁଁ ଖାଇନେବି । ଦେଖିଲି ଘରେ ସବୁ ପରିବା ଅଛି । ଆପଣ ଯଦି ତରତର ନ ହୁଅନ୍ତି ମୁଁ ସବୁ ରୋଷେଇ ସାରିଦେବି ।

ଶୁଭେନ୍ଦୁ : କିନ୍ତୁ ଆପଣ ... ।

ବନ୍ୟା : ଆପଣ ମୋତେ ଅସମୟରେ ସାହାଯ୍ୟ କରିଛନ୍ତି । ଆପଣଙ୍କ ପାଇଁ କିଛିଟା କରିପାରିଲେ ମୋତେ ଖୁସି ଲାଗିବ ।

ଶୁଭେନ୍ଦୁ : ଠିକ୍ ଅଛି । ଆପଣ ଯାହା କରିବା କଥା ଶିଘ୍ର କରନ୍ତୁ । ଯେମିତି ବର୍ଷା ଲାଗିଛି ଲାଇନ୍ କଥା କହି ହଉନି ।

ବନ୍ୟା : ତି' ଚାରିଟା ଆଇଟମ୍ କରିବାକୁ ମୋତେ ଅଧ ଘଣ୍ଟେ ସମୟ ଲାଗିବ ।
(ବନ୍ୟା ଭିତରକୁ ଚାଲିଯାଏ । ଶୁଭେନ୍ଦୁ ଚା' ପିଇବା ଅବସ୍ଥାରେ ସେଇ ଦିଗକୁ ଚାହିଁ ରହେ । ଗୋଟିଏ ଘଡ଼ଘଡ଼ିର ଝଲକ ସହିତ ସତେ ଯେମିତି ସବୁ କିଛି ଅନ୍ଧାର ହୋଇଯାଏ ।)



# ଚତୁର୍ଥ ପାଦ

(ସମୟ ସକାଳ – ବନ୍ୟା ସକାଳୁ ନିତ୍ୟକର୍ମ ସାରି ଅସଜଡ଼ା ଘରକୁ ସଜାଡ଼ିବାରେ ଲାଗିଛି । ତା କଣ୍ଠରୁ ଗୋଟିଏ ଗୀତ ଶୁଣାଯାଉଛି ।)

ବନ୍ୟା, ମୁଁ ଯେ ବନ୍ୟା
ମାନେନା ବାଧା ମାନେନା
ଅଲିଅଳ ମୁଁ ଯେ ଅମାନିଆ ଅତି
ଉଷସି ଧରାର, ରୂପସୀ କନ୍ୟା ...
ବନ୍ୟା ... ମୁଁ ଯେ ବନ୍ୟା... ।୦ ।

ବରଷାର ସଂଗୀତରେ ଯେବେନାଚେ ବନ ଭୂଇଁ
ମାତୁଆଲ ହୋଇ ଧାଏଁ ଏ କୂଳ ସେ କୂଳ ଛୁଇଁ
ଯାହାକୁ ଚାହେଁ ମୁଁ ନେଇଯାଏ ସାଥେ
ଉଷସି ଧରାର ରୂପସୀ କନ୍ୟା
ବନ୍ୟା... ମୁଁ ଯେ ବନ୍ୟା... ।୧ ।

ମମତାର ମଧୁସ୍ୱରେ ମନ ମୋର ଯାଏ ହଜି
ଭଲ ପାଇବାର ରଂଗେ ମୁଁ ଯେ ଯାଏ ନିତି ଭିଜି
ସାଗରେ ମିଶିବା ପାଇଁ ଧାଇଁଥାଏ ମୁଁ ଯେ
ଉଷସି ଧରାର ରୂପସୀ କନ୍ୟା
ବନ୍ୟା ... ମୁଁ ଯେ ବନ୍ୟା... ।୨ ।

(ଏଇ ଗୀତ ଭିତରେ ବନ୍ୟା ଫୁଲଦାନୀରୁ ଝାଡୁ ବାହାର କରି ଫୁଲ ସଜାଇବା, କାଛରେ ପେଣ୍ଟିଂ ଉପରେ ଟଙ୍ଗା ହୋଇଥିବା ମଇଳା ଗଞ୍ଜି, ପରିବା ବ୍ୟାଗ୍ ଇତ୍ୟାଦିକୁ ବାହାର କରିଦେବା ଇତ୍ୟାଦି କରିବେ । ଅସଜଡ଼ା ଘରଟି ନୂଆ ରୂପରେ ଦେଖାଯିବ ।)



# ପଞ୍ଚମ ପାଦ

(ସେଇ ସକାଳର କିଛି ସମୟ ପରେ ଦେଖାଯାଏ ଘରଟି ବେଶ୍ ସଜ୍ଜିତ ହୋଇଛି । ସକାଳର ପାଗ ପରିଷ୍କାର୍ । ମେଘ ଆଉ ନାହିଁ, କହିଲେ ଚଳେ । ଶୁଭେନ୍ଦୁ କ'ଣ ଗୋଟେ ବହି ଧରି ପଢୁଛନ୍ତି । ହାତରେ ଟ୍ରେ ଧରି ପଶି ଆସିଲା ପରମା ।)

ପରମା : ଚା' ନିଅନ୍ତୁ ଆଜ୍ଞା ।

ଶୁଭେନ୍ଦୁ : ସକାଳୁ ସକାଳୁ ଚା' କରି ସାରିଲୁଣି ... ? ବାଃ ପୁଣି ଟ୍ରେରେ ସଜ୍ଜା ହୋଇ ଆସିଛି ।

ପରମା : ସେଇ ବାବୁଆଣି ପରା ଏମିତି ଟ୍ରେରେ ଚା' ଆଣିବାକୁ କହିଲେ । ରାତି ଚାରିଟାରୁ ଉଠେଇ ମୋତେ ନାକେଦମ୍ କରିଦେଲେଣି ।

ଶୁଭେନ୍ଦୁ : ଚାରିଟାରୁ ଉଠି ଦି' ଜଣ ଯାକ କ'ଣ କରୁଥିଲ ?

ପରମା : ଏଇ ଘରଦ୍ୱାର ଦେଖି କିଛି ଜାଣିପାରୁନାହାଁନ୍ତି ? ସବୁ କେମିତି ସଜ୍ଜା ହୋଇ ଯାଇଛି । ବର୍ତ୍ତମାନ ଆପଣଙ୍କ ପାଇଁ ଭାତ, ଡାଲି, ତରକାରୀ, ଖଟା, ଆଳୁ ଚଟଣୀ, କଲରା ଭଜା ସବୁ ରୋଷେଇ ଶେଷ ।

ଶୁଭେନ୍ଦୁ : ଏତେ ଜଲଦି ରୋଷେଇ କରିବା କ'ଣ ଦରକାର ଥିଲା ?

ପରମା : ସେ ପରା ଚାଲିଯିବେ, ସେଥିପାଇଁ ସବୁ ରୋଷେଇ ସାରି ଦେଇଛନ୍ତି ।

ବନ୍ୟା : (ଭିତରୁ) ପରମା ।

ପରମା : ଯାଉଛି ବାବୁଆଣି ମା' । କପ୍‌ଟା ନେଇଯାଉଛି ।

ଶୁଭେନ୍ଦୁ : "ବାବୁଆଣି ମା" ଆରେ ଭିକାରୀଙ୍କ ଭଳି ଡାକୁଛୁ କ'ଣ ?

ପରମା : କ'ଣ ଡାକିବି କହି ଦେଉନାହାଁନ୍ତି ।

ଶୁଭେନ୍ଦୁ : ଖାଲି ମା' ଡାକୁନୁ ... ।

ପରମା : ସେମିତି ଖାଲିଟାରେ ମା' ଡାକିବାକୁ ଅଡୁଆ ଲାଗିବ । ଆପଣଙ୍କ ସ୍ତ୍ରୀ ହୋଇଥିଲେ ସିନା ମା' ଡାକନ୍ତି ।

ଶୁଭେନ୍ଦୁ : ହଁ ସତ କଥା, ଗୋଟେ ଅଜଣା ଝିଅକୁ ଏମିତି ମା' ଡାକିବା ଠିକ୍ ହବନି ।

ପରମା : ଦିଦି, କି ଅପା, ଚଳିବ ବାବୁ ? ମାଉସୀ ତ ଡାକି ହବନି ? ନାନୀ ଡାକିବି?

ଶୁଭେନ୍ଦୁ : ନା, ତୁ ବରଂ ମ୍ୟାଡାମ୍ ଡାକ ।

ପରମା : ମ୍ୟାଡାମ୍-ମ୍ୟାଡାମ୍ ବଢ଼ିଆ ଶୁଭୁଛି । ହେଲେ ମ୍ୟାଡାମ୍ ଅର୍ଥ ?

ଶୁଭେନ୍ଦୁ : ଅର୍ଥ, ସ୍ତ୍ରୀ, ଅପା, ନାନୀ, ମାଉସୀ ଯାହାକୁ କିଛି ଡାକିହବନି ତାକୁ ମ୍ୟାଡାମ୍ ଡକାହୁଏ ।

ପରମା : ଓଃ ବୁଝିଗଲି ଯେମିତି କାହାର ନାଁ ମନେ ନ ପଡିଲେ ଅମୁକ, ଢିଙ୍କି, ମହାକାଳି କୁହାଯାଏ ସେମିତି, ମ୍ୟାଡାମ୍ ଠିକ୍ ହେବ । ପରଦେଶୀ ଚଢ଼େଇ କୁଆଡ଼େ ଉଡ଼ିଆସି ବସିଯାଇଛନ୍ତି ପୁଣି କୁଆଡ଼େ ଚାଲିଯିବେ । ମ୍ୟାଡାମ୍ ଡାକଟା ଠିକ୍ ଖାପ ଖାଇବ ।  ମ୍ୟାଡାମ୍..... ମ୍ୟାଡାମ୍... (ପରମା ମ୍ୟାଡାମ ଶବ୍ଦକୁ ବିଭିନ୍ନ ସ୍ୱରରେ ଡାକିବାକୁ ଅଭ୍ୟାସ କରେ ।)

ଶୁଭେନ୍ଦୁ : ଚୋପ୍, ସେମିତି କ'ଣ କହୁଛୁ ?

ପରମା : (ପ୍ରବେଶ) ପରମା ମୁଁ କପ୍, ଟ୍ରେ ନେଇଯାଉଛି । ତୁ ଗଲୁ ଗୋଟେ ରିକ୍ସା ଡ଼ାକିଆଣିବୁ ।

ପରମା : ହଉ ମା ! (ଜିଭ କାମୁଡ଼ି) ମ୍ୟାଡାମ୍ ।

(ପରମା ମୁହଁରୁ ମ୍ୟାଡାମ୍ ଡାକ ଶୁଣି ବନ୍ୟା ଦେବୀ ପରମାକୁ ଚ଼ାହିଁ ହସିଦେଲେ)

ବନ୍ୟା : ଯା' ଜଲଦି – ମୋ ମୁହଁକୁ ଚ଼ାହିଁ ରହିଛୁ କ'ଣ ?

(ପରମା ଚ଼ାଲିଗଲା)

ଶୁଭେନ୍ଦୁ : ଏମିତି ସକାଳୁ ସକାଳୁ କେଉଁଠିକି ଯିବେ ?

ବନ୍ୟା : ଆପଣ ଭଦ୍ରଲୋକ ବୋଲି କାଲି ରାତିରେ ମୋତେ ବାହାର କରି ନ ଦେଇ ଆଶ୍ରୟ ଦେଲେ । ତା'ବୋଲି ଏଇଠି ରହି ଅନ୍ନ ଧ୍ୱଂସ କରି ଚ଼ାଲିଥିବି ନା' କ'ଣ ! କାଲି ମୋର ଇଣ୍ଟରଭ୍ୟୁ, କାଲି ପର୍ଯ୍ୟନ୍ତ ଲଜିଂରେ ରହିଯିବି ।

ଶୁଭେନ୍ଦୁ : କାଲି ତ ରବିବାର, ଇଣ୍ଟରଭ୍ୟୁ କେମିତି ହେଲା ?

ବନ୍ୟା : ହେଇଛି । ମୁଁ ଯୋଉଁ ଇଣ୍ଟରଭ୍ୟୁ ପାଇଁ ଆସିଛି ସେ ଗୁଡ଼ାକ ଏମିତି ଛୁଟି ଦିନମାନଙ୍କରେ ସ୍ଥିର ହୋଇଥାଏ ।

ଶୁଭେନ୍ଦୁ : ଠିକ୍ ଅଛି । ତେବେ ସକାଳୁ ଏଥିପାଇଁ ରୋଷେଇ ସାରିଦେବାର କ'ଣ ଦରକାର ଥିଲା । ପରମା କରିଥାଆନ୍ତା ।

ବନ୍ୟା : ନାଁ, ଜଣେ ସ୍ତ୍ରୀ ଲୋକ ଥାଉ ଥାଉ ପୁରୁଷ ପିଲା ରୋଷେଇ କରିବା ଠିକ୍

ନୁହେଁ । ତା'ପରେ ଖୁବ୍ ସକାଳୁ ସକାଳୁ ଉଠିବା ମୋ୍ର ପିଲା ଦିନର ଅଭ୍ୟାସ । ସେଇଥିପାଇଁ ଦି'ଟା ଫୁଟେଇ ଦେଲି । ପରମାକୁ କହିଛି ଆପଣ କଲେଜ୍ ଯିବା ପୂର୍ବରୁ ଗରମ କରି ଦେବ । ଅବଶ୍ୟ ମୋ ରାନ୍ଧିବାଟା ଆପଣଙ୍କୁ ଭଲ ନ ଲାଗିପାରେ ।

ଶୁଭେନ୍ଦୁ : ନା, ନା ସେମିତି କହିବେନି । ବରଂ ବହୁତ୍ ଦିନ ପରେ କାଲି ରାତିରେ ମୋ ବୋଉ ରାନ୍ଧଣା ଖାଇବା ଭଳି ଲାଗିଲା । ଆପଣ ଚାଲିଯାଉଛନ୍ତି ନ ହେଲେ, ଏ ପରମାକୁ ଟିକିଏ ଶିଖେଇ ଦେଇଥାନ୍ତେ ।

ବନ୍ୟା : ଯେତେ ଯାହା ଶିଖାଇଲେ ବି ପୁଅମାନଙ୍କ ଦ୍ୱାରା ଏସବୁ ହବନି । ଏଇ କାମଟା ସଂପୂର୍ଣ୍ଣ ଝିଅମାନଙ୍କର । ଖାଲି ତେଲ ମସଲା ଢାଳିଦେଲେ ଭଲ ରୋଷେଇ ହୋଇଯାଏନି । ସେଥିପାଇଁ ପରିଷ୍କାର ପରିଚ୍ଛନ୍ନତା ସହିତ ଶ୍ରଦ୍ଧା ଦରକାର । ହୋଟେଲ୍ ଖାଇବା ସେଇଥିପାଇଁ ଭଲ ଲାଗେନି ।

ଶୁଭେନ୍ଦୁ : ଆପଣ ଯାହା କହୁଛନ୍ତି ସବୁ ସତ ।

ବନ୍ୟା : ତା'ପରେ ଘରେ ଜଣେ ଝିଅପିଲା ନ ରହିଲେ ଘର ଦ୍ୱାର ସବୁ ଯେମିତି ଅଯତ୍ନ ଅସଜଡ଼ା ହୋଇପଡ଼ିରହେ । ଏଇ ଦେଖନ୍ତୁ, ସକାଳେ ଦେଖିଲି, ଏଇଠି ସୁନ୍ଦର ଦାମିକା ଫୁଲଦାନି କିନ୍ତୁ ତା ଭିତରେ ଫୁଲ ପରିବର୍ତ୍ତେ ଝାଡୁ ରହିଛି । ଏଠି ଗୋଟେ ସୁନ୍ଦର ପେଣ୍ଟିଂ ଉପରେ ପରମାର ମଇଳା ଗଞ୍ଜି ଟଣା ହୋଇଥିଲା ।

ଶୁଭେନ୍ଦୁ : ଏ ବିଷୟରେ ପରମାକୁ ମୁଁ ଅନେକ ସମୟରେ ତାଗିଦ୍ କରିଛି । ହେଲେ ସେ ଗୋଟେ ଇଡ଼ିଅଟ୍ କିଛି ଶୁଣିବନି ।

ବନ୍ୟା : ତାକୁ ଦୋଷ ଦେଇ ଆପଣ ଖସି ଯାଇପାରିବେନି । କାଲିଠୁ ଆସି ମୁଁ ଜାଣିପାରିଛି ଆପଣଙ୍କର ସବୁଦୋଷ । ଜଣାଯାଉଛି ଆପଣ ଜୀବନ ପ୍ରତି ବିତଶ୍ରଦ୍ଧ ହୋଇପଡ଼ିଛନ୍ତି । ଜୀବନକୁ ଭଲ ପାଇବା ପରିବର୍ତ୍ତେ ତା' ପାଖରୁ ନିଜକୁ ଦୂରେଇ ଦୂରେଇ ନେଉଛନ୍ତି ।

ଶୁଭେନ୍ଦୁ : ଏ ସବୁ କଥା ଆପଣ କେମିତି ଜାଣିପାରିଲେ ?

ବନ୍ୟା : ବାଃ, ଝିଅମାନଙ୍କୁ ପୁରୁଷ ମାନଙ୍କର ମୁହଁ ଦେଖି ଏ ସବୁ ଜାଣିବାର ଶକ୍ତି ଭଗବାନ ଦେଇଛନ୍ତି । ଆଚ୍ଛା, ପରମାଠୁ ଜାଣିଲି ଆପଣ ବାହା ହୋଇ ନାହାଁନ୍ତି । କ'ଣ ଜୀବନସାରା ବାହା ହେବେନି ବୋଲି ଭାବୁଛନ୍ତି ।

ଶୁଭେନ୍ଦୁ : ଏମିତି ଏକ ପ୍ରଶ୍ନର ଉତ୍ତର ମୁଁ ତ ଦେଇପାରିବିନି । ତେବେ ଏତିକି ଜାଣନ୍ତୁ ଯେ ମୁଁ କୌଣସି ଝିଅକୁ ଏ ବୟସରେ ବାହାହୋଇ ଅପମାନିତ କରିବାକୁ ଚାହୁଁନି ।

ବନ୍ୟା : ଆପଣଙ୍କର ଜଣେ ବିଶିଷ୍ଟ କବି ଆଉ ଜଣେ ଅଧ୍ୟାପକ ହିସାବରେ ନାଁ ଅଛି । ଅନେକ ଝିଅ ତ ଆପଣଙ୍କର ହାତଧରି ସଂସାର କରିବାକୁ ଗର୍ବ କରିବେ ।

ଶୁଭେନ୍ଦୁ : ଆପଣ ମୋତେ ଟିକିଏ ଏଲିଭେଟେଡ୍ କରି ଦେଉଛନ୍ତି । ତେବେ ଏଇ କଥା ବୁଝିବାକୁ ଆପଣଙ୍କ ଛଡ଼ା ଏ ଦୁନିଆଁରେ ଅନ୍ୟ କେହି ଝିଅ ଥାଇପାରେ ମୋର ବିଶ୍ୱାସ ହେଉନି ।

ବନ୍ୟା : ଅଛନ୍ତି । ମୋର ଜଣେ ସାଙ୍ଗ ଅଛି, ଆପଣ କହିଲେ ତା' ସହିତ ପ୍ରସ୍ତାବ ପକାଇପାରେ ।

ଶୁଭେନ୍ଦୁ : ନା' ନା' ଆପଣ ଯେମିତି ଭାବରେ ମୋତେ ବୁଝିଛନ୍ତି, ଆପଣଙ୍କ ସାଙ୍ଗ ସେମିତି ଭାବରେ ମୋତେ ଗ୍ରହଣ କରିବେ, ତା'ର କିଛି ମାନେ ନାହିଁ । ତା' ପରେ ମୋର ଏଇ ଚେହେରା ... ।

ବନ୍ୟା : ଆପଣଙ୍କ ଚେହେରା ଆପଣଙ୍କୁ ଖରାପ୍ ଲାଗୁଥାଇପାରେ । କିନ୍ତୁ ମୋ ସାଙ୍ଗକୁ ବୁଝାଇଦେବି-ଯେ ଟିକିଏ ଦୂରରେ ରହି କଣେଇ କରି ଚାହିଁଲେ- ଆପଣ ଯେ କୌଣସି ଫିଲ୍ମ ଷ୍ଟାର୍ ସହିତ ଟକ୍କର ଦେଇପାରିବେ ।

ଶୁଭେନ୍ଦୁ : (ହସି ହସି) ଆପଣ ମୋତେ ଥଟ୍ଟା କରିବାକୁ ଆରମ୍ଭ କଲେଣି ।

ବନ୍ୟା : ନା, ଯାହା ସତ ସେ'ୟା କହୁଛି । ପରେ ସୁବିଧା ଦେଖି ମୋ ସାଙ୍ଗକୁ ଏଠିକି ନେଇଆସିବି... । ସେତେବେଳେ କହିବେ ... ।

(ପରମା ଆସିଲା)

ପରମା : ମ୍ୟାଡାମ୍, ସେ ଛକରେ ରିକ୍‌ସା ନାହିଁ । ପାଖ ଦୋକାନୀକୁ କହି ଦେଇଛି ରିକ୍‌ସା ଆସିଲେ ପଠାଇଦେବ ।

ବନ୍ୟା : (ହସି) ଠିକ୍ ଅଛି ।

ପରମା : ଆଜ୍ଞା, ସେ ବୁଢ଼ାବାବୁ ଆମ ଘର ଆଡ଼କୁ ଆସିବେ ବୋଧହୁଏ । ଆପଣ ଉଠିଲେଣି କି ନାହିଁ ପଚାରୁଥିଲେ ।

ଶୁଭେନ୍ଦୁ : କିଏ ?

ପରମା : ଘର ମାଲିକ ଆଜ୍ଞା ।

ଶୁଭେନ୍ଦୁ : ମାରିଦେଲା । ମଣିଷ କି ବିପଦରେ ପଡ଼ିଲା । ବର୍ତ୍ତମାନ କ'ଣ କରିବି? ପରମା ବାହାରକୁ ଯାଇ ଦେଖୁଥା ବୁଢ଼ା କୁଆଡ଼େ ଯାଉଛି ।
(ପରମା ବାହାରକୁ ଚାଲିଗଲା)

ବନ୍ୟା : କ'ଣ ହେଲା ହଠାତ୍ ବିପଦ ପଡ଼ିଲା କେଉଁଠୁ ?

ଶୁଭେନ୍ଦୁ : ଆପଣ ସେ କଥା ବୁଝିପାରିବେନି । ଆପଣ ଯିବାକୁ ବାହାରିଲେଣି ଆପଣଙ୍କୁ କହି ଲାଭ କ'ଣ ?

ବନ୍ୟା : ଠିକ୍ ଅଛି, ମୋତେ କହିଲେ ଯଦି ଆପଣଙ୍କର କିଛି କ୍ଷତି ହୋଇଯିବ, ତେବେ ନ କୁହନ୍ତୁ ।

ଶୁଭେନ୍ଦୁ : ମିଛରେ ବିବାହିତ କରି ମୋ ସାଙ୍ଗ ଏଇଠି ରଖେଇଦେଇଛି । ନ ହେଲେ ଏ ଘର ମିଳିନଥାନ୍ତା । ଗତ ସପ୍ତାହରେ ଘରବାଲା ବୁଢ଼ା ଆସି ମୋ ସ୍ତ୍ରୀକୁ ଦେଖିବାକୁ କହିଥିଲା । ଯଦି ପଳାଇ ଆସେ ତେବେ ସବୁ ଶେଷ ହୋଇଯିବ ।

ବନ୍ୟା : ଅସୁବିଧା ହେଲା, ସ୍ତ୍ରୀ ଆସିପାରିଲାନି, ଏ କଥା ଆପଣ କହି ପାରିବେନି?

ଶୁଭେନ୍ଦୁ : ସେ ଅଲଗା ପ୍ରକାରର ଲୋକ୍ । ପ୍ରକୃତରେ ଆମେ ତାଙ୍କୁ ଠକୁଛୁ ବୋଲି ସେ ସନ୍ଦେହ କରୁଛନ୍ତି । ତେଣୁ ସ୍ତ୍ରୀକୁ ଏଇ ସପ୍ତାହରେ ନେଇ ଆସିବୁ ବୋଲି ଆମେ ତାଙ୍କୁ କହିଥିଲୁ ।

ବନ୍ୟା : କ'ଣ କରିବେ ତା'ହେଲେ ?

ଶୁଭେନ୍ଦୁ : କରିବି ଆଉ କ'ଣ ! ସ୍ତ୍ରୀ ଗୁଡା ତ ଦୋକାନରେ ସୋକେସରେ ବିକ୍ରୀ ହେଉନି ଯେ ଧରି ଆଣିବି । ବେଡ଼ିଂପତ୍ର ବାନ୍ଧି ବାହାରିବାକୁ ପଡ଼ିବ । ଆପଣ ଯିବେ ପରା ... ଜଲ୍‌ଦି ଚାଲି ଯାଆନ୍ତୁ ।

ବନ୍ୟା : କାହିଁକି ... ?

ଶୁଭେନ୍ଦୁ : ଓଃ ଆପଣ ବୁଝୁନାହାଁନ୍ତି । ସେ ହେଉଛନ୍ତି ପୋଲିସ୍ ଡିପାର୍ଟମେଣ୍ଟ ଲୋକ । ନାଁ ତାଙ୍କର ବାଳ ବଳରାମ ଚୌଧୁରୀ ମାନେ ସଂକ୍ଷେପରେ ବି.ବି.ସି. କାମ ବି ସେମିତି ବ୍ରିଟିଶ୍ ବ୍ରଡକାଷ୍ଟିଂ ରେଡ଼ିଓ ଭଳି । ମୋ ଘରେ ଏମିତି ସକାଳୁ ସକାଳୁ ଆପଣଙ୍କ ଭଳି ଜଣେ ଅବିବାହିତା ଝିଅକୁ ଦେଖିଲେ ସେ ସେଣ୍ଟର ରହିବଟି ? ସାଙ୍ଗେ ସାଙ୍ଗେ ସାରା ପୃଥିବୀବାସୀଙ୍କୁ ଜଣାଇ ଦବନି?

ପରମା : (ପ୍ରବେଶ) ସେ ବୁଢ଼ାବାବୁ ଆମ ଘର ଆଡ଼କୁ ଆସୁଛନ୍ତି ।

ଶୁଭେନ୍ଦୁ : ମରିଗଲା, ମୁଁ ଭିତରକୁ ଯାଉଛି । ତୁ କହିଦେବୁ ମୁଁ କାଲିଠୁ ବାହାରକୁ ଯାଇଛି ।

ପରମା : ଆପଣ ଘରେ ଅଛନ୍ତି ବୋଲି ମୁଁ କହିଦେଇଛି ।

ଶୁଭେନ୍ଦୁ : ଓଃ, ତେବେ କହିଦେବୁ ଭୀଷଣ ଦେହ ଖରାପ୍ । ଶେଯରୁ ଉଠିପାରୁ ନାହାଁନ୍ତି । ବାସ୍ ମୁଁ ଯାଉଛି ଘୋଡ଼ାଘୋଡ଼ି ହୋଇ ଶୋଇପଡ଼ିବି । ଆଉ ଆପଣ ବି ଯାଆନ୍ତୁ, ବାଥ୍‌ରୁମରେ ରହିଯିବେ ।

(ଶୁଭେନ୍ଦୁ ଭିତରକୁ ଚାଲିଗଲା । ବନ୍ୟା ସେମିତି ଠିଆ ହୋଇ ରହିଲା । ପରମା ରୋଷେଇ ଘର ଦିଗକୁ ଚାଲିଗଲା)

ବାଜ : (ଭିତରୁ) କ'ଣ ଅଧ୍ୟାପକ ବାବୁ ଉଠିଲେଣି ନା ?

(ବାଜ ବଳରାମ ବାବୁ ପଶି ଆସିଲେ, ବନ୍ୟା ମୁଣ୍ଡରେ ଓଢ଼ଣା ଟାଣି ପାଦଛୁଇଁ ମୁଣ୍ଡିଆ ମାରିଲା)

ବାଜ : ସୌଭାଗ୍ୟବତୀ ଭବ ମା! ଉଠ ଉଠ । ତୁ ତା ହେଲେ ଆସିଗଲୁଣି । ଭଲ, ବହୁତ୍ ଭଲ ।

ବନ୍ୟା : କାଲି ରାତିରେ ଆସି ପହଁଚିଲି, ମଉସା ।

ବାଜ : ତା ହେଲେ ଅଧ୍ୟାପକ ବାବୁ ନିଜେ ଯାଇ ଧରି ଆଣିଲେ ? ଭଲକଥା । ତୁମମାନଙ୍କ ଭିତରେ ଟିକିଏ ରାଗ ରୁଷା ହୋଇଥିଲା ନା ?

ବନ୍ୟା : ରାଗ, ରୁଷା, ନା'ତ । ଏକଥା ଆପଣଙ୍କୁ କିଏ କହିଲା ?

ବାଜ : ମୋତେ ଲୁଚେଇଲେ ଚଳିବ ମା, ମୁଁ ସବୁ ଶୁଣିଛି । ହଁ ସ୍ୱାମୀ ସ୍ତ୍ରୀ ଭିତରେ ପ୍ରଥମେ ପ୍ରଥମେ ସେମିତି ହୋଇଥାଏ । ତୋ ମାଉସୀ ଯେତେବେଳେ ପ୍ରଥମେ ଆସିଲା, ଆମ ଭିତରେ ବି ଚାଲିଥିଲା । ହେଲେ ଏ ସବୁ ବେଶୀ ସମୟ ରହିବନି ମା' । ଘରକୁ ଗୋଟେ ଦି'ଟା ଜୁନା ଜୁନି ଆସିଗଲେ ସବୁ ଚାଲିଯିବ ।

ବନ୍ୟା : ଆପଣ ବସନ୍ତୁ ମଉସା, ମୁଁ ଚା' ନେଇ ଆସୁଛି ।

ବାଜ : ଦରକାର ନାହିଁ । ମୁଁ ଏବେ ତ ଚା' ଖାଇ ଆସୁଛି । ବାବୁ ଏ ପର୍ଯ୍ୟନ୍ତ ଉଠି ନାହାଁନ୍ତି ବୋଧହୁଏ ।

ବନ୍ୟା : କେତେବେଳୁ ଉଠିଲେଣି ... ହେଇ ଆସିଲେଣି ।

(ଶୁଭେନ୍ଦୁ ଆସନ୍ତି । ବନ୍ୟା ଭିତରକୁ ଚାଲିଯାଏ)

ଶୁଭେନ୍ଦୁ : ନମସ୍କାର ମଉସା - ବସନ୍ତୁ ।

ବାଜ : ଯାହାହେଉ ଆପଣ ମୋତେ ଠକି ନାହାଁନ୍ତି । ସେ ଦିନ ଆପଣ ଓ ଆପଣଙ୍କ ସାଙ୍ଗ ଭବାନୀ ବାବୁଙ୍କ ହାବଭାବ ଦେଖି ମୋର ପୁରା ସନ୍ଦେହ ହୋଇଯାଇଥିଲା ।

ଶୁଭେନ୍ଦୁ : ଆଜି ସନ୍ଦେହ ଦୂର ହେଲା ତ ?

ବାଳ : (ହସି) ମା'ଙ୍କୁ ମୋର ସ୍ୱ ଚକ୍ଷୁରେ ଦେଖିଲା ପରେ ଆଉ କିଛି କହିବାର ନାହିଁ । ହଁ, ଦେଖନ୍ତୁ ମା' ମୋର **Advance Stage** ରେ ବୋଲି କହୁଥିଲେ, ପ୍ରଥମ ପିଲା- ସାବଧାନ ରହିବେ ।

(ବନ୍ୟା ଚା' ଧରି ଆସି ଶୁଣୁଛି ଏବଂ ଓଢ଼ଣା ଆଢୁଆଳରେ ହସୁଛି)

ରେଗୁଲାର ମେଡ଼ିସିନ୍ ସହିତ ମେଡ଼ିକାଲ୍ ଚେ଼କଅପ୍ କରେଇ ନେଉଥିବେ । (ବନ୍ୟା ଚା' ଦେଇଛି)

ଶୁଭେନ୍ଦୁ : ହଁ ହଁ ଏ ସବୁ କାମରେ ନେଗଲେଟ୍ କରିବାର ଅଛି । ଆଜି ନେଇ ସବୁ ଚେ଼କ୍ ଅପ୍ କରାଇ ଦେବି ।

ବନ୍ୟା : ମୁଁ କିନ୍ତୁ ଆଜି ଚାଲିଯିବି ।

ବାଳ : କାଲି ଆସୁ ଆସୁ ଆଜି ଚାଲିଯିବୁ?

ଶୁଭେନ୍ଦୁ : ମାନେ ମୁଁ ସିଧା ତାଙ୍କୁ ତାଙ୍କ ଘରୁ ଏଠିକି ନେଇଆସିଛି । ସେଇଥିପାଇଁ ମୋ ବୋଉ କାଳେ ଖରାପ୍ ଭାବିବ ସେଥିପାଇଁ ଆମ ଗାଁକୁ ଯାଇ ଦେଖି ଆସିବ ବୋଲି କହୁଛନ୍ତି । ମୁଁ ଯେତେ କହୁଛି, ଦି' ଚାରି ଦିନ ରହିଗଲା ପରେ ଯିବ, କିଛି ଶୁଣୁନାହାଁନ୍ତି ।

ବାଳ : ଏ ସମୟରେ ଗାଡ଼ି ମଟରରେ ଏତେ ଯିବା ଆସିବା ଠିକ୍ ନୁହେଁ ମା' । ବୋଉ ଯଦି ଖରାପ୍ ଭାବିବେ ତେବେ ତାଙ୍କୁ ଚିଠି ଦେଇ ଜଣାଇଦେ ।

ଶୁଭେନ୍ଦୁ : ହଁ, ସେକଥା ମୁଁ ବି କହୁଛି, କିନ୍ତୁ ୟାଙ୍କର ଏକା ଜିଦି । ବୋଉପାଖକୁ ଯିବେ ।

ବନ୍ୟା : ଇଏ ଯାଇ ଆମ ଘରେ ଏତେ ତରତର କରି ଧରି ଆସିଲେ ଯେ, ମୋ ବୋଉ ମିଠା ହାଣ୍ଡିଟେ ବି ଦେଇପାରିଲାନି । ଏଠୁ କିଛି ମିଠା ଇତ୍ୟାଦି କିଣି ଶାଶୁଘରେ ଦେଇ ନ ଆସିଲେ ୟାଙ୍କ ବୋଉ ଖରାପ୍ ଭାବିବେ ।

ବାଳ : ହଁ ହଁ ଏ ସବୁ ପରମ୍ପରା ଆମ ସମାଜରେ ଅଛି । ବିଶେଷତଃ ମଫସଲରେ ଏ ସବୁ ଜିନିଷ ନ ଦେଲେ ସେମାନେ ଅପମାନିତ ଫିଲ୍ କରିବେ । ତେବେ ମା' ଆଜି ତୁ ଯିବାଟା ହବନି । ତୁ ଆସି ପ୍ରଥମ କରି ମୋ ଘରେ ପାଦ ଦେଇଛୁ । ଆଜି ରାତିରେ ତୁମ ଦି' ଜଣଙ୍କୁ ମୋ ଘରେ ଖାଇବାକୁ ନିମନ୍ତ୍ରଣ ରହିଲା ।

ବନ୍ୟା : ନାଇଁ ଆପଣ କାହିଁକି ଆମ ପାଇଁ ଅସୁବିଧାରେ ପଡ଼ିବେ ବରଂ ମୁଁ ଗାଁରୁ ଆସିଲେ ପରେ କୋଉ ଦିନ... ।

ବାଳ : ନାଇଁ ନାଇଁ ସେ କଥା ମୁଁ ଶୁଣିବନି । ମୋର ସ୍ତ୍ରୀ ତୁମ ଦି' ଜଣଙ୍କୁ ଦେଖି ବହୁତ୍ ଖୁସି ହେବ । ଆଜି ନିଶ୍ଚୟ ଖାଇବେ । ପୁଣି ଆସିଲେ ପୁଣି ଖାଇବେ ।

ଶୁଭେନ୍ଦୁ : ହଁ ଆପଣ ଯେତେବେଳେ ବାଧ୍ୟ କରୁଛନ୍ତି କ'ଣ ଆଉ କରାଯିବ ।

(ବନ୍ୟା ଆଖି ଢ଼ବ ଢ଼ବ କରି ଓଢ଼ଣା ଆଢୁଆଳରେ ଚାହେଁ)

ଦେଖିଲେ ମଉସା, ମୁଁ ରାଜି ହେଇଗଲି ବୋଲି କେମିତି ବଡ ବଡ ଆଖି କରି ତରେଇ ଦେଉଛନ୍ତି ।

ବାଳ : (ହସି) ମୋ ସ୍ତ୍ରୀ ସନ୍ଧ୍ୟାବେଳେ ଆସି ଧରି ନେଇଯିବ । ମୁଁ ଚାଲିଲି ।

ବନ୍ୟା : ମଉସା ... ।

ବାଳ : ନାଇଁ ନାଇଁ ତୋ କଥା କିଛି ଶୁଣାଯିବନି ମା' । ତାପରେ କାଲି ଆସିବୁ ଆଜି ପୁଣି ଧକଡ଼ ଚକଡ୼୍ ହୋଇଯିବୁ । ଏ ସବୁ ଠିକ୍ ନୁହେଁ ।
ତୁମେମାନେ ନୂଆ ବାହା ହୋଇଛ- ତା ପରେ ପ୍ରଥମ ପିଲା, ଆଜି ଯେମିତି ହେଲେ ରହିବାକୁ ହବ । ମୋ ଘରେ ଖାଇବାକୁ ପଡ଼ିବ ।

(ଚାଲିଗଲେ)

ଶୁଭେନ୍ଦୁ : ପୁଣି ଏକ ନୂଆ ଝାମେଲା - ଆପଣ ସୃଷ୍ଟି କଲେ ।

ବନ୍ୟା : ମୁଁ ସୃଷ୍ଟି କଲି ମାନେ ?

ଶୁଭେନ୍ଦୁ : କରିନାହାଁନ୍ତି ? ମୁଁ ମୋର ଧରାପଡ଼ି ମରିଥାଆନ୍ତି । ଆପଣ ମୋର ମିଛ ସ୍ତ୍ରୀ ସାଜି ମୋତେ ରକ୍ଷା କରିବାକୁ ଅଭିନୟ କଲେ । ଏବେ ଲଡିଂକୁ ଚାଲିଯିବେ । ଆଉ ଗୋଟେ ମିଛ ସ୍ତ୍ରୀ ପାଇବି କେଉଁଠୁ ?

ବନ୍ୟା : (ହସି) ବରଂ ଆପଣ ଚାଲନ୍ତୁ ମୋ ପାଇଁ ଗୋଟେ ଲଜିଂ ବୁଝିଦେବେ । ସେଠି ମୋ ବ୍ୟାଗ ଇତ୍ୟାଦି ରଖିଦେଇ ଆସିବା । ରାତିରେ ମଉସାଙ୍କ ଘରେ ଖାଇଦେଇ ମୋତେ ସେଠି ପୁଣି ଛାଡ଼ିଦେବେ ।

ଶୁଭେନ୍ଦୁ : ମଣିଷ ଗୋଟେ ମିଛ ପାଇଁ କେମିତି ଅବସ୍ଥା ଭୋଗୁଛି ଦେଖିଲେ । ଷ୍ଟୁପିଡ୍ ଭବାନୀ ଏତେବେଳକୁ କୁଆଡ଼େ ଗଲା । ମିଛରେ ମୁଁ ବାହାହୋଇଛି କହି ଏତେ ବେଳକୁ ଦେଖାନାହିଁ ।

(ବାହାରୁ ନିଧି ମଉସାଙ୍କର କଣ୍ଠ ଶୁଣାଗଲା)

ନିଧି : (ଅନ୍ତରାଳରୁ) ଶୁଭେନ୍ଦୁ, ବାବା ଘରେ ଅଛୁନା ... ।

ଶୁଭେନ୍ଦୁ : (ଚମକି ପଡ଼ି) ଇଏ ଆଉ ଗୋଟେ ଗ୍ରହ ଆସି ଜୁଟିଲାଣି । ଆରେ ଠିଆ ହୋଇଛନ୍ତି

କ'ଣ ? ଆମ ଗାଁର ନିଧି ମଉସା ଆସିଗଲେଣି । ଯା'ନ୍ତୁ ଦୟା କରି ଭିତରକୁ ଯାଆନ୍ତୁ । ମୁଁ ତାଙ୍କୁ ଆଗ ବିଦା କରେ... ହେ ଭଗବାନ...।

(ନିଧି ମଉସା ଆସିଲେ । ବେଶ୍ ବୟସ୍କ । ମାମଲତକାରିଆ ଢ଼େଙ୍ଗା ଆଖିରେ ଚଷମା । ଚ଼ଷମା ତଳୁ ଯେମିତି ଅନ୍ୟର ଛାତି ଭିତରର କଥା ପଢ଼ି ନେଇପାରିବେ । କାନ୍ଧରେ ଗୋଟିଏ ବ୍ୟାଗ୍ ଓ ଛତା)

ଶୁଭେନ୍ଦୁ : ନିଧି ମଉସା ! ଆପଣ ? ଆପଣ ଏତେ ସକାଳୁ ସକାଳୁ କେମିତି ?

ନିଧି : ଆଜି ପରା କଚେ଼ରୀରେ ତାରିଖ ଅଛି । ରାତି ୫ଟାରୁ ଆସି ପହଁଚି଼ଲିଣି । ତୋ ବୋଉ ତ ଠିକଣାଟା ଦେଇପାରିଲାନି, ପଚା଼ରି ପଚା଼ରି ପହଁଚୁ଼ଛି ।

ଶୁଭେନ୍ଦୁ : ଏଇ ଘରଟାରେ ଏବେ ମାସେ ହେଲା ରହିଛି । ଏଟା ପାଇଲେ କେମିତି ?

ନିଧି : (ହସି) ଆରେ ଲୋକ ଚେ଼ଷ୍ଟାକଲେ ପରା ଯାଇ ଚନ୍ଦ୍ରରେ ପହଁଚି଼ ପାରୁଛି ଏଇଟା ପାରିବନି । ବସଷ୍ଟାଣ୍ଡରୁ ଓହ୍ଲାଇ ତୁମ କଲେଜକୁ ଗଲି । ସେଠି ଚୌକିଦାର କହିଲା ତୁ ଏଇ ସାଇରେ ରହୁଛୁ । ସେଇ ସାମନା ଜଳଖିଆ ଦୋକାନରେ ପଚା଼ରୁ ପଚା଼ରୁ ତୋ ଘର ମାଲିକ ମିଳିଗଲା ବାସ୍... ।

ଶୁଭେନ୍ଦୁ : ହଉ ଭଲହେଲା । ଖିଆପିଆ କରି କଚେ଼ରୀ ଯିବେ ତ ?

ନିଧି : ହଁ, କଚେ଼ରୀରେ ଆଜି ସାକ୍ଷୀ ନିଆଯିବ ।

ଶୁଭେନ୍ଦୁ : କାମ ସାରି ଆଜି ଗାଁ କୁ ଚା଼ଲିଯିବେ । ପାଞ୍ଚଟା ବେଳକୁ ଲାଷ୍ଟ ବସଟାରେ ଆରାମରେ ଚା଼ଲିଯିବେ ।

ନିଧି : ହଁ କଚେ଼ରୀ କାମ ଶେଷ ହୋଇଗଲେ ଚା଼ଲିଯିବି । ଆରେ ତୋ ବୋଉ କହୁଥିଲା, ତୁ କୁଆଡ଼େ ବାହାହେବାକୁ ରାଜି ହଉନୁ, କି ଯେଉଁଠି ଝିଅ ଦେଖୁଛନ୍ତି ତୁ ଦେଖିବାକୁ ଯାଉନୁ ।

ଶୁଭେନ୍ଦୁ : ବୋଉ ସବୁବେଳେ ସେମିତି କହୁଛି । ତା' ଦେହ ଭଲ ଅଛି ତ ?

ନିଧି : ନାଇଁ ତୁ ଯଦି କୋଉଠି ଝିଅଟିଏ ଠିକ୍ କରିଛୁ କହ ? ସେଇଠି କରିଦେବା । ଆଜି କାଲି ତ ଜାତି ଗୋତ୍ର କହି ଦେଖୁନାହାଁନ୍ତି ।

ଶୁଭେନ୍ଦୁ : ମୋ ବୋଉ ଦେହ କେମିତି ଅଛି ପଚା଼ରୁଛି ପରା ?

ନିଧି : ଓହୋ, ତୋ' ବୋଉ ଦେହ ଖରାପ୍ ଥିଲେ ମୁଁ କହିନଥାନ୍ତି । ତୋ' ବୋଉ ତୋ ବାହାଘର ପାଇଁ ବହୁତ୍ ମନଦୁଃଖ କରୁଛି । ସଫା ସଫା ତୋ ମନରେ ଯଦି କିଛି ଅଛି କହ ?

ଶୁଭେନ୍ଦୁ : ହଉ ଏଥର ସବୁ କଥା ବୋଉକୁ ଚିଠି ଲେଖି ଜଣାଇଦେବି ।

ନିଧି : ହଁ ସେଇଆ ଠିକ୍ ହେବ । ବୁଢ଼ୀଟା ତୋ ସ୍ତ୍ରୀ ପରସା ଚିକିଏ ଚାଖିବାକୁ ଚାହିଁ ବସିଛି ।ତା'କୁ ଆଉ ଦୁଃଖ ଦେବୁନି । ବୁଝିଲୁ... । ଏଇ ଘରଟା ବହୁତ୍ ଭଲ ହୋଇଛି । ସେପଟେ ଘର ଅଛି ନା... ?

ଶୁଭେନ୍ଦୁ : ହଁ ବେଡ୍ ରୁମ୍, ରୋଷେଇ ଘର, ଗାଧୁଆ ଓ ପାଇଖାନା ସବୁ ଅଛି ।

ନିଧି : ଚାଲିଲୁ ଦେଖିବା କେମିତି ହୋଇଛି ?

ଶୁଭେନ୍ଦୁ : ନାଇଁ - ସେ ପଟକୁ ଯାଆନ୍ତୁନି ମଉସା, ସବୁ ଜିନିଷ ମଇଳା କୋତରା ହୋଇପଡ଼ିଛି । ଆପଣଙ୍କ ଲୁଗାପଟା ମଇଳା ହୋଇଯିବ ।

ନିଧି : ମଇଳା କୋତରା କରି ପକେଇଛୁ କାହିଁକି ?

ଶୁଭେନ୍ଦୁ : ଘର ବଦଳା ବଦଳିରେ ସବୁ ସଫା ସୁତୁରା କରିବାକୁ ସମୟ ପାଇନି । ଆପଣ ଏଇଠି ସୋଫା ଉପରେ ବସନ୍ତୁ (ଧରିଆଣି ବସେଇଦେଇ) ଭିତରକୁ ଗଲେ ଆପଣଙ୍କ ଧୋତି ପଞ୍ଜାବି ସବୁ ମଇଳା ହୋଇଯିବ ।

ନିଧି : ହଉ । ଆମେ କୋଉଲାଟ ସାହେବ ଟା ଯେ ମଇଳା ପିନ୍ଧିଲେ କେହି ଚିହ୍ନି ପାରିବେନି ?

ଶୁଭେନ୍ଦୁ : ନାଇଁ କଚେରୀ ଯିବେ । ସେଠି ଓକିଲ ଜର୍ଜ ଏମାନେ ଦେଖିଲେ କ'ଣ କହିବେ?

ନିଧି : କିଛି କହିବେନି, ଓକିଲ ଜର୍ଜ ପେଷ୍କାର ମୁକ୍ତିଆର ଗତ ୨୦ ବର୍ଷ ହେଲା ଏ ନିଧି ମଉସାକୁ ଦେଖି ଆସୁଛନ୍ତି । କ'ଣ ଏଥର ନୂଆ ଦେଖିବେ ।

ଶୁଭେନ୍ଦୁ : ଆଛା ମଉସା ଆପଣ ଘରୁ ଖାଇକରି ଆସି ନ ଥିବେ, ଚାଲନ୍ତୁ ହୋଟେଲରେ ଖିଆପିଆ କରି ଆସିବା । ମୁଁ ସ୍କୁଟରରେ ସିଆଡୁ ଆପଣଙ୍କୁ କଚେରୀ ପାଖରେ ଛାଡ଼ିଦେଇ ଆସିବି ।

ନିଧି : ଏତେ ତରତର କାହିଁକି ? ମୋ ଓକିଲ ଚିଠି ଲେଖିଥିଲେ ଯେ ମୋ କେସ୍ ଗୋଟେ କିମ୍ବା ଦି'ଟା ବେଳେ ଯାଇ ପଡ଼ିବ ।

ଶୁଭେନ୍ଦୁ : ମୁଁ କଲେଜ୍ ଯିବି ତ, ସେଇଥିପାଇଁ କହୁଛି । ଆପଣଙ୍କ କଥାଟା ସାରି ଦେଇ ଆସିଥାନ୍ତି ।

ନିଧି : ତେବେ ହୋଟେଲରେ ଖାଇବା କାହିଁକି ? ତୁ ପରା ରୋଷେଇ କରିବାକୁ ଗୋଟେ ପିଲା ରଖିଛୁ ।

ଶୁଭେନ୍ଦୁ : ରଖିଛି । ବରଂ ଗୋଟେ ଗଧଟେ ରଖିଥିଲେ ମୋର ଉପକାର ହୋଇଥାନ୍ତା

ଏତେ ବାଢେ ରାନ୍ଧୁଛି ଯେ ଆପଣ ପାଟିରେ ଦେଇ ପାରିବେନି ।

ନିଧି : ସେଇଥିପାଇଁ ଟଙ୍କା ଖର୍ଚ୍ଚ କରି ହୋଟେଲରେ ଖୁଆଇବୁ । ମୋର କିଛି ଡରତର ନାହିଁ ତୁ କଲେଜ୍ ଯିବା କଥା ଯା' । ମୁଁ ଟିକେ ଘରଟା ଦେଖିଆସେ ।

ଶୁଭେନ୍ଦୁ : ଦେଖୁନାହାଁନ୍ତି କିଏ ମନା କରୁଛି । ମୁଁ ଟିକିଏ ଭିତରଟା ସଜାସଜି କରି ଦେଇଥାନ୍ତି ଆପଣ ଦେଖିଥାନ୍ତେ ।

ନିଧି : କଥା କ'ଣ କି ପାହାନ୍ତା ପାହାନ୍ତାରୁ ବସରେ ବସିପଡ଼ିଲି । ସେଥିପାଇଁ ପେଟଟା ଟିକିଏ କାଟି କାଟି ଦେଉଛି । (ନିଧି ରୋଷେଇ ଘର ଦିଗକୁ ଯାଉଯାଉ ଶୁଭେନ୍ଦୁ ତାଙ୍କୁ ଧରି ବେଡ୍‌ରୁମ୍‌ଆଡ଼କୁ ଟାଣେ ।)

ଶୁଭେନ୍ଦୁ : ତା' ହେଲେ ଆସନ୍ତୁ ଏପଟେ ମୋ ବେଡରୁମରେ ପୋଛାଟା ବଦଳି ଦେବେ । ସେପଟେ ମୁଁ ପାଇଖାନାରେ ପାଣି ଅଛି କି ନାହିଁ ଦେଖେ ।
(ବେଡରୁମ ଆଡ଼କୁ ଟାଣି ନେଇ ଛାଡ଼ିଦେଇ ଆସିଲା । ଫେରିଆସି ରୋଷେଇ ଘର ଆଡ଼କୁ ଚାହିଁ ଦରଜା ପାଖରେ, "ତୁମେ କିଛି ସମୟ ପାଇଁ ବାହାରକୁ ଚାଲିଯାଅ" ବୋଲି ବନ୍ୟାକୁ ଇସାରା ଦେଉଥାନ୍ତି ।)

ନିଧି : (ଅନ୍ତରାଳରୁ) ଶୁଭେନ୍ଦୁ !

ଶୁଭେନ୍ଦୁ : ମରିଗଲା ମଣିଷ, କ'ଣ ମଉସା ।
(ନିଧି ମଉସା ପଶିଆସନ୍ତି । ଶୁଭେନ୍ଦୁ ରୋଷେଇ ଘର ଆଡ଼କୁ ଥିବା ଦରଜା ସ୍କ୍ରିନକୁ ସଜାଡ଼ିବାର ଅଭିନୟ କରନ୍ତି ।)

ନିଧି : (ପ୍ରବେଶ) କ'ଣ ହେଉଛି ଶୁଭେନ୍ଦୁ ?

ଶୁଭେନ୍ଦୁ : ନାଇଁ ଏଇ ସ୍କ୍ରିନଟା କେତେ ମଇଳା ହେଇଛି । ପୁଣି ସିଲେଇ ଫିଟି ଗଲାଣି ତ ।

ନିଧି : ସେପଟେ ମୋତେ ଯୋଉ ପୋଛାଟା ଦେଇଛୁ ସେଇଟା ଧଳା, ତା ଅପେକ୍ଷା ମୋ ବ୍ୟାଗରେ ମୋର ଖୋର୍ଦ୍ଧା ଗାମୁଛା ଅଛି ମୁଁ ସେପଟେ ବଦଳା ବଦଳୀ କରି କାମ ସାରିଦେବି ।

ଶୁଭେନ୍ଦୁ : ଠିକ୍ ଅଛି । ପରମା, ଆରେ ସେ ସ୍ତ୍ରୀ ଲୋକକୁ କହ ପାଇଖାନାରେ ପାଣି ଦେଇଦେଉ ।

ନିଧି : ସ୍ତ୍ରୀ ଲୋକ ! ସେ ପୁଣି କିଏ ?

ଶୁଭେନ୍ଦୁ : ବାସନ, ଲୁଗାପଟା ସଫା କରିବାକୁ ଗୋଟେ ଝିଅଟେ ଅଛି ।

ନିଧି : ତା'ମାନେ ତି'ତି'ଟା ଲୋକ ଏଠି କାମ କରୁଛନ୍ତି ।

ଶୁଭେନ୍ଦୁ : ପାର୍ଟ ଟାଇମ୍, ପାର୍ଟ ଟାଇମ୍, ସେ ପରମାଟା ଗୋଟେ ଗଧ । ଏଇ ସ୍ତ୍ରୀ ଲୋକଟା

ଠି' ଠି' ଘଣ୍ଟା ଆସୁଛି ବୋଲି ଚ଼ଳିଯାଉଛି କୁହନ୍ତୁ ।

(ବନ୍ୟା ଚ଼ା' ଧରି ପ୍ରବେଶ)

ଏଇ ତ ଏଇ ଝିଅଟା ଏଇନା ଆସିଛି ୧୦ଟା ବେଳକୁ ଚ଼ାଲିଯିବ, ପୁଣି ଯାଇ କାଲି ସକାଳେ । ହେଇ (ବନ୍ୟାକୁ) ମୋ ନିଧି ମଉସା ଗାଁରୁ ଆସିଛନ୍ତି ତାଙ୍କୁ ପାଦ ଛୁଇଁ ନମସ୍କାର କର । (ବନ୍ୟା ଚ଼ା' ରଖି ମୁଣ୍ଡିଆ ମାରିଛି)

ବିଚ଼ାରୀ ବଡ଼ ଗରିବ ମଉସା, ଏମିତି ଚ଼ାରି ପାଞ୍ଚଟା ଘରେ କାମ କରି ଚ଼ଳିଯାଉଛି ।

ବନ୍ୟା : କ'ଣ କରିବି ଆଜ୍ଞା, ପାଞ୍ଚ ପାଞ୍ଚ ପିଲା, ଗିରସ୍ତ ଦିନରାତି ମଦଖାଇ ପଡ଼ିଥିବ । ପାଞ୍ଚ ଘରେ କାମ ନ କଲେ ଚୁଲି ଜଳୁନି ।

ନିଧି : ଓହୋ ... ଏମିତି କଥା ତା' ହେଲେ ମୁଁ ପୁରା ଘାବରେଇ ଯାଇଥିଲି ।

ଶୁଭେନ୍ଦୁ : କଉକଥା, ଘାବରେଇ ଯାଇଥିଲେ କାହିଁକି ?

ନିଧି : କହିବି, କହିବି ... ତୁ ଯାଇ ମା' କାମଦାମ କର ।

ଶୁଭେନ୍ଦୁ : ହେଇ ଝିଅ । ମଉସା ଭିତରକୁ ଯିବାକୁ କହୁଛନ୍ତି ପରା । ଶୁଣାଯାଉନି ।

ବନ୍ୟା : ନାଇଁ ଚ଼ା' କପଟା ନେଇ ଯାଇଥା'ନ୍ତି ଯେ... ।

ଶୁଭେନ୍ଦୁ : ଓଃ, ସେଇଟା ସାଙ୍ଗେ ସାଙ୍ଗେ ନନେଲେ ଚ଼ଳିବନି । ଭିତରକୁ ଯା... । (ବନ୍ୟା, ଶୁଭେନ୍ଦୁଙ୍କର କୃତ୍ରିମ କ୍ରୋଧରେ ହସକୁ ଚ଼ାପିରଖି ଚ଼ାଲିଯାଆନ୍ତି)

ଶୁଭେନ୍ଦୁ : ହଁ କ'ଣ କହୁଥିଲ ମଉସା ?

ନିଧି : କଥା କ'ଣ କି, ତୋ ଠିକଣା ସେ ଦୋକାନୀକୁ ପଚ଼ାରିଲା ବେଳକୁ ତୋ ଘର ମାଲିକ ଦେଖାହୋଇଥିଲେ । ସେ କହିଲେ ତୁ ତୋ ପିଲାମାନଙ୍କୁ ଧରି ଏଇଠି ଅଛୁ ।

ଶୁଭେନ୍ଦୁ : (ଯୋରରେ ହସି) ଓ ହୋ-ହୋ ଏଇଠି ତାଙ୍କୁ ସମସ୍ତେ ଅଜା ଅଜା ଡାକନ୍ତି କାରଣ ସେ ସମସ୍ତଙ୍କୁ ଥଟ୍ଟା କରନ୍ତି । ମଜାରେ କ'ଣ କ'ଣ ସବୁ କହି ଦେଇଥିବେ ।

ନିଧି : କହିଲେ କୁଆଡ଼େ ତୋ ସ୍ତ୍ରୀକୁ କାଲି ତା ବାପଘରୁ ଡାକି ଆଣିଛୁ ।

ଶୁଭେନ୍ଦୁ : ଏତେ ବାଜେ ଲୋକଟା, ବୁଢ଼ାଟିଏ ହେଲାଣି କାଣ୍ଡଜ୍ଞାନ ହେଲାନି । ଏ ଘରକୁ ଆଜି ଆସିବ ତ ଯଦି ଧକ୍‌କା ମାରି ବାହାର କରି ନ ଦେଇଛି । ଚ଼ାଲିଲେ ଦେଖି ତାକୁ ଆପଣଙ୍କ ସାମନାରେ ପଚ଼ାରିବି ... । (ନିଧି ମଉସାଙ୍କ ହାତ ଧରି ଟାଣିଛି)

ନିଧି : ଆରେ ମୋର ପରା ପାଇଖାନା ଯିବା କଥା ... ।

ଶୁଭେନ୍ଦୁ : ହଁ ଭୁଲିଯାଇଥିଲି । ପରମା... ଆରେ ସେ ଝିଅ ପାଇଖାନାରେ ପାଣିଦେଲା?

ନିଧି : ତାକୁ ଏମିତି ଝିଅ ଝିଅ ଡାକୁଛୁ କାହିଁକି? ତା'ର କ'ଣ ନାଁ ନାହିଁ ?

ଶୁଭେନ୍ଦୁ : ଅଛି । ନାଁ ନ ଥାଇ କେବେ କିଏ ମଣିଷ ହେଲାଣି ?

ନିଧି : ତେବେ ନାଁ ଧରି ଡାକୁନୁ ।

ଶୁଭେନ୍ଦୁ : ନାଇଁ, ତା'ର ଚାରି ଛଅଟା ନାଁ ଅଛି ତ, ହଠାତ୍ ସବୁ ଗୁଡ଼ାକ ମନେ ରହୁନି ।

ନିଧି : ଚାରି ଛଅଟା ନାଁ ? ଏତେ ଗୁଡ଼େ ନାଁ କାହିଁକି ଦେଇଛି ?

ଶୁଭେନ୍ଦୁ : ଫେସନ୍ ଆଉ କ'ଣ ।

ନିଧି : ହଁ ଦେଖିଲେ ମନେ ହଉଛି ବଡ଼ ଫେସନବାଲି ହୋଇଥିବ । ଚାଲି-ଚଳନ ପୋଷାକପତ୍ର ଦେଖିଲେ ବାସନ ମାଜି ଚଳୁଛି ବୋଲି କେହି କହିବେନି ।

ଶୁଭେନ୍ଦୁ : ସହରି ଝିଅ ତ , ପୋଷାକ ପତ୍ରରେ କିଛି ଜାଣି ପାରିବେନି ।
(ବନ୍ୟା ଆସିଲା)

ବନ୍ୟା : ପାଇଖାନାରେ ପାଣି ଦେଇ ଦେଇଛି ।

ନିଧି : ଠିକ୍ ଅଛି ।
(ନିଧି ଭିତରକୁ ଚାଲିଗଲେ । ତାଙ୍କ ପଛେ ପଛେ ଚାଲିଗଲେ ଶୁଭେନ୍ଦୁ)

ଶୁଭେନ୍ଦୁ : ଚାଲନ୍ତୁ ମୁଁ ଦେଖେଇ ଦେଇ ଆସେ ।
(ଶୁଭେନ୍ଦୁ କିଛି ସମୟ ପରେ ଆସିଲେ)

ବନ୍ୟା : (ହସି) ମଉସା ପାଇଖାନା ଗଲେ ନା ?

ଶୁଭେନ୍ଦୁ : କେମିତି ଏ ଗ୍ରହ ବିଦା ହେବେ ସେ କଥା ଭାବୁଛି ।

ବନ୍ୟା : ମୋ ପାଇଁ ଆପଣ ବଡ଼ ହଇରାଣ ହେଲେ । ମୁଁ ଜାଣିଛି ମୁଁ ଯୋଉଆଡ଼େ ଯିବି ସେମିତି ସୃଷ୍ଟି ହେବ ।

ଶୁଭେନ୍ଦୁ : ସେ ଯାହାହେଉ ନିଧି ମଉସାଙ୍କୁ ଖିଆପିଆ ଦେଇ ବିଦା କରିବାକୁ ପଡ଼ିବ ।

ବନ୍ୟା : ସବୁ ତ ରନ୍ଧା ହୋଇଛି ଆପଣ ଦି'ଜଣ ଖାଇଦିଅନ୍ତୁ, ମୁଁ ବଢ଼ାବଢ଼ି କରୁଛି ।

ଶୁଭେନ୍ଦୁ : ଆମ ସମସ୍ତଙ୍କୁ-ମାନେ ଚାରିଜଣଙ୍କୁ ପାଇବ ତ ?

ବନ୍ୟା : ଆପଣ ପ୍ରଥମେ ଖାଇ ଦିଅନ୍ତୁ, ପରମାକୁ ବି ହେଇଯିବ ।

ଶୁଭେନ୍ଦୁ : ଆପଣ, ମୋ ସ୍ତ୍ରୀ, ଚାକରାଣୀ କେତେ କ'ଣ ଭୂମିକାରେ ଅଭିନୟ କରି ମୋତେ ସାହାଯ୍ୟ କଲେଣି, ଆପଣ ଖାଇବେନି ?

(ନିଧି ମଉସାଙ୍କ ଗଳା ସଫା କରିବା ଶୁଣାଗଲା)

ଯା ଯା, ନିଧି ମଉସା ଆସିଲେଣି ବଢ଼ାବଢ଼ି କର ।

(ବନ୍ୟା ଚାଲିଗଲା । ପଶି ଆସିଲେ ନିଧି, ବନ୍ୟାକୁ ଲକ୍ଷ୍ୟ କରି ସନ୍ଦେହ ଦୃଷ୍ଟିରେ ଶୁଭେନ୍ଦୁଙ୍କୁ କହିଲେ)

ନିଧି : ଏ ଝିଅକୁ ଦେଖିଲେ ମୋତେ କେମିତି ସନ୍ଦେହ ସନ୍ଦେହ ଲାଗୁଛି । ଦେଖି ଚାହିଁ ଚଳୁଥିବୁ – କେତେବେଳେ କୋଉ କଥା ।

ଶୁଭେନ୍ଦୁ : ହଁ ତା' ଚାଲିଚଳନ ଦେଖି ପ୍ରଥମେ ପ୍ରଥମେ ମୋତେ ବି ସନ୍ଦେହ ଲାଗୁଥିଲା । ତାକୁ ପଚାରିବାରୁ କହିଲା ତା ଭାଇ କୋଉ ଗୋଟେ ଶାଢ଼ୀ କମ୍ପାନୀରେ କାମ କରୁଛି । ସେଇଥିପାଇଁ କମ୍ ଦାମରେ ଭଲ ଭଲ ଶାଢ଼ୀ ପାଇଯାଉଛି ।

ନିଧି : ବାହା ହେଇଛି ବୋଲି କହୁଛି, ମୁଣ୍ଡରେ ସିନ୍ଦୁର ଲଗେଇନି ?

ଶୁଭେନ୍ଦୁ ଲଗେଇନି ? ସବୁଦିନ ତ ମେଞ୍ଚାଏ ମେଞ୍ଚାଏ ଲଗାଏ । କ'ଣ ହେଇଛି କେଜାଣି । ଏବେ ସାଙ୍ଗେ ସାଙ୍ଗେ ପଚାରି ଦେଉଛି ...?

ନିଧି ନାଇଁ ସେ ସବୁ ପଚାରା ପଚାରି କରିବା କ'ଣ ଦରକାର ଅଛି । ମୁଁ ଯାଉଛି । ମୋ ବ୍ୟାଗ ପତ୍ର ଏଇଠି ରହିଲା । ଓକିଲ ଘରେ ମୁହଁ ମାରି ଆସେ ।

ଶୁଭେନ୍ଦୁ : ରୋଷେଇ ହେଇଗଲାଣି ରୁହନ୍ତୁ ଏକାବେଳେ ଖାଇପିଇ ଚାଲିଯିବେ । ନ ହେଲେ ମୁଁ ଛାଡ଼ିଦେଇ ଆସିବି ।

ନିଧି ନାଇଁ ତୋତେ ହଇରାଣ ହେବା ଦରକାର ନାହିଁ । ତୋର କଲେଜ ସମୟ ହେଲାଣି । ତୁ ତୋର ଯିବୁ, ମୁଁ ମୋର ଯିବି । ଓକିଲ କହିଲେ ରାତିଟା ପୁଣି ଆସି ରହିଯିବି ।

ଶୁଭେନ୍ଦୁ : ପରମା ... ପରମା ।

(ପରମା ଆସିଛି)

ଶୁଭେନ୍ଦୁ : ଯା' ବଢ଼ାବଢ଼ି କର ।

ପରମା : ବାବୁଆଣି ମ୍ୟାଡାମ୍ ବଢ଼ାବଢି କରୁଛନ୍ତି । ଆପଣ ଆଉ ବୁଢ଼ାବାବୁ ଦି' ଜଣଯାକ ଖାଇବେ ।

ଶୁଭେନ୍ଦୁ : ହଉ ଠିକ୍ ଅଛି ତାଙ୍କୁ ତୁ ଯା' ସାହାଯ୍ୟ କର ।

(ପରମା ଚାଲିଗଲା)

ଆପଣ ବି ଚାଲନ୍ତୁ ମଉସା ।

ନିଧି : ଆଚ୍ଛା, ଏଇ ପରମା ତାକୁ ବାବୁଆଣି, ମ୍ୟାଡାମ୍ , ଏମିତି କ'ଣ କହୁଛି ? ଚାକରାଣୀକୁ ଏମିତି କାହିଁକି କହୁଛି ?

ଶୁଭେନ୍ଦୁ : ପରମାଟା ମଫସଲି ପିଲା, ତାକୁ ସେ ଝିଅ ଡରେଇ ଦେଇଛି । ସେଇଥି ପାଇଁ ସେମିତି କହୁଛି ।

ନିଧି : ଠିକ୍ କଥା ଯେ, ତୁ ପୁଣି "ତାଙ୍କୁ" ଯାଇ ସାହାଯ୍ୟ କର ବୋଲି କହୁଛୁ । ତୋତେ ବି କ'ଣ ଡରେଇ ଦେଇଛି ?

(ହଠାତ୍ ଶୁଭେନ୍ଦୁ ଘାବରେଇ ଯାଇଛି)

ଶୁଭେନ୍ଦୁ : ମୁଁ – ମୁଁ ସେମିତି କହିଦେଲିନା କ'ଣ ? ଭୁଲରେ ପାଟିରୁ ଖସି ଯାଇଥିବ ।

(ବନ୍ୟା ପଶିଆସିଲା)

ବନ୍ୟା : ଆସନ୍ତୁ ଆଜ୍ଞା ... ସେପଟେ ସବୁ ରେଡ଼ି ହୋଇଗଲାଣି ।

(ପଶି ଆସିଲେ ବାଳ ବଳରାମ)

ବାଳ : ମୋତେ ପୁଣି ଆସିବାକୁ ପଡ଼ିଲା ମା' ଆଚ୍ଛା ତୁମ ସ୍ୱାମୀ ସ୍ତ୍ରୀ ଦି' ଜଣଙ୍କର ଆଇଁଷ ଫାଇଁଷ ଚଳିବ ନା ? ସେଇକଥା ପଚାରିବାକୁ ଚାଲି ଆସିଲି ।

ଶୁଭେନ୍ଦୁ : ଏଇ କଥାକୁ ଆପଣ ପଚାରିବାକୁ ଆସିଲେ, ଆମର ସବୁ ଚଳିବ । ଆପଣ ଯା'ନ୍ତୁ ଗାଁରୁ ମୋର ନିଧି ମଉସା ଆସିଛନ୍ତି । ଖାଇପିଇ କଚେରୀ ଯିବେ ।

ବାଳ : ହଁ ହଁ ମୋର ତାଙ୍କ ସହିତ ଦେଖା ହୋଇଥିଲା । ଯାଆନ୍ତୁ ଆଜ୍ଞା ଖିଆପିଆ କରନ୍ତୁ ।

(ବାଳ ବଳରାମ ଚାଲିଗଲେ)

ବନ୍ୟା : ଆସନ୍ତୁ ସେପଟେ ସବୁ ପୁଣି ଥଣ୍ଡା ହୋଇଯିବ ।

ଶୁଭେନ୍ଦୁ : ଚାଲନ୍ତୁ ... ।

ନିଧି : ମୋର ସବୁ କେମିତି ଗୋଳମାଳିଆ ହୋଇଯାଉଛି । ମୋ ମୁଣ୍ଡ କ'ଣ ହୋଇଯାଉଛି ।

(ବସି ପଡ଼ିଲେ ସୋଫାରେ)

ଶୁଭେନ୍ଦୁ : କେତେ ରାତିରୁ ଘରୁ ଅଖିଆ ଅପିଆ ବାହାରିଥିବେ । ବସରେ ଧକଡ଼ ଚକଡ଼ ହେଲେ ଆମମାନଙ୍କର ମୁଣ୍ଡ ସେମିତି ଚକର ଖାଇଯାଏ । ଆପଣ ସହଜେ ବୁଢ଼ାଲୋକ ... ।

ବନ୍ୟା : ଗଣ୍ଡେ ପେଟରେ ପଡ଼ିଗଲେ ସବୁ ଭଲ ହୋଇଯିବ । ଆସନ୍ତୁ ମଉସା ।

(ବନ୍ୟା ନିଧି ମଉସାଙ୍କ ହାତଧରି ଉଠାଇବାକୁ ଯାଇଛି, ନିଧି ବିଗିଡ଼ି ଯାଇ ହାତ ଛିଞ୍ଚାଡ଼ି ଦେଇଛନ୍ତି)

ନିଧି : ଛାଡ଼, ମୋ ହାତ ଛାଡ଼ । ମୋତେ ସେମିତି ମଉସା ମଉସା ଡ଼ାକିବୁନି । ତୋତେ କୋଉଠି ମିଳିଲାନି ଆସି ମୋ ପୁତୁରାଟା ଉପରେ ଆଖି ପକେଇଛୁ ଅଲକ୍ଷଣୀ... ।

ଶୁଭେନ୍ଦୁ : ମଉସା ! ଆପଣ ଏ ସବୁ କ'ଣ କହୁଛନ୍ତି । ଆପଣ ଖାଇପିଇ କଚେ଼ରୀ ଯିବେ ପରା ।

ନିଧି : ଚୋ଼ପ୍ । ଏ ଘରେ ଜଳ ସ୍ପର୍ଶ କରିବିନି । (ଶୁଭେନ୍ଦୁକୁ) ଏତେ ଦିନ ପରେ ଜାଣିଲି ତୁ କାହିଁକି ବାହା ହେବାକୁ ମନା କରୁଛୁ । ଆଜି ଯାକୁ ଏଇଠୁ ବାହାର କରିବି ତ... ଖାଇବି ନ ହେଲେ ନାହିଁ ।

ବନ୍ୟା : (ହଠାତ୍ କାନ୍ଦିବାର ଅଭିନୟ କରି) ମୋର କିଛି ଦୋଷ ନାହିଁ । ମୁଁ ନିରିମାଖି, ମୂରୁଖ ଗରିବ ସ୍ତ୍ରୀ ଲୋକଟିଏ । ଆପଣ ଯଦି କହୁଛନ୍ତି, ଏଇ ପାଙ୍ଗେ ପାଙ୍ଗେ ବାହାରି ଯାଉଛି ମଉସା, ନାଇଁ ନାଇଁ ବୁଢ଼ା ବାବୁ... ।

ନିଧି : ଛାକ୍, ଅଭି ନିକିଲ୍ । ଏଇ ଘରୁ ବାହାରି ଯା' ।

ଶୁଭେନ୍ଦୁ : ଓଃ, ଆପଣ ଟିକେ ଚୁପ୍ ରୁହନ୍ତୁ ।

ନିଧି : ତୁ ଚୁପ୍ କର । ଏ ଫେସନବାଲି ଝିଅ ତୋ ମୁଣ୍ଡକୁ ଖାଇ ଦେଇଛି ବୋଲି, ମୁଁ ଡରିଯିବି ?

(ବନ୍ୟା ଭିତର ଆଡ଼କୁ ଯାଉ ଯାଉ)

ସିଆଡ଼େ କୁଆଡ଼େ, ବାହାରକୁ ବାଟ ଏପଟେ ।

ବନ୍ୟା : ଘର ଭିତରେ ମୋ ଜିନିଷପତ୍ର ଗୁଡ଼ାକ ନେଇକରି ଯିବି ।

ନିଧି : ଚା଼କରାଣୀର କ'ଣ ଜିନିଷପତ୍ର, ପୁଣି ଏତେ ଦାମିକା ଦାମିକା ? ନିଶ୍ଚୟ କୋଉଠୁ ଚୋ଼ରି କରିଛୁ ।

ବନ୍ୟା : ସେମିତି କହିଲେ ବେକରେ ଦଉଡ଼ି ଦେଇଦେବି କହୁଛି ।

ଶୁଭେନ୍ଦୁ : ଭାରି ଯିଦିଆ ଝିଅ ମଉସା । ବେକରେ ଦଉଡ଼ି ଲଗେଇ ଦେଲେ ଆମେ ଦି' ଜଣଯାକ ବନ୍ଧାହୋଇ ଯିବା ।

ନିଧି : ଠିକ୍ଅଛି । ତୋ ଜିନିଷ ଯାହା ଅଛି ସବୁ ନେଇ ବାହାରିଯା । ତା'ପରେ ମୁଁ କଚେ଼ରୀ ଯିବି ।

ବନ୍ୟା : (ଭିତରକୁ ଯାଉ ଯାଉ ଅଟକିଯାଇ) କେତେ କଷ୍ଟରେ ରୋଷେଇ କରିଥିଲି, ଭାବିଥିଲି ଆପଣମାନେ ଖାଇସାରିଲେ ଗଣ୍ଡେ ଖାଇକରି ଯିବି... ।

ଶୁଭେନ୍ଦୁ : ହଁ ମଉସା, ବିଚ୍ଛାରି କାଲିଠୁ କିଛି ଖାଇନି ବୋଲି କହୁଥିଲା, ଆମେ ଖାଇଲା ପରେ ଗଣ୍ଡେ ଖାଇଦେଇ ଯାଉ ।

ନିଧି : ଦେଖ, ଆମେ ଏଇନା ଖାଇକରି କଟ୍ଟେଗୀ ଯିବୁ । ଫେରିଲା ବେଳକୁ ତୋ ମୁହଁ ଯଦି ଏଇ ଅଂଚଳରେ ଦେଖିଛି, ମୋତେ ସେତେବେଳେ ଚିହ୍ନିବୁ ।

ବନ୍ୟା : ହଁ ।

(ବନ୍ୟା ଓ ଶୁଭେନ୍ଦୁ ଭିତରକୁ ଯାଆନ୍ତି । ବାଳ ବଳରାମ ବାହାରୁ ଆସନ୍ତି)

ବାଳ : ହେଇ ଆପଣ ଅଛନ୍ତି । ମୋ ଅଭଦ୍ରାମି ପାଇଁ ମୋତେ କ୍ଷମା ଦେବେ ବୁଢ଼ାବାବୁ । ଆପଣଙ୍କୁ ସେତେବେଳଏ ନିମନ୍ତ୍ରଣ କରିବାକୁ ଭୁଲିଯାଇଥିଲି ।

ନିଧି : ମାନେ ?

ବାଳ : ମାନେ ଶୁଭେନ୍ଦୁବାବୁ ଆଉ ତାଙ୍କ ସ୍ତ୍ରୀ ଆଜି ଆମଘରେ ଖାଇବେ । ଆପଣ ବି ପୁତୁରା ଆଉ ପୁତୁରା ବୋହୂ ସହିତ ଆମ ଘରେ ଖାଇବେ ।

ନିଧି : (ହଠାତ୍ ନଥ୍ କରି ବସି ପଡ଼ିଲେ)

ବାଳ : କ'ଣ ହେଲା ବୁଢ଼ାବାବୁ ? ହଠାତ୍ ଏମିତି ବସି ପଡ଼ିଲେ କାହିଁକି ?

ନିଧି : ମୁଁ ଆପଣଙ୍କର କଣ ହେବି କହିଲେ ?

ବାଳ : ମାନେ ?

ନିଧି ଆପଣଙ୍କଠାରୁ ମୋ ବୟସ ନିଶ୍ଚୟ ତି' ଚାରି ବର୍ଷ ବେଶୀ ହେବ । ମୋ ସହିତ ଥଟ୍ଟା କରିବା ପୂର୍ବରୁ ଟିକିଏ ଚିନ୍ତା କରି ପାରୁନାହାଁନ୍ତି ।

ବାଳ : ମୁଁ ଆପଣଙ୍କୁ ଥଟ୍ଟା କରିବାକୁ ଯିବି କାହିଁକି? କ'ଣ ଆପଣ କହିବାକୁ ଚାହାଁନ୍ତି ?

ନିଧି : ମୋ ପୁତୁରା ସହିତ ସେ ଝିଅଟାକୁ ଯୋଡୁଛନ୍ତି କାହିଁକି ? ସେ ଛୋଟ ଲୋକର ଝିଅଟା ଶୁଭେନ୍ଦୁ ସହିତ ସମାନ୍ ?

ବାଳ : (ହସି) ବାହାଘର ପୂର୍ବରୁ ଯାହାଥିଲେ ଥାଆନ୍ତୁ କିନ୍ତୁ ବାହାହେଲା ପରେ ସ୍ୱାମୀ ସ୍ତ୍ରୀ ଆଉ ଛୋଟ ବଡ଼ କ'ଣ ସମସ୍ତେ ସମାନ୍ ।

ନିଧି : ପୁଣି ସେଇ କଥା କହିଲେ । ସ୍ୱାମୀ ସ୍ତ୍ରୀ କିଏ ?

ବାଳ : ଏଇ ପ୍ରଫେସର ବାବୁ ଆଉ ସେ ଝିଅ ।

ନିଧି : ଆପଣ ଜାଣିଛନ୍ତି ଯେ, ତି' ଜଣ ସ୍ୱାମୀ ସ୍ତ୍ରୀ ?

ବାଳ : ଆରେ ବୁଢ଼ାବାବୁ, ସେମାନେ ମୋ ଘରେ ରହୁଛନ୍ତି । ମୁଁ ଜାଣିବିନି ।

ନିଧି : ଏ ସବୁ ଆପଣଙ୍କୁ କିଏ କହିଲା ?

ବାଳ : କହିବ ଆଉ କିଏ । ଏ ପ୍ରଫେସର ବାବୁ ଆଉ ତାଙ୍କ ବନ୍ଧୁ ଭବାନୀ ବାବୁ ।

ନିଧି : ଏଁ ! ଭବାନୀ ବି ଜାଣିଛି ଏଇ ଦୁଇଜଣ ଯାକ ଭିତରେ ଭିତରେ ବାହାହୋଇ ଯାଇଛନ୍ତି ! ମୋ ମୁଣ୍ଡ କ'ଣ ହେଇଯାଉଛି । (ପୁଣି ମୁଣ୍ଡରେ ହାତଦେଇ ବସିପଡି)

ବାଳ : କିଛି ନ ବୁଝି ନ ସୁଝି ପାଟି ତୁଣ୍ଡ କଲେ ସେମିତି ହବ ।

ନିଧି : (ହଠାତ୍ ରାଗିଯାଇ) ମୁଁ ବୁଝିପାରୁନି, ଆପଣ କ'ଣ ବୁଝିଛନ୍ତି ?

ବାଳ : ମୁଁ ଯାହା ବୁଝିବାର କଥା ଠିକ୍ ବୁଝିଛି, ଆପଣ ଅତ୍ୟଧିକ ବୁଢ଼ା ହୋଇଗଲେଣି ତ ମୁଣ୍ଡ ଗୋଳମାଳିଆ ହେଇଯାଉଛି ।

ନିଧି : ଆରେ ବାବୁ ମୋ ପୁତୁରା ଏବେ ଯାଏ ବାହାହୋଇନି କି କେହି ତାର ସ୍ତ୍ରୀ ନାହାଁନ୍ତି । ଏ ଚାକରାଣୀଟାକୁ ତା ସ୍ତ୍ରୀ ସହିତ ତୁଳନା କରି ଆପଣ ତାକୁ ବଡ଼ ଅପମାନିତ କରୁଛନ୍ତି ।

ବାଳ : ତା' ମାନେ ଭବାନୀ, ଶୁଭେନ୍ଦୁ ସେ ଝିଅ ସମସ୍ତେ ମିଶି ମୋତେ ଠକିଛନ୍ତି । ଗୋଟେ ଦୁର୍ଦ୍ଦାନ୍ତ ପୋଲିସ୍ ଅଫିସର ବାଳ ବଳରାମ ଚୌଧୁରୀକୁ ସେମାନେ ଠକିଛନ୍ତି ?

ନିଧି : ସେ ଠକନ୍ତୁ କି ନ ଠକନ୍ତୁ ଆପଣ କିନ୍ତୁ ଏମାନଙ୍କ ସଂପର୍କ ନେଇ ଯେମିତି ପ୍ରଚାର ଚଳେଇଛନ୍ତି ସେଇଟା ଠିକ୍ ନୁହେଁ । ଯାଆନ୍ତୁ । ମୁଁ ଭିତରକୁ ଯାଇ ସେ ଝିଅଟାକୁ ଏଇଠୁ ବାହାର କରିବାର ବ୍ୟବସ୍ଥା କରେ ।

(ନିଧି ଭିତରକୁ ଚାଲିଗଲେ)

ବାଳ : ଆ'ରେ ବାଘ ପାଖରେ ଲୁଚକାଳି ଖେଳ ? ଆଜି ବାଳ ବଳରାମ ଚୌଧୁରୀ ଯଦି ତା ରୂପ ଦେଖେଇ ନ ଦେଇଛି ।

(ହଠାତ୍ ଭବାନୀ ପଶିଆସେ । ବାଳ ବଳରାମକୁ ଦେଖି ଖସିଗଲା ବେଳକୁ, ବାଳ ବଳରାମ ତାକୁ ଧରି ନିଅନ୍ତି)

ହଇଓ ଭବାନୀ ବାବୁ-କୁଆଡ଼େ ଖସି ପଳେଇ ଯାଉଛ । ଏଇ ପ୍ରଫେସର ବାବୁ ବାହା ହୋଇଛନ୍ତି ? ସତ କୁହ ?

ଭବାନୀ : ମୁଁ ଜାଣିଛି ପରା ଏକୋଇଶା ଭୋଜି ନ ଖାଇଲେ ଆପଣ ମୋତେ ବିଶ୍ୱାସ କରିବେନି ।

ବାଳ : ଚୋପ୍ । ସେ ବାଜେକଥା କହିବନି । ଶୁଭେନ୍ଦୁ, ସେ ଝିଅ ଆଉ ତୁମେ ମିଶି ମୋତେ ଭୁଡେଇ ଚାଲିଛ । ଏଇନା ତାଙ୍କ ମଉସା ନ କହିଥିଲେ ମୁଁ ମୂଳରୁ ଜାଣି ନ ଥାନ୍ତି ।

ଭବାନୀ : ଆପଣ କାହା କଥା କହୁଛନ୍ତି ?

ବାଳ : ଆରେ ବାବୁ ସେ ଦିନ କହିଲ ପ୍ରଫେସର ବାବୁ ବାହାହୋଇ ତାଙ୍କ ସ୍ତ୍ରୀକୁ ଶଶୁର ଘରେ ଛାଡ଼ି ଦେଇଛନ୍ତି । ଆଜି ଦେଖେ ତ ଝିଅଟେ ଆସି ମୋତେ ମୁଣ୍ଡିଆ ମାରି ତାଙ୍କର ସ୍ତ୍ରୀ ବୋଲି ପରିଚୟ ଦେଇଛି । ଏଇନା ବୁଢ଼ାବାବୁ କହୁଛନ୍ତି ... ।

ଭବାନୀ : କୋଉ ବୁଢ଼ାବାବୁ କହୁଛନ୍ତି ଚାଲିଲେ ଦେଖିବା... ।

ବାଳ : ଶୁଭେନ୍ଦୁ ବାବୁଙ୍କ ମଉସା, କ'ଣଟା ନାଁ । ତ... ନିଧି ମଉସା ।

ଭବାନୀ : ନିଧି ମଉସା ଆସି ଏଠି ପହଁଚି ଗଲେଣି ? କାହାଁନ୍ତି ସିଏ ?

ବାଳ : ଭିତରେ ଅଛନ୍ତି ।

ଭବାନୀ : ଗଲା- ସବୁ ଗଲା (ମୁଣ୍ଡରେ ହାତଦେଇ ବସିପଡ଼ି)

ବାଳ : କ'ଣ ଗଲା ? ପୁଣି ଗୋଟେ ଫନ୍ଦି ହବ? ନାଇଁ ମୋତେ କ'ଣ ଭାବିଛ ଛୋଟ ପିଲା ? କିଛି ବୁଝିପାରିବନି ?

ଭବାନୀ : (ହଠାତ୍ କାନ୍ଦ କାନ୍ଦ ହୋଇ ବାଳ ବଳରାମଙ୍କ ଗୋଡ଼ ଧରି ନେଇ) ମୁଁ ଆପଣଙ୍କ ଗୋଡ଼ ଧରୁଛି । ଆପଣ ଏଇ ସ୍ୱାମୀ ସ୍ତ୍ରୀ ଦି'ଟାଙ୍କୁ ଟିକିଏ ସାହାଯ୍ୟ କରନ୍ତୁ? ଆପଣ ହିଁ ପାରିବେ । କାରଣ ଆପଣ ଥିଲେ ଜଣେ ଦୁର୍ଦ୍ଦାନ୍ତ ପୋଲିସ୍ ଅଫିସର । ଆଇନ୍ କାନୁନ୍ ବିଷୟରେ ବହୁତ୍ ଅଭିଜ୍ଞତା ଅଛି ।

ବାଳ ମୋ ଗୋଡ଼ ଛାଡ଼ ହେ ! ସେ ଅଭିନୟ ଆଉ କାହା ପାଖରେ ଦେଖେଇବ । ମୁଁ ତୁମକୁ ଆଉ ତୁମ ସାଙ୍ଗକୁ ଠିକ୍ ଚିହ୍ନି ନେଲିଣି ।

ଭବାନୀ : ହଁ ଆପଣ ଆମକୁ ଠିକ୍ ଚିହ୍ନି ନେଇଛନ୍ତି, ହେଲେ ସେ ବାପଛେଉଣ୍ଡ ଝିଅଟାକୁ ଟିକେ ସାହାଯ୍ୟ କରିବେ । ନ ହେଲେ ବିଚାରୀର ବୋଉ ତିନି ତିନିଟା ସାନ ଭଉଣୀ ଦାଣ୍ଡର ଭିକାରୀ ହୋଇଯିବେ ।

ବାଳ : ମାନେ ?

ଭବାନୀ : ମାନେ ଆମେ ଯାହାକୁ ଭୟ କରୁଥିଲୁ ସେ ଟାଉଟର ବୁଢ଼ା ଆସି ଏଠି ପହଁଚି ଯାଇଛି । କେମିତି ତାକୁ ଜବତ କରିବାକୁ ହେବ, ଆପଣ ବୁଦ୍ଧି ବଢେଇବେ ।

ବାଳ : ଆରେ ବାବୁ ସବୁ କଥା ଖୋଲି କହିଲେ ସିନା ବୁଦ୍ଧି ବଢେଇବି ।

ଭବାନୀ : ଏଇ ନିଧି ମଉସା ମଧ୍ୟସ୍ଥିରେ ଏଇ ଝିଅ ସହିତ ଗତବର୍ଷ ଶୁଭେନ୍ଦୁର ବାହାଘର ହେଲା । ଶୁଭେନ୍ଦୁର ବୋଉ ଆଉ ଏଇ ମଉସା ଠିକ୍ ବାହାଘର ପୂର୍ବଦିନ ତାଙ୍କୁ ଗୋଟେ ଫ୍ରିଜ୍, ଗୋଟେ କଲର ଟିଭି, ଗୋଟେ ହିରୋହୋଣ୍ଡା ଡିମାଣ୍ଡ କରି ବସିଲେ । ଭାଉଜଙ୍କ ମା' ବିଚାରୀ ଘର ଡ଼ିହ ସାଙ୍ଗେ ସାଙ୍ଗେ ବନ୍ଧା ପକେଇ

ଫ୍ରିଜ୍ ଆଉ କଲର୍ ଟିଭି ଦେଲେ । କହିଲେ ପରବର୍ଷ ହିରୋହୋଣ୍ଡା ଦେବେ । ଗରିବ ଲୋକ, ଏଇ ବର୍ଷ ଯୁରିବାକୁ ବସିଲାଣି ଦେଇନାହାଁନ୍ତି ।

ବାଳ : ସେଇଠୁ କ'ଣ ହେଲା?

ଭବାନୀ : ହବ ଆଉ କ'ଣ ଶୁଭେନ୍ଦୁର ବୋଉ ଆଉ ଏ ବୁଢା ବାବୁ ଦି'ଜଣ ଯାକ ଏ ଝିଅକୁ କୌଣସି ଉପାୟରେ ଆଉ ଘରକୁ ଆଣିବାକୁ ଚାହୁଁ ନାହାଁନ୍ତି ?

ବାଳ : ଯଦି କଥା ଦେଇଥିଲେ ଏମାନେ କାହିଁକି ସେ ହିରୋହୋଣ୍ଡାଟା ଦେଇ ଦଉ ନାହାଁନ୍ତି ?

ଭବାନୀ : କିଏ ଦବ ? ବାପା ନାହିଁ ଭାଇ ନାହିଁ କେବଳ ବିଧବା ବୁଢ଼ୀ ମା'ଟା । ମେସିନ୍ ଖଣ୍ଡେ ଧରି ସିଲେଇପତ୍ର କରି ଭାଉଜ ଆଉ ତାଙ୍କର ୩ଟା ସାନ ଭଉଣୀକୁ ମଣିଷ କରିଛନ୍ତି । କ'ଣ ଅଛି ଯେ ଦେବେ? ଏମାନେ ତ ଯିଦି ଧରିଛନ୍ତି ହିରୋହୋଣ୍ଡା ଆସିବ ତ ବୋହୂ ଫେରିବ ।

ବାଳ : ଶୁଭେନ୍ଦୁ ବାବୁ ତାଙ୍କ ବୋଉକୁ ବୁଝେଇ ଦେଉ ନାହାଁନ୍ତି ?

ଭବାନୀ : ବୋଉ ବୁଝିଯାଉଛି କିନ୍ତୁ ଏଇ ବୁଢ଼ା ମଝିରେ ମଝିରେ ତାଙ୍କ ମୁଣ୍ଡ ପରା ଖରାପ୍ କରିଦେଉଛି । ଏ ବୁଢ଼ା ଆମ ଗାଁରେ ସେ ଦିନ ହଲପ୍ କରି କହିଛନ୍ତି- ହିରୋହୋଣ୍ଡା ଆଣିବତ ସେ ଘରେ ବୋହୂ ହୋଇ ରହିବ । ନ ହେଲେ ତାକୁ ଛାଡ଼ପତ୍ର କରେଇ ଶୁଭେନ୍ଦୁକୁ ଗୋଟେ ନୂଆ ଝିଅ ସହିତ ବାହା କରାଇଦେବି ।

ବାଳ : ନା ନା ...ଏଇଟା ଅନ୍ୟାୟ । ଶୁଭେନ୍ଦୁକୁ ଡ଼ାକ ମୁଁ ତାଙ୍କୁ ବୁଝେଇ ଦେଉଛି ।

ଭବାନୀ : ଶୁଭେନ୍ଦୁକୁ ବୁଝାଇବା କ'ଣ ଦରକାର ଅଛି, ବରଂ ଆମେ ଗୋଟେ ଉପାୟ ପାଞ୍ଚିଛୁ । ଆପଣ ସାହାଯ୍ୟ କଲେ ସବୁ କଥା ମୀମାଂସା ହୋଇଯିବ ।

ବାଳ : କ'ଣ କରିବାକୁ ହେବ କହୁନାହାଁନ୍ତି ।

ଭବାନୀ : ଆମେ ବ୍ୟାଙ୍କରୁ ହିରୋହୋଣ୍ଡା ପାଇଁ ଲୋନ୍ କରୁଛୁ । ସେଇଟା ଦିନେ ଦି' ଦିନ ଭିତରେ ମିଳିଗଲେ ଭାଉଜ ସେ ଟଙ୍କାଟା ନେଇ ଶୁଭେନ୍ଦୁ ବୋଉକୁ ଦେଇଦେବେ । କହିବେ ଏଇଟା ମୋଟର ସାଇକେଲ୍ କିଣିବାପାଇଁ ତାଙ୍କ ବାପଘରୁ ଆଣିଛନ୍ତି ।

ବାଳ : ତା' ମାନେ ସେ ଜାଣିବେ ଯେ ଡ଼ିମାଣ୍ଡ ଅନୁସାରେ ଯୌତୁକ ମିଳିଗଲା ।

ଭବାନୀ : **Cent percent correct,** ବାସ୍ ସାପ ମରିବ ଅଥଚ଼ ବାଡ଼ି ଭାଙ୍ଗିବନି ।

ବାଳ : ଠିକ୍ ଯେ - ମୋର ଏଥିରେ କ'ଣ କରିବାର ଅଛି ?

ଭବାନୀ : ଅଛି । ବହୁତ୍ କଥା କରିବାର ଅଛି । ବ୍ୟାଙ୍କରୁ ଟଙ୍କା ଉଠାଇଲା ପର୍ଯ୍ୟନ୍ତ ନିଧି ମଉସାଙ୍କୁ ଦିନେ ଦି' ଦିନ କୋଉଠି ହେଲେ ଅଟକେଇ ରଖିବାର ଅଛି ।

ବାଳ : କାହିଁକି ?

ଭବାନୀ : ଆପଣ ବୁଝୁନାହାଁନ୍ତି - ଏ ନିଧି ମଉସା ଆଜି ଯଦି ଗାଁକୁ ଯାଆନ୍ତି, ଶୁଭେନ୍ଦୁ ସ୍ତ୍ରୀ ଏଠିକି ଆସିଛି ବୋଲି ତା ବୋଉକୁ କହିଦେବେ । ତା' ବୋଉ ଏଠିକି ସାଙ୍ଗେ ସାଙ୍ଗେ ଚାଲିଆସିବେ ।

ବାଳ : ହୁଁ ତା' ହେଲେ ବୁଢ଼ାଙ୍କୁ ଦିନେ ଦି' ଦିନ କୋଉଠି ଲୁଚେଇ ରଖିବାକୁ ପଡିବ । ଏୟାତ ?

ଭବାନୀ : ହଁ ସେୟା । ଆମେ ଟଙ୍କାଟା ହାତରେ ଧରିବୁ ଭାଉଜ ଗାଁକୁ ଯିବେ । ନ ହେଲେ ଏମାନେ ଯେମିତି ମୋଟର ସାଇକେଲ ପାଇଁ ଅଡ଼ି ବସିଛନ୍ତି ଭାଉଜଙ୍କ ବୋଉ ଟଙ୍କା ତ ଦେଇ ପାରିବେନି ବରଂ ବେକରେ ଦଉଡି ଲଗାଇଦେବେ ।

ବାଳ : ନା ନା ... ବଳରାମ ଚୌଧୁରୀ ଥାଉ ଥାଉ ଏ ସବୁ କିଛି ହୋଇ ପାରିବନି । ମୁଁ ଆଜି ବୁଢ଼ାକୁ ଯେମିତି ହେଲେ କୋଉଠି ଲୁଚେଇ ରଖିବାର ବ୍ୟବସ୍ଥା କରୁଛି । ନ ହେଲେ ପୋଲିସ୍ ହାତରେ ବନ୍ଧେଇ ଦେବି ।

(ନିଧି ଆଗେ ଆଗେ ତା ପଛେ ପଛେ ପ୍ରବେଶ କରନ୍ତି ବନ୍ୟା ଓ ଶୁଭେନ୍ଦୁ । ଭବାନୀ ଖସି ଚାଲିଯାଏ)

ନିଧି : ଦେଖ - ଆମେ ଖାଇସାରିଲୁ । ତୁ ଖାଇନେବୁ ବାସ୍ ତୋ ଜିନିଷପତ୍ର ନେଇ ବାହାରିଯିବୁ । ମୁଁ କଚେରୀରୁ ଫେରିବା ବେଳକୁ ଦେଖିବି ଯଦି ବାହାରି ଯାଇନୁ ସାଙ୍ଗେ ସାଙ୍ଗେ ପୋଲିସରେ ଦେବି । ଯା' ଖିଆପିଆ ସାରି ବାହାରିପଡ଼... ।

(ବନ୍ୟା ଭିତରକୁ ଚାଲିଗଲା)

ବାଳ : ଆପଣ ବି ବାହାରି ପଡ଼ନ୍ତୁ, ଆମେ ସାଙ୍ଗ ହୋଇ ପୋଲିସ୍ ଷ୍ଟେସନ୍ ଯିବା ।

ନିଧି : କାହିଁକି?

ବାଳ : ଜାଣନ୍ତି ବାହାଘର ପରେ ଯୌତୁକ ନେଇ ବୋହୁକୁ ନିର୍ଯ୍ୟାତନା ଦେଲେ କୋଉ ଦଫାରେ ବନ୍ଧା ହେବେ ?

ନିଧି : ବନ୍ଧା ହେବି ? ଆପଣ କାହାକଥା କହୁଛନ୍ତି ।

ବାଳ : ଉଁ ଯେମିତି କିଛି ଜାଣିପାରୁନାହାଁନ୍ତି । ଚାଲନ୍ତୁ ... ନଚେତ୍ ଫୋନ୍ କରିବି ପୋଲିସ୍ ଆସି ହାତକଡ଼ି ପକେଇ ନେଇଯିବ ।

ନିଧି : ହେ ବାବୁ ତୁମ ମୁଣ୍ଡ ଖରାପ୍ ହୋଇଯାଇନି ତ ?

ବାଳ : ମୋ ମୁଣ୍ଡ ଠିକ୍ ଅଛି । ଆପଣ ଆପଣଙ୍କ ମୁଣ୍ଡ ଠିକ୍ କରନ୍ତୁ । କିଓ ସେ ମିଆଁ ବିବି ରାଜି, ସେ ତାଙ୍କର ଘର କରିବାକୁ ପ୍ରସ୍ତୁତ । ତୁମେ ବୁଢ଼ାଟିଏ ହୋଇ ସେ

ଡିମାଣ୍ଡରୁ କ'ଣ ପାଇବ ?

ନିଧି : ଆରେ ବାବୁ କ'ଣ ଯାତୁ ସାତୁ ବକି ଚାଲିଛ, ମୁଁ ତ କିଛି ବୁଝିପାରୁନି ।
(ଶୁଭେନ୍ଦୁ ଆସିଛି)

ବାଳ : ଆପଣଙ୍କର ପୁତୁରା ବୋହୂ ମା' ହେବାକୁ ବସିଲାଣି ଏ ସମୟରେ ତାକୁ ଡାଇଭର୍ସ କରେଇବାକୁ ଚକ୍ରାନ୍ତ କରୁଛନ୍ତି ।

ନିଧି : (ବସିପଡ଼ି) ଏଁ ପା. ପା. ପାଣି ।
(ଶୁଭେନ୍ଦୁ ପାଣି ପାଇଁ ଚାଲିଯାଏ)

ବାଳ : ପାଣିମାନେ ?

ନିଧି : ମୋର ଗୋଟେ ପାଣି ଗ୍ଲାସ୍ ଦରକାର । ମୋ ମୁଣ୍ଡ କ'ଣ ହେଇ ଯାଉଛି ।

ବାଳ : ସେସବୁ କିଛି ଶୁଣାଯିବନି, ଚାଲନ୍ତୁ ମୋ ସାଙ୍ଗରେ ଥାନାକୁ । ସେଇଠି ଯେତେ ପାଣି ପିଇବା କଥା ପିଇବେ । ଗୋଟେ ଝିଅକୁ ଆପଣମାନେ ପୂଜା ପାଠ ମନ୍ତ୍ର ହୋମ ରିତିମତ କରି ବୋହୂ କରି ଆଣିଲେ । ସେମାନେ ସୁଖରେ ଘର ସଂସାର କରିଲା ବେଳକୁ ସାମାନ୍ୟ ମୋଟର ସାଇକେଲ୍ ପାଇଁ ନବରଙ୍ଗ । ଏଥିରେ ତା'ର ମାନସିକ ଅବସ୍ଥା ଠିକ୍ ରହିବ ? ଚାଲନ୍ତୁ ।
(ବାଳ ବଳରାମ ନିଧି ମଉସାଙ୍କୁ ଉଠେଇବାକୁ ଗଲାବେଳକୁ ସେ ଅଚେତ୍ ହୋଇ ଗଡ଼ିପଡ଼ନ୍ତି । ଶୁଭେନ୍ଦୁ ପାଣି ଧରି ଆସେ)

ଶୁଭେନ୍ଦୁ : (ପ୍ରବେଶ) ଏଁ ନିଧି ମଉସା ଅଚେତ୍ ହୋଇଯାଇଛନ୍ତି ।

ବାଳ : ହୋଇଯାଆନ୍ତୁ ସେଥିରେ କିଛି ବ୍ୟସ୍ତ ହେବାରନାହିଁ । ଏଇଟା ବରଂ ଠିକ୍ ସୁଯୋଗ ତାଙ୍କୁ ଚାଲ-ଟେକି ନେଇ ମୋ ଷ୍ଟୋରରୁମରେ ରଖି କରି ଆସିବା ।
(ଭବାନୀ ଆସିଛି)

ବାଳ : ହଇହେ ଭବାନୀ ବାବୁ ମୋତେ ୟାଙ୍କୁ ଉଠେଇ ନେବାକୁ କହି କୁଆଡ଼େ ଯାଇଥିଲ । ଧର ଏ ବୁଢାବାବୁଙ୍କୁ ।

ଭବାନୀ : ୟାଙ୍କୁ ନେଇ କୋଉଁଠି ଲୁଚାଇବା ବୋଲି କହୁଛନ୍ତି ?

ବାଳ : ମୋ ଘରକୁ ଟେକି ଟେକି ନେଇଯିବା । ସେଠି ଗୋଟେ ଘରେ ତାଲାବନ୍ଦ କରି ରଖିଦେବା ।

ଭବାନୀ : ନା, ମୁଁ ଏବେ ଦେଖିଆସିଲି ଶୁଭେନ୍ଦୁର ବୋଉ ଆସୁଛନ୍ତି । କୋଉ ମୁହୂର୍ତ୍ତରେ ଏଠି ପହଁଚିଯିବେ । ୟାଙ୍କୁ ଆପଣଙ୍କ ଘରକୁ ନେବାବେଳେ ତାଙ୍କ ଆଖିରେ ପଡ଼ିଗଲା ଯଦି ସବୁ ବିଭ୍ରାଟ ହୋଇଯିବ ।

ଶୁଭେନ୍ଦୁ : ମରିଗଲା ମଣିଷ । ମୋ ବୋଉଙ୍କୁ ତୁ କୋଉଠି ଦେଖିଲୁ ?

ଭବାନୀ : ମୁଁ ଅଫିସକୁ ଯାଇପାରିବିନି ବୋଲି ଗୋଟେ ଛୁଟି ଦରଖାସ୍ତ ଦେଇ ଫେରୁଥିଲି । ବାଟରେ ଦେଖିଲି ଜଣେ ବୁଢାବାବୁଙ୍କ ସହିତ ତୋ ବୋଉ ବସରୁ ଓହ୍ଲାଇଲେ । ଗୋଟେ ରିକ୍ସା ବୁଝୁଥିଲେ । ସେଇଠୁ ତୋତେ ଖବର ଦେବାକୁ ସିଧା ଧାଇଁଆସିଲି ।

ବାଳ : ବର୍ତ୍ତମାନ ତା ହେଲେ ସବୁ ଗୋଳମାଳ ହୋଇଯିବ ଦେଖୁଛି ।

ଭବାନୀ : କିଛି ଗୋଳମାଳ ହେବନି । ନିଧି ମଉସାଙ୍କୁ ଆମେ ରୋଷେଇ ଘର ପାଖ ଷ୍ଟୋର ରୁମରେ ଲୁଚେଇ ଦେବା ।

ବାଳ : ଠିକ୍ ଯେ ସେ ଏବେ ସେନ୍‌ସଲେସ୍ ଅଛନ୍ତି କୋଉ ମୁହୂର୍ତ୍ତରେ ଯଦି ସେନ୍‌ସ ଚାଲିଆସିଲା ଷ୍ଟୋର୍ ରୁମରେ ରହି ପାଟି କରି ଦେଲେ କଥା ସରିଲା ।

ଭବାନୀ : ସେ ଭୟ ନାହିଁ । (ପକେଟରୁ ଏକ ଛୋଟ ସ୍ପ୍ରେୟର ବାହାର କରି) ଏଇ ଦେଖନ୍ତୁ ଏ ସ୍ପ୍ରେୟର । ଯାହାକୁ ଯଦି ନିଧି ମଉସାଙ୍କ ନାକ ପାଖରେ ସ୍ପ୍ରେ କରିଦେବା କମସେ କମ୍ ଚାରି ପାଞ୍ଚଘଣ୍ଟା ତାଙ୍କ ଚେତା ଫେରିବନି ।

ଶୁଭେନ୍ଦୁ : ନା ନା . ସେ କଥା ତୁ କରିପାରିବୁନି । ସେମିତି କଲେ କେତେବେଳେ କ'ଣ ଘଟିଯିବ କିଏ କହିବ ?

ଭବାନୀ : ଚୁପ୍ । ବେଶୀ ବକ୍ ବକ୍ କରନି । ତୋ ବୋଉ ଆସିଗଲେ କଣ ଅବସ୍ଥା ହେବ ବୁଝୁଛଟି (ବାଳ ବଳରାମଙ୍କୁ ) ଆପଣ ଧରିଲେ ମଉସା .... ଯାହାଙ୍କୁ ନେଇଯିବା । (ଭବାନୀ ନିଧି ନାକ ପାଖରେ ସ୍ପ୍ରେ କରିଦିଏ । ବାଳ ବଳରାମ ଓ ଭବାନୀ ନିଧିଙ୍କୁ ଟେକି ଟେକି ରୋଷେଇ ଘର ଦିଗକୁ ନେଇଯାଆନ୍ତି । ଶୁଭେନ୍ଦୁ ବୋକାଙ୍କ ଭଳି ଚାହିଁ ରହିଥାଏ । ପରେ ପରେ ଦୁହେଁ ଚାଲିଆସନ୍ତି ।)

ଭବାନୀ : ଗୋଟେ ବଢ଼ିଆ କାମ ହେଲା । ଷ୍ଟୋର ରୁମର ଫ୍ରିଜର କାଗଜ ଡବଲଟା ଆଢୁଆଳରେ ନିଧି ମଉସାଙ୍କୁ ଶୋଇଦେଲେ । ଶୁଭେନ୍ଦୁର ବୋଉ ଆସି ଷ୍ଟୋର୍ ରୁମ୍ ଖୋଲିଲେ ଫ୍ରିଜ୍ ଡବଲ ଆଢୁଆଳର କ'ଣ ଅଛି ଜାଣିପାରିବେନି ।

ବାଳ : ବର୍ତ୍ତମାନ ତା ହେଲେ ଏ ଝିଅ କଥା କ'ଣ କରାଯିବ ।

ଭବାନୀ : ଆପଣ ଏଇ ସଂଗେ ସଂଗେ ଭାଉଜଙ୍କୁ ଆପଣଙ୍କ ଘରକୁ ନେଇଯାଆନ୍ତୁ । (ବନ୍ୟା ଆସିଛି)

ବାଳ : ତୁ ଆସ ମା, ତୋ ଶାଶୁ ଆସିବା ପୂର୍ବରୁ ଏଇଠୁ ଚାଲିଯିବା... । (ବାଳ ବଳରାମ ବନ୍ୟା ସହିତ ବାହାରକୁ ଯିବା ବେଳକୁ ଭବାନୀ ପାଟି କରିଉଠେ ।)

ଭବାନୀ : ଭାଉଜ...ତୁମ ଜିନିଷପତ୍ର ସବୁ ନେଇ ଚାଲିଯାଅ । ସେପଟେ ଅଗଣାରେ ତୁମ ଶାଢ଼ି ବ୍ଲାଉଜ୍ ଶୁଖୁଛି । ଶୁଭେନ୍ଦୁ ବେଡ ରୁମରେ ତୁମ ସ୍ନୋ ପାଉଡ଼ର ଥୁଆ ହୋଇଛି ।

(ବନ୍ୟା ଭିତରକୁ ଯାଇ ଶାଢ଼ୀ ବ୍ଲାଉଜ୍ ନେଇଆସେ ଏବଂ ଶୁଭେନ୍ଦୁ ବେଡ୍ ରୁମର ଡା'ର ଆଚାଡ଼ି ଇତ୍ୟାଦି ଆଣି ସେଥିରେ ଶାଢ଼ୀ ଭାଙ୍ଗି ପୁରାଇବାକୁ ଲାଗେ । ଫ୍ରିଜ୍ କଭଲ ତଳେ ବସି ନଧି ଧିରେ ଧିରେ କଭଲ ସହ ମଂଚକୁ ଆସୁଥାଏ ।)

ବାଳ : ଉଁ ହୁଁ ସେ ସବୁ ଭଙ୍ଗା ଭଙ୍ଗି କଲାବେଳକୁ ଡେରି ହୋଇଯାଉଛି । ସେ ଗୁଡ଼ାକ ମୋତେ ଦେ ମୁଁ ନେଇଯାଉଛି । ମୋ ଘରେ ଏ ସବୁ ସାଇତା ସାଇତି କରିବୁ । ଆସ ।

(ବାଳ ବଳରାମ ବନ୍ୟାର ଆଟାଚ଼ି ଶାଢ଼ି ଇତ୍ୟାଦି ଧରି ବାହାରି ଗଲା ଭିତରେ ଫ୍ରିଜ୍ କଭଲ ପଟି ଭିତରେ ରହି ନିଧି ମଞ୍ଚକୁ ଆସି ପାଟି କରିଉଠନ୍ତି ।

ନିଧି : (କଭଲ ତଳେ ରହି ମଞ୍ଚକୁ ଧିରେ ଧିରେ ଆସି) ସେଇଠି ଠିଆ ହୁଅନ୍ତୁ ।

(ବାଳ ବଳରାମ ଓ ବନ୍ୟା ଠିଆ ହୋଇଯାଆନ୍ତି ଏବଂ ଆଶ୍ଚର୍ଯ୍ୟ ହୋଇ ଚ଼ାରିଆଡ଼କୁ ଚ଼ାହାନ୍ତି)

ବାଳ : ଠିଆ ହେଇଯିବାକୁ କିଏ କହିଲା ?

ନିଧି : (ସେ କଭଲ ଭିତରେ ରହି) ଆଉ କହିବ । ଯାହାକୁ ତୁମେ ଦି' ଜଣ ମିଶି ବିଷ ଶୁଙ୍ଘେଇ ମାରିବାକୁ ବସିଥିଲି ... ସେଇ ଟାଉଟର ବୁଢ଼ା... ।

(ନିଧି ପୁଣି କଭଲ ତଳେ ତଳେ ରହି ଚ଼ାଲିଲା ବେଳକୁ ବାଳ ବଳରାମ ଆସି କଭଲ ଉଠେଇ ଦିଅନ୍ତି । ତା ଭିତରୁ ନିଧି ମଉସା ଉଠି ହୋ ହୋ ହୋଇ ହସିଉଠନ୍ତି)

ବାଳ : ହେଇଟି ଭବାନୀ ବାବୁ ମୁଁ କଣ କହୁଥିଲି ତୁମ ଯୋଜନା ସବୁ ଫସରଫାଟି ଗଲା... । ତୁମ ଷ୍ଟେୟର କିଛି କାମ କଲାନି ।

ନିଧି : ସେଥିପାଇଁ କିଛି ବ୍ୟସ୍ତ ହୁଅନ୍ତୁନି । ଶୁଭେନ୍ଦୁର ବୋଉ ଏଠିକି ଆସିବେନି । ସେ ଯାଇ ଜଗନ୍ନାଥ ମନ୍ଦିରରେ ଅପେକ୍ଷା କରିବାକୁ କୁହାଯାଇଛି ।

ବାଳ : ତା ମାନେ ଆପଣ ସେନ୍‌ସଲେସ୍ ନ ହୋଇ କେବଳ ଅଭିନୟ କରୁଥିଲେ ।

ନିଧି : ଏ ଶୁଭେନ୍ଦୁଟା ଯେମିତି ବାହା ହେବନି ବୋଲି ଆଜ ଦେଖେଇ ଚ଼ାଲିଲା ସେଥିରେ ଏଇ ବୟସରେ ମୋତେ ବି ଅଭିନୟ କରିବାକୁ ପଡ଼ିଲା । ସେଥିପାଇଁ ମୋତେ କ୍ଷମା କରିଦେବେ ବାଳ ବଳରାମ ବାବୁ, ଏ ଭବାନୀ ବୋଲରେ ମୋତେ ଏଇ ଝିଅ ସହିତ ଏଇ ନାଟକରେ ଭାଗ ନେବାକୁ ପଡ଼ିଲା ।

ବାଳ : ମାନେ ଏ ଝିଅ ବି ମୋତେ ଠକିଛି । ଓଡ଼ିଆ ଘରର ଝିଅ ହୋଇ କମ୍ ସାହସ ନୁହେଁ ତ ?

ଭବାନୀ : ପ୍ରକୃତରେ ୟାଙ୍କର ସାହସ ଯୋଗୁଁ ଆଜି ଶୁଭେନ୍ଦୁର ଏ ଝିଅ ସହିତ ଇଣ୍ଟରଭ୍ୟୁ ହୋଇପାରିଲା ।

ଶୁଭେନ୍ଦୁ : ଭବାନୀ, ତୁ ଶେଷରେ ମୋତେ ବୋକା ବନେଇଲୁ ?

ଭବାନୀ : (ହସି) ନା, ତୋ ବୁଝିବା ଭୁଲ୍ । ମୁଁ ତୋତେ ବୋକା ବନେଇନି ବରଂ ତୁ ଯେମିତି ବୋକାଙ୍କ ଭଳିଆ ବ୍ୟବହାର କରୁଥିଲୁ ସେଥିରୁ ଉଦ୍ଧାର କରିବାକୁ ଏ ପଦକ୍ଷେପ ନେବାକୁ ପଡ଼ିଲା ।

ଶୁଭେନ୍ଦୁ : ମାନେ ...?

ଭବାନୀ : ମାନେ ତୁ ତୋର ପ୍ରେମିକା ଦ୍ୱାରା ପ୍ରତାରିତ ହେଲାପରେ ଭାବିନେଲୁ ଜୀବନରେ ସବୁକିଛି ଶେଷ ହୋଇଗଲା । ଉପରେ ନ ହେଲେ ବି ତୋ ଭିତରେ ଭିତରେ ଗୋଟେ ଉଦାଶ ଭାବ ତୋ ଅନ୍ତଃର୍ମନକୁ ଜାଳିପୋଡ଼ି ଛାରଖାର କରିଦେଉଥିଲା । ସେ କଥା ତୋ ଏବେକାର କବିତା ଓ ତୋ ଦୈନନ୍ଦିନ ଜୀବନ ଶୈଳିରୁ ସ୍ପଷ୍ଟ ଭାବରେ ବାରି ହୋଇପଡୁଥିଲା । ଏ କଥା ଆମେ ଏପରିକି ତୋ ଭାଇ ଭାଉଜ ବୋଉ ସମସ୍ତେ ଉପଲବ୍ଧି କରୁଥିଲେ ।

ଶୁଭେନ୍ଦୁ : ତୁ ଏ ସବୁ କ'ଣ କହୁଛୁ ମୁଁ ତ କେବେ ସେମିତି ... ।

ଭବାନୀ : ତୁ ଆମ କଥାକୁ ସ୍ୱୀକାର କର କି ନ କର ଆମେ କିନ୍ତୁ ସମସ୍ତେ ଆତଙ୍କିତ ହୋଇଯାଇଥିଲୁ ଯେ ତୁ ଦିନେ ଡିପ୍ରେସନକୁ ଢ଼ାଲିଯିବୁ । ସତ କହିବାକୁ ଗଲେ ଜୀବନର ଗୋଟେ ମାତ୍ର ବିଫଳତା ତୋ ଜୀବନର ସମସ୍ତ ସରସତାକୁ କାଢ଼ି ନେଇଥିଲା । କିନ୍ତୁ ଜୀବନଟା ସେୟା ନୁହେଁ ଶୁଭେନ୍ଦୁ... ସାହସର ସହିତ ସମସ୍ୟାକୁ ସମ୍ମୁଖୀନ ହେବା ହିଁ ପ୍ରକୃତ ପୌରୁଷତ୍ୱ ।

ବାଳ : ତୁମ ବନ୍ଧୁ ଭବାନୀ ଠିକ୍ କହିଛନ୍ତି ଶୁଭେନ୍ଦୁ । ଜୀବନ ଦୌଡ଼ର ପ୍ରତିଯୋଗିତାରେ ଯିଏ ପ୍ରଥମ ଲକ୍ଷ୍ୟ ସ୍ଥଳରେ ପହଁଚେ ସେ ସଫଳ ହୋଇପାରେ କିନ୍ତୁ ଯିଏ ଅଧା ବାଟରେ ପଡ଼ି ମଧ୍ୟ ପୁଣି ଉଠି ଦୌଡ଼ିବାକୁ ଆରମ୍ଭ କରେ ସେ ନାୟକ ହେବାର ଗୌରବ ପାଇଥାଏ ।

ଭବାନୀ : ତୋ ମୁହଁରୁ ହଜିଯାଇଥିଲା ପ୍ରଥମ ଦିନର ସେ ହସ ଟିକକ ଫେରାଇ ଆଣିବା ପାଇଁ ଆମର ଏଇ ପ୍ରୟାସ । ଏକଥା ଆଜି ସଂଭବ ହୋଇଛି ଏଇ ଝିଅଟିର କେବଳ ସହଯୋଗ ଯୋଗୁଁ । ତା ପାଖରେ ଆମେ ସମସ୍ତେ ଋଣୀ ରହିବା ଆବଶ୍ୟକ ।

ବାଳ : ଆଚ୍ଛା ଏ ଝିଅର ପ୍ରକୃତ ନାଁ କ'ଣ ? ତା ଘର କେଉଁଠି ?
(ପରମା ଆସେ)

ଭବାନୀ : ନାଁ, ଘର ସବୁ ତ ଜାଣିବେ କିନ୍ତୁ ତାର କୀର୍ତ୍ତି ଗୁଡ଼ିକ ପ୍ରଥମେ ଶୁଣନ୍ତୁ । ସେ ହେଉଛି ଏମ୍.ଏ., ଓଡ଼ିଆ ବଉଦପୁର କଲେଜରେ ଓଡ଼ିଆ ଅଧ୍ୟାପିକା ଓ ତା'ର ସବୁଠୁ ବଡ଼ ଗୁଣ ହେଉଛି ସେ ଯାହା ଚାହିଁବ ତାକୁ କାମରେ ପରିଣତ କରିଦେବ ।

ବାଳ ସତେ ?

ଭବାନୀ : ପ୍ରକୃତରେ ଶୁଭେନ୍ଦୁର କବିତା ଇତ୍ୟାଦି ପଢ଼ି ସେ ମନେ ମନେ ତାକୁ ଭଲ ପାଇ ବସିଥିଲା । ନିଧି ମଉସା ୟାଂ' ସହିତ ଶୁଭେନ୍ଦୁର ପ୍ରସ୍ତାବ ପକେଇଲେ । ସମସ୍ତଙ୍କ ମନକୁ ପାଇଲା କିନ୍ତୁ ଶୁଭେନ୍ଦୁ ବାରମ୍ବାର କଥା ଦେଇ ମଧ୍ୟ ୟାଂ'ଙ୍କୁ ଦେଖିବାକୁ ଗଲାନି । ଏମିତି ବର୍ଷେ ଚାଲିଗଲା । ସେଇଥିପାଇଁ ବରକନ୍ୟା ଦେଖିବାକୁ ନ ଯାଇ କନ୍ୟା ବର ଦେଖିବାକୁ ଚାଲିଆସିଲା ।

ନିଧି : ହଁ ଭବାନୀ ବୁଦ୍ଧିରେ ଏ ସବୁ ହେଲା । ଇଏ ଝିଅ ହେଉଛି ଭବାନୀର ଶାଳୀ । ଭବାନୀ ପ୍ରସ୍ତାବରେ ସେ ସାହାସ କରି ଏଠିକି ଆସିବାକୁ ରାଜି ହେଲା । ମୁଁ କହିଲି ବାଃ ଝିଅଟେ ହୋଇ ସାହସ କରି ବାହାରୁଛି । ଯାତ୍ରା ପାଟିର ଓସ୍ତାଦ ହୋଇ ମୁଁ ପଛେଇ ଯିବି ।
(ନିଧି ଗୀତିନାଟ୍ୟର ଏକ ଗୀତଗାଇ ଅଭିନୟ କରି ଦେଖାଇଛି)

ବାଳ : ତଥାପି ଝିଅର ସାହାସକୁ ଧନ୍ୟବାଦ ଦେବାକୁ ହେବ । ଆସିଲୁ ମା' ତୋ ମୁହଁଟାକୁ ମୁଁ ଟିକିଏ ଦେଖିନିଏ । ମୋ ଭଳିଆ ଦୁର୍ଦ୍ଧାନ୍ତ ପୋଲିସ୍ ଅଫିସରକୁ ବି ତୁ ଚିତା କାଟି ଦେଲୁ । ତୋ ନାଁ କଣ ?

ଭବାନୀ : ମୋ ଠୁଁ ଶୁଣନ୍ତୁ । ତା ନାଁ ହେଉଛି ବନ୍ୟା । ଗୁଣ ହେଉଛି ଆଗକୁ ଆଗକୁ ମାଡ଼ି ଚାଲିବା । ସେମିତ କୂଳ, ଅଦୂରର ପାହାଡ, ବୃକ୍ଷଲତା ସମସ୍ତଙ୍କୁ ଛୁଇଁ, ଯାହାକୁ ଇଛା କରିବ ତାକୁ ସାଙ୍ଗରେ ଭସେଇ ନେଇ ଆଗେଇଯିବା ।

ଶୁଭେନ୍ଦୁ : କିନ୍ତୁ ସେ କାଲି କହୁଥିଲେ ତାଙ୍କ ନାଁ ବିନି ।

ଭବାନୀ : ତୁ ଗୋଟେ ବୁଦୁ । ବନ୍ୟା ଆସିବା ପୂର୍ବରୁ କ'ଣ ତା ବିଷୟରେ ଡିଣ୍ଡିମା ପିଟିଥାଆନ୍ତା ? ଇଏ ରାତି ଅଧିଆ ବନ୍ୟା ଆସିଛି- ତୋତେ ଭସାଇ ନେବାକୁ । ବିନିଥିଲା ତାର ଡାକ ନାଁ, ବର୍ତ୍ତମାନ କିନ୍ତୁ ସେ ଭରପୁର ବନ୍ୟା... । ବନ୍ୟା ଦାସ.... । ଖାଲି ସେତିକି ନୁହେଁ ଓଡିଆ ସାହିତ୍ୟରେ ପ୍ରେମକୁ ନେଇ ପି.ଏଚ୍.ଡ଼ି

କରିଚି । ଡକ୍ଟର ବନ୍ୟା ଦାସ ।

ବାଳ : ଠିକ୍ ଅଛି । ମୁଁ ଯାଇ ଘରେ ଖବର ଦେଇଆସେ । ଶୁଭେନ୍ଦୁ ବାବୁଙ୍କ ବୋଉ, ଭବାନୀ, ସମସ୍ତଙ୍କ ପାଇଁ ଖାଇବାର ବନ୍ଦୋବସ୍ତ କରିବାକୁ ପଡ଼ିବ ।

ନିଧି : କିଛି ଦରକାର ନାହିଁ । ଆପଣ ବରଂ ଆମ ସହିତ ସପରିବାର ଜଗନ୍ନାଥ ମନ୍ଦିର ଚାଲନ୍ତୁ । ସେଠି ସମସ୍ତଙ୍କ ପାଇଁ ପ୍ରସାଦ ଖାଇବାର ବନ୍ଦୋବସ୍ତ କରାଯାଇଛି ।

ବାଳ : କେମିତି ?

ନିଧି : ଶୁଭେନ୍ଦୁର ବୋଉ, ଆଉ ଏ ଝିଅର ବାପା ସେଠି ଆସି ଅପେକ୍ଷା କରିଥିବେ । ଆମେ ସମସ୍ତେ ଗଲେ ସେଠ ନିର୍ବନ୍ଧ କାର୍ଯ୍ୟ ଶେଷ ହେବ । ଆସନ୍ତା ତିଥିରେ ପରା ବାହାଘର ସ୍ଥିର ହୋଇଛି ।

ପରମା : ଆଉ ମୁଁ ତା ହେଲେ ରାତି ପାଇଁ କାହିଁକି ରୋଷେଇ କରିବି ? ସେଇଠୁ ରାତି ଖାଇବା ନେଇଆସିଲେ କାମ ଶେଷ । ସେଠି ତ ନିଶ୍ଚୟ ଭୋଜି ଭାତର ବନ୍ଦୋବସ୍ତ ହୋଇଥିବ ।

(ପରମା ଭିତରକୁ ଚାଲିଯାଏ)

ନିଧି : ହଁ ହଁ ଯା ।

ଭବାନୀ : ଆବେ ଶୁଭେନ୍ଦୁ, ଭକୁଆଙ୍କ ଭଳି ଠିଆ ହୋଇଛୁ କ'ଣ ? ଶୀଘ୍ର ବାହାରି ପଡ । ଆଉ ଡକ୍ଟର ବନ୍ୟା ଦେବୀ ଆପଣ ଗତକାଲିଠୁ ଶୁଭେନ୍ଦୁର ସ୍ତ୍ରୀ ପାର୍ଟି କରି ବେଷ୍ଟ ଫିମେଲ୍ ଆକ୍ଟର ତ ହୋଇଗଲେ ଏବେ ଭାବି ସ୍ୱାମୀଙ୍କୁ ଟିକିଏ ବାହାର କରାଇ ଦିଅ । ଶୁଭେନ୍ଦୁ ତ ଗୋଟେ ଧଡଧଡ଼ିଆ ଟ୍ରେନର ବଗି । ତୁମ ଭଳିଆ ଗୋଟେ ପାୱାରଫୁଲ୍ ଇଂଜିନ୍ ନ ଲାଗିଲେ, ଇଏ କଣ ସଂସାରର ରେଳ ଲାଇନରେ ଚାଲିପାରିବ ।

(ସମସ୍ତେ ହସିଉଠନ୍ତି । ଭବାନୀ ଶୁଭେନ୍ଦୁକୁ ନେଇ ବନ୍ୟା ପଛ ପାଖରେ ଠିଆ କରାଏ ଏବଂ ବନ୍ୟା କାନ୍ଧରେ ତା ଦୁଇ ହାତକୁ ଲଗାଇଦିଏ । ତା ପଛକୁ ନିଧି ମଉସା, ବାଳ ବଳରାମ ଓ ଭବାନୀ ଗୋଟିଏ ଧାଡ଼ିରେ ଠିଆ ହୋଇ ଜଣଙ୍କ ପରେ ଜଣେ କାନ୍ଧରେ ହାତ ରଖି ଟ୍ରେନର ପ୍ରତିକ ତିଆରି କରନ୍ତି । ଭବାନୀ ତା ପାଟିରେ ଟ୍ରେନ୍ ହ୍ୱିସିଲ୍ ଦେଲାଭଳି ଶବଦ କରେ । ବାଳ ବଳରାମ ପକେଟରୁ ସବୁଜ ରୁମାଲ୍ ବାହାର କରି ହଲାଇବାକୁ ଲାଗନ୍ତି । ପରମା ଗୋଟିଏ ଟିଫିନ୍ କ୍ୟାରିୟର ଧରି ଆସେ ଓ ତାକୁ ହଲାଇବାକୁ ଲାଗେ ଠିକ୍ ରେଳଷ୍ଟେସନର ସିଗନାଲ୍ ମ୍ୟାନ୍ କାୟିଦାରେ । ଅନ୍ତରାଳରୁ ଟ୍ରେନ୍ ଚାଲିବାର ଶବ୍ଦ ଭାସିଆସେ ।

ସମସ୍ତେ ମଂଚ୍‌ରେ ଗୋଟିଏ ଧାଡ଼ିରେ ବୁଲିବାକୁ ଲାଗନ୍ତି ।

ପରେ ପରେ ବନ୍ୟା... ମୁଁ ବନ୍ୟା ଗୀତଟି ଅନ୍ତରାଳରୁ ଶୁଣାଯାଏ । ଯେଉଁ ଗୀତଟି ଚତୁର୍ଥ ପାଦରେ ବନ୍ୟା କଣ୍ଠରୁ ଶୁଣାଯାଉଥିଲା । ସମସ୍ତ ଶିଳ୍ପୀ ମଂଚ୍‌ରେ ଥାଇ ଦର୍ଶକ ମାନଙ୍କୁ ହାତ ହଲାଇ ବିଦାୟ ଦେବା ଭଙ୍ଗୀରେ ସ୍ଥିର ହୋଇଯାଆନ୍ତି । ଧିରେ ଧିରେ ଅନ୍ଧକାର ହୁଏ ।)

- ସମାପ୍ତ -

# କୁମାର କୁଳ ଚନ୍ଦ୍ରମା

(ମଧୁର ହସର ନାଟକ)

ଦିଲ୍ଲୀଶ୍ୱର ମହାରଣା

(୧୨୯).

# କୁମାର କୁଳ ଚନ୍ଦ୍ରମା

## ଚରିତ୍ର ଲିପି

| | | |
|---|---|---|
| ଦେବେନ୍ଦ୍ର | - | ଶିଳ୍ପପତି |
| ମହି | - | ଗୃହ ସେବକ |
| ମନୋଜ | - | ଯୁବକ |
| ଫନି | - | ଯୁବକ |
| ହରିଶ | - | ଯୁବକ |
| ଶକ୍ତି | - | ଯୁବକ |
| ପ୍ରତାପ | - | ପୋଲିସ୍ ଅଫିସର |
| ମହେଶ | - | ପୋଲିସ୍ ଅଫିସର |
| ଶ୍ରାବଣୀ | - | ଯୁବତୀ |
| ସ୍ମିତା | - | ଯୁବତୀ |

( ଗୋଟିଏ ସେଟ୍ - ସମୟ ଅବଧି -୩୦ମିନିଟ୍ )

# କୁମାର କୁଳ ଚନ୍ଦ୍ରମା

କଳାପରିଷଦ, ଢେଙ୍କାନାଳର ଯେଉଁ ଶିଳ୍ପୀମାନେ ଏ ନାଟକର
ଦୂରଦର୍ଶନପ୍ରସାରଣ ସମୟରେ ଭାଗ ନେଇଥିଲେ ।

## ଚରିତ୍ର ଲିପି

ଦେବେନ୍ଦ୍ର - ଚନ୍ଦ୍ରମଣି ବେହେରା
ମହି - ଦେବେନ୍ଦ୍ର ନାଥ ସିହ୍ନା
ମନୋଜ - କିଶୋର ରାଉତ
ଫନି - ଶତ୍ରୁଘ୍ନ ମାଟି
ହରିଶ - ଇନ୍ଦ୍ରମଣି ବେହେରା
ଶକ୍ତି - ସୁରେଶ ମିଶ୍ର
ପ୍ରତାପ - ସତ୍ୟନାରାୟଣ ପଣ୍ଡା
ମହେଶ - ହିଂମାଶୁ ପଣ୍ଡା (୧)
ଶ୍ରାବଣୀ - ଶର୍ମ୍ମୀଲା ବୋଷ
ସ୍ମିତା - ଜୟଶ୍ରୀ



ସଂଗୀତ - ଅମଜାଦ
ସଂଗୀତ ସହଯୋଗ - ଗୋବର୍ଦ୍ଧନ ବେହେରା
ରଚନା ଓ ନିର୍ଦ୍ଦେଶନା - ଦିଲ୍ଲୀଶ୍ବର ମହାରଣା
ଦୂରଦର୍ଶନ କଟକ ରେକଡିଂ - ତା ୨୬.୦୬.୧୯୮୪(ରାମ ନବମୀ)
ପ୍ରସାରିତ - ତା ୨୯.୦୯.୧୯୮୪
ପ୍ରଯୋଜନା - ଶରତ ମହାନ୍ତି

# କୁମାର କୁଳ ଚନ୍ଦ୍ରମା
## ପ୍ରଥମ ପାଦ

ବିଶିଷ୍ଟ ଶିଳ୍ପପତି ଦେବେନ୍ଦ୍ର ରାୟଚୌଧୁରୀଙ୍କର ଗେଷ୍ଟ ରୁମ୍ । ବ୍ୟବସାୟ ସଂକ୍ରାନ୍ତରେ ବାହାରୁ କେହି ଆସିଲେ ଏଇଠି ରୁହନ୍ତି । ଘରର ସାଜସଜ୍ଜା ଉନ୍ନତ ହେଲେ ମଧ୍ୟ ସବୁ ଅସଜଡା ହୋଇ ରହିଛି । ହାରମୋନିୟମ - ତାବଲା ଅନ୍ୟାନ୍ୟ ସଂଗୀତ ଉପକରଣ, ନାଟକ ବହି ଇତ୍ୟାଦି ଦେଖିଲେ ଜଣାଯାଏ କିଛି ସମୟ ପୂର୍ବରୁ ଏଇଠି କିଛି ଲୋକ ଚଳପ୍ରଚଳ କରିଛନ୍ତି । ବାହାରୁ ଆସିଛନ୍ତି ଦେବେନ୍ଦ୍ର ବାବୁ । ଆଭିଜାତ୍ୟପୂର୍ଣ୍ଣ ଚେହେରା । ବୟସ ୫୦ରୁ ୫୫ଭିତରେ । ଘରର ଅବସ୍ଥା ଦେଖି ତାଙ୍କ ମୁହଁରେ ବିରକ୍ତିର ଭାବ ଫୁଟି ଉଠିଛି । ସେ ତଳେ ପଡିଥିବା ନାଟକ ବହିଟି ଉଠାଇ ଆଣନ୍ତି ।

ଦେବେନ୍ଦ୍ର : (ବହିଦେଖି) ନାଟକ, ଡ୍ରାମା, ଯେତେସବୁ ମିଡିଲ୍ କ୍ଲାସ ସଉକ । (ବହିଭିତରୁ ଗୋଟେ ଫଟୋ ଗ୍ରାଫ ପଡିଯାଇଛି । ତାକୁ ତଳ ଉଠାଇ ନେଇ) ଅନେକ ଅନେକ ଶୁଭେଚ୍ଛା ସହ - ସ୍ମିତା । ପ୍ରେମବି ଆରମ୍ଭ ହେଇ ଗଲାଣି । ଟୋକାଟା ରସାତଳକୁ ଚାଲିଗଲାଣି । ମହି ... (ପାଟିକରି )ମହି.

ମହି : (ପ୍ରବେଶ) ବଡବାବୁ ଆପଣ ?

ଦେବେନ୍ଦ୍ର : ହୁଁ ଆପଣ । ଆପଣଙ୍କୁ ଦେଖି ଆଶ୍ଚର୍ଯ୍ୟ ହେଇଯାଉଛୁ । ଏଇଟା କି ଘର ? କଂପାନିର ଗେଷ୍ଟହାଉସ୍ ନା ଆଖଡା ଘର?

ମହି : ମଲା, ମୋତେ କାହିଁକି ଏତେ ଜେରା କରୁଛନ୍ତି ? ସାନ ବାବୁ ତାଙ୍କ ସାଙ୍ଗ ସାଥି ମାନଙ୍କୁ ଧରି କଣ ଗୋଟେ ଡ୍ରାମା ଶିଖୁଛନ୍ତି । କୋଉ ବନ୍ୟାପାଣ୍ଠିକୁ ସାହାଯ୍ୟ ଦେବେ ଯେ ଏଇଠି ରାମ ସୀତା ଧୋବା ଧୋବଣୀ କେତେକଣ ହେଉଛନ୍ତି । ତାଙ୍କୁ ପଚାରୁ ନାହାଁନ୍ତି ।

ଦେବେନ୍ଦ୍ର : ଜାଣିଛି ଏ ସବୁ ସେ କୁଳାଙ୍ଗାର କୁମାର କୁଳ ଚନ୍ଦ୍ରମାର କାମ । ହେଲେ ତୁ କଣ କରୁଛୁ ?

ମହି : ମୁଁ କଣ କରୁଛି ନକରୁଛି ଆପଣ ଜାଣି ନାହାଁନ୍ତି ? ମା ଛେଉଣ୍ଡ

ଗୋଟିଏ ପୁଅ ବୋଲି ତା ମୁହଁରେ ଆପଣ କିଛି କହିବେନି , ଖାଲି ମୋ ଉପରେ ରାଗିଲେ ମୁଁ କଣ କରିବି ।

ଦେବେନ୍ଦ୍ର : କୁଆଡେ ଗଲା ସେ ଟୋକା - କାହିଁ ଘରେ ତ ଦେଖି ଆସିଲିନି । କୁଆଡେ ଯାଉଛି ?

ମହି : କେ ମୋତେ କଣ କହିକରି ଯାଉଛନ୍ତି ଯେ କହିବି ।

ଦେବେନ୍ଦ୍ର : ହୁଁ । ମୁଁ ବର୍ତ୍ତମାନ ଦୁଇ ଘଣ୍ଟା ଖଣ୍ଡେ ଘରେ ଅଛି । କୁଳଚନ୍ଦ୍ରମା ଆସିଲେ ସାହେବକୁ ମୋତେ ଦେଖାକରିବାକୁ କହିବୁ । କଂପାନି କାମରେ ମୋତେ ବାହାରକୁ ଯିବାକୁ ଅଛି । ମୋତେ ଯେମିତି ସଂଧ୍ୟା ସୁଦ୍ଧା ଦେଖାକରେ । (ଯାଉ ଯାଉ ଫେରି ଆସି) ତାକୁ କହିବୁ ନାଟକ ଫାଟକ ଧନ୍ଦା ଛାଡି ବ୍ୟବସାୟରେ ମନଦେଉ । (ଚାଲିଯାଆନ୍ତି)

ମହି : ହୁଁ ରାଗଟା ଖାଲି ମୋ ଉପରେ । ପିଲାଟାକୁ କାଖେଇ କୋଳେଇ ମଣିଷ କରିଛି ବୋଲି ଏ ଘରର ମାୟା ଛାଡିପାରୁନି । ନହେଲେ ଏ ବୁଢାବୟସରେ କିଏ ଏତେ ଖଟନ୍ତା ...।

*(ମହି ଘର ସୋଫା - ହାରମୋନିୟମ ଇତ୍ୟାଦି ସଜାଡିବାକୁ ଲାଗେ ।)*

ତୁମେ ଖାଲି ବାପ ହେଉଛ- ଆଉ କଣ କରିଛ । ପିଲାଟା କୁଆଡେ ଯାଉଛି କଣ ପିନ୍ଧୁଛି - ପାଠ ପଢୁଛି କି ନାହିଁ କିଛି ବୁଝୁଛ ? ଦିନରାତି ତୁମ ବ୍ୟବସାୟ, ଫାକ୍ଟ୍ରି ପଛରେ ଲାଗିବା ଛଡା ତୁମ ମୁଣ୍ଡରେ ଆଉ କିଛି ଚିନ୍ତା ଅଛି ? ଖାଲି ମୋତେ ମାହାଳିଆ ପାଇଛନ୍ତି । ଆସୁଣୁ ଯାଉଣୁ ମୋ ଉପରେ ଖାଲି ତମ ତମ ତମ ତମ ।

*(ବାହାରୁ ଆସିଛନ୍ତି ଶକ୍ତି ହରିଶ, ଫନି ଓ ଶ୍ରାବଣୀ )*

ଫନି
ଶକ୍ତି : (ନାଟକୀୟ ଢଙ୍ଗରେ ଏକ ସ୍ୱରରେ ) ମହିକାକା ନମସ୍କାର ।
ହରିଶ

ମହି : କଣ ପଂଚୁ ପାଣ୍ଡବ ଆସିଗଲ ?

ଫନି : ସମସ୍ତେ ଆସିଛୁ କାକା- ହେଲେ ଅସଲ ନାୟକ ତୃତୀୟ ପାଣ୍ଡବ ଅର୍ଜୁନ ଓରଫ ମନୋଜ ରାୟ ଚୌଧୁରୀ କାହିଁ ଦେଖାଯାଉନି ।

ମହି : ସାନବାବୁଙ୍କ କଥା କହୁଛ ତ ? ନାହାଁନ୍ତି ।

ଶକ୍ତି : ନାହାଁନ୍ତି ମାନେ କୁଆଡେ ଯାଇଛି । ଗୋଟାଏ ବେଳକୁ ରିହରସାଲ ହେବାକଥା- ଗୋଟେ ପଦର ହେଲାଣି ।

ମହି : ଆସିଯିବେ ଆସିଯିବେ । ତୁମେ ମାନେ ଆଗ ଖୋଳ କରତାଳ ଧରି ଆରମ୍ଭ କରିଦିଅ । ଗାହଣ ଠିକ ସମୟରେ ଆସି ପହଞ୍ଚିଯିବ ।

ଫନି : ମହି କାକା ଠିକ କହିଛନ୍ତି । ପାଲାର ପାଳିଆ ମାନେ ଆଗେ ଜମାଣ ନକଲେ କଣ ଗାୟକ ଶିରୋମଣିଙ୍କର ଆଗମନ ହେବ ?

(ମହି ଭିତରକୁ ଚାଲିଯାଏ)

ହରିଶ : ଠିକ୍ ଅଛି ମନୋଜ ଆସୁ ଆସୁ ଆସ ଆମେ ରିହରସାଲ ଷ୍ଟାଟ୍ କରିଦେବା ।

ଫନି : ଆରେ କାହାକୁ ନେଇ ଆରମ୍ଭ କରିବା । ହିରୋ ନାହିଁ କି ହିରୋଇନ୍ ନାହିଁ । ଦୂତ ରୋଲ କଲାବାଲାର ବି ଦେଖାନାହିଁ । କେମିତି ହେବ ?

ଶକ୍ତି : ଆରେ ପ୍ରଥମ ଦୃଶ୍ୟଟା ସିନା ହେଇପାରିବନି ହେଲେ ଧୋବା ଧୋବଣୀ ରୋଲ ଦିଟା ହେଇପାରିବ ।

ଶ୍ରାବଣୀ : ହଁ ହଁ ଶକ୍ତିଭାଇ , ମୋର ସେ ଗୀତ ଗୁଡାକ ବି ହେଉନି, ତୁମେ ହାରମୋନିୟମ୍ ଧରିଲ ।

ଶକ୍ତି : ହଉ, ଆରମ୍ଭ କର ।

(ହରିଶ ତାବଲା ଓ ଶକ୍ତି ହାରମୋନିୟମ ଧରନ୍ତି)

ଫନି : ରହ ପ୍ରଥମେ Director ଆସନ୍ତୁ ।

ଶ୍ରାବଣୀ : ନାଇଁ ନାଇଁ ଗୀତ ଗୁଡାକ ଆଗ ଗଡେଇ ଦେବା ।

ହରିଶ୍ : ଗୀତିନାଟ୍ୟର ଗୀତ ହେଉଛି ମେନ୍ । ସେଇଟା ଠିକ୍ ସ୍ୱଲେରେ ଗାଇ ନଜାଣିଲେ ସବୁ ଗୋଳମାଳ ହେଇଯିବ ।

ଫନି : (ଗଳା ସଫାକରି ଗାଏ)(ଗୀତ) ଆଲୋ ପୋଡାମୁହିଁ, ଲାଜ ତୋର ନାହିଁ, ଦେ ମୋ କଥାର ଉତ୍ତର..... ।

ଶ୍ରାବଣୀ : ହେଇ ମନୋଜ ଭାଇ ଆସିଲେଣି ।

ମନୋଜ : ଆଉ ସବୁ କୁଆଡେ ଗଲେ । ରାମ ସୀତା, ଲକ୍ଷ୍ମଣ ଦୂତ କାହାନ୍ତି ?

ଫନି : ସେମାନଙ୍କର କ୍ରିକେଟ ମ୍ୟାଚ୍ ଚାଲିଥିଲା । ଖେଳସାରି ଆସିବେ ବୋଲି କହୁଥିଲେ ।

ମନୋଜ : ଠିକ୍ ଅଛି ତୁମେ କ'ଣ କରୁଥିଲ ।

ହରିଣ : ସେମାନେ ଆସିନାହନ୍ତି ତେଣୁ ଧୋବା ଧୋବଣୀ କଳି ଗୀତ ଗୁଡାକ ଟିକିଏ ଗଢେଇ ଦେଉଥିଲୁ ।

ମନୋଜ : କରୁଛ ଯଦି ଠିଆ ହୋଇ ଅଭିନୟସହ କର ।

ଶ୍ରାବଣୀ : ଡାଇଲଗ୍ ବି କହିବୁ ?

ମନୋଜ : ସବୁ - ସବୁ । ପ୍ରବେଶଠାରୁ ପ୍ରସ୍ଥାନ ପର୍ଯ୍ୟନ୍ତ ସବୁ କର । ଯା ରେଡି ହୁଅ । ମ୍ୟୁଜିକ୍ ରେଡି । ନା-ନା-ନା-ନାନା....

(ଗୀତ ନାଟ୍ୟର ସ୍ୱର ବାଜି ଉଠେ । ଫନି ଧୋବାର ଅଭିନୟ କରିବାକୁ ଆରମ୍ଭ କରେ ।)

ଫନି : ଏ ଯୁଗର ମାଇକିନିଆ ଗୁଡାକ ଉପରମୁହିଁ ହେଇଗଲେଣି ହୋ । ଗିରସ୍ତକୁ ତିଳ ପ୍ରମାଣ ଖାତିରି ନକରି ଯାଇ ବାପଘରେ ରାତି କଟେଇ ଏପର୍ଯ୍ୟନ୍ତ ଫେରିବାର ନାଁ ଧରୁନି । ଆଜି ଆଉ ତାକୁ ଯଦି ପାନେ ନଚଖେଇଛି ... ।

ଶ୍ରାବଣୀ : (ଧୋବଣୀ ଅଭିନୟକରି )ମଲା ସକାଳୁ ସକାଳୁ ଏମିତି କାହିଁକି ଗରଗର ହେଉଛ ମ .. ।

ଫନି : ନାଇଁ ନାଇଁ କୁଆଡେ ଯାଇଥିଲୁ ଆଉ କୁଆଡେ ଆସିଲୁ ।

ଶ୍ରାବଣୀ : ଇଏ ମା - ଇଏ କି କଥାମ । ଆଜି କଥା ତୁମର କାଲିକି ପାସୋରା ହେଉଛି । କି ତୁମକୁ କହିକି ପରା ମୋ ବାପଘରକୁ ଯାଇଥିଲି ।

ଫନି : ଯା ଚାଲିଯା .. ଯୋଉଠୁ ଆସିଛୁ ସେଇଠିକି ଚାଲିଯା । ତୋ ସହିତ ମୋର ଆଉ କିଛି ସଂପର୍କ ନାହିଁ ।

(ଗୀତ) ଆଲୋ ପୋଡ଼ାମୁହିଁ ଲାଜ ତୋର ନାହିଁ, ଦେ ମୋ କଥାର ଉତ୍ତର,
କଥା ଥିଲା ତୋର ଯିବୁ ବାପଘର, ଫେରିବୁ ସେଦିନ ସତ୍ୱର,
ହେଲେ କି କଥା କଲୁ .......
ବାପଘରେ କିଆଁ ରାତି କାଟିଲୁ ।
ତୁ କି କଥା କଲୁ ।

ଶ୍ରାବଣୀ : ମଲା ମୋର । ଏଇ କଥାକୁ ନାଁ ନାଆ ପେଲି ଦେଲି କଲିକତାକୁ ।

(ଗୀତ)ଆରେରେ ନିଲଠା ଶୁଉଣୁ ମୋ କଥା, ବାହାଦୂରୀ ଏତେ ଦେଖାନା ।

ବାପଘରେ ଝିଅ ରାତି କଟାଇଲେ ଦୋଷ ତାର ଧରା ଯାଏନା,
ମିଛେ କରୁଛୁ ଡାୟୀ ....
ଦୁନିଆରେ କ'ଣ ଧରମ ନାହିଁ ।
ତୁ କରୁଛୁ ଡାୟୀ ।

ଫନି : ଦୁନିଆରେ ଥାଉ କି ନଥାଉ ମୁଁ ତାକୁ ଖାତିର କରେନି ।
(ଗୀତ) ଧରମ କରମ ନାହିଁଲୋ, କ୍ଷମା ତୋତେ ଆଜି ନାହିଁ
କରିଛୁ ତୁ ଦୋଷ ହୋଇଛି ମୁଁ ରୋଷ
ଏ ଘରେ ତୋ ସ୍ଥାନ ନାହିଁ ଲୋ
ସ୍ଥାନ ତୋର ଆଉ ନାହିଁ ।

ଶ୍ରାବଣୀ : (ଗୀତ)ରାମର ଘରଣୀ ସୀତା ଠାକୁରାଣୀ ଶୁଣିନୁ କି ତା'ର କଥା
ରାବଣତ ନେଲା ଲଙ୍କାରେ ରଖିଲା
ଦୋଷାରୁଣୀ ସେ ନୋହିଲାରେ, ମୋ ପାଇଁ କାହିଁ ଅନ୍ୟଥା ।

ଫନୀ : ନାଇଁ ... କିଛି ଶୁଣାଯିବନି ।
(ଗୀତ)ରାମ ରାଜା ଅଯୋଧ୍ୟାରେ ମୋ ଘରେ ମୁଁ ରାଜା
ଦୋଷାରଣି ହେଲୁ ଆଜି ମୋହରି ଭାରିଯା
ନାହିଁ ନାହିଁ ଠାବଲୋ, ତୁଟିଗଲା ଆଜି ସବୁ ଭାବ ଲୋ ।

ମହି : (ପ୍ରବେଶ) ଥାଉ । ବଡବାବୁ ଆସୁଛନ୍ତି । ସାନବାବୁ ଆପଣଙ୍କ ସାଙ୍ଗରେ ତାଙ୍କର କଥା ଅଛି ।

ଫନି : ମାଇଲାରେ । ମଉସା ଆସୁଛନ୍ତି ମାନେ ମୁଁ ଚାଲିଲି ।
(ଗୀତ)ଚାଲିଲି ଚାଲିଲି ଭାଇ ଚାଲିଲି ମୁଁ ଦୂରେ
ଠିଆ ହୋଇ ନ ପାରିବି ମୌସାଙ୍କ ସାମ୍ନାରେ
ମୋତେ ବାଟ ଛାଡରେ,
ନ ହେଲେ ଭାଙ୍ଗିବ ମୋ ହାଡରେ ।

ମନୋଜ : ଫନି, କଣ ସେମିତି ହଉଛୁ ?

ଫନି : ନା ଭାଇ, ତୋ ବାପାଙ୍କର ସେଇ ଚକା ଚକା ଆଖି ଦିଇଟା ଦେଖିଲେ ମୋ ଛାତିଟା ଖାଲି ଉଠ ପଡ ହୁଏ । ମୁଁ ଚାଲିଲି ।

ଦେବେନ୍ଦ୍ର : (ପ୍ରବେଶ) ଗୁହ ।

ଫନି : (ଗୀତ)ଡାକନା ପଛରୁ ମୋତେ ଡାକନା ପଛରୁ ।

ମଉସା ଆସିଲେ ତୋପା ଛାଡିବ ପିଠିରୁ
ମୋତେ ବାଟ ଛାଡରେ ନ ହେଲେ, ଭାଙ୍ଗିବ ମୋର ହାତରେ ... ।

ଦେବେନ୍ଦ୍ର : ସଟ୍‌ଅପ୍ ।

ଫନି : ୟୁ ସଟାପ୍, ଏଁ ମଉସା । (ଜିଭ କାମୁଡି)ନମସ୍କାର ମଉସା ।

ଦେବେନ୍ଦ୍ର : ବସ ।

ଫନି : (ମନୋଜକୁ ) ବସୁନୁ କାହିଁକି ମନୋଜ । ମଉସା ତୋତେ ପରା ବସିବାକୁ କହୁଛନ୍ତି ।

ଦେବେନ୍ଦ୍ର : ନା ମୁଁ ତୋତେ କହୁଛି ଫନି । ହଁ ତୁମେମାନେ ସମସ୍ତେ ବି ବସ । ତୁମେ ସମସ୍ତେ ଅଛ – ତୁମ ସମସ୍ତଙ୍କ ସାମାନରେ କଥାଟା ପରିଷ୍କାର କରିଦେବା ଭଲ ।

ଶକ୍ତି : କି କଥା ମଉସା ?

ଦେବେନ୍ଦ୍ର : ମୋର ଜଣେ ବନ୍ଧୁଙ୍କର ଝିଅଟିଏ ମୋର ଭାରି ପସନ୍ଦ ହୋଇଛି । ବନ୍ଧୁଙ୍କର ଇଛା ଯେ ମୁଁ ତାଙ୍କ ଝିଅଟିକୁ ଯେମିତି ଗ୍ରହଣ କରେ ।

ଫନି : ଇସ୍ .... ।

ଦେବେନ୍ଦ୍ର : କଣ ହେଲା ?

ଫନି : ନାଇଁ ମୁଁ କଣ କହୁଥିଲି କି ମଉସା, ଆପଣ ପୁଣି ଏ ବୟସରେ ।

ଦେବେନ୍ଦ୍ର : ସଟ୍‌ଅପ । ଡୋଣ୍ଟ ଟକ୍ ରବିସ୍ । ମୋ ବନ୍ଧୁଙ୍କର ଇଛା ଆସନ୍ତା ତିଥିରେ ତାଙ୍କ ଝିଅ ସହିତ ଏଇ କୁମାର କୁଜ ଚନ୍ଦ୍ରମାର ବାହାଘର ହେଉ ।

ହରିଶ : ଖୁବ ବଢିଆ କଥା ମଉସା ।

ଶକ୍ତି : ଜମେଇକରି ପ୍ରସେସନ କରି ବରଯାତ୍ରୀ ରେ ଯିବା ଆଉ ... ।

ଦେବେନ୍ଦିର : ହିଁ ସେ ସବୁ ତ ହେବ । ତେବେ ଆସନ୍ତା ମାସ ପନ୍ଦର ତାରିଖକୁ ଏଇଠି ନିର୍ବନ୍ଧ ହେବ ବୋଲି ସ୍ଥିର ହେଇଛି । କିନ୍ତୁ ମୋର ଇଛା ତା ପୂର୍ବରୁ ତୁମେମାନେ ସମସ୍ତେ ଯାଇ ଝିଅଟାକୁ ଟିକିଏ ଦେଖିଆସ ।

ମନୋଜ : ନା, ମୁଁ ଏଇନା ବାହା ହେଇ ପାରିବିନି ।

ଦେବେନ୍ଦ୍ର : କାହିଁକି ? ନାଟକ ବନ୍ଦ ହେଇଯିବ । ଫୁର୍ତ୍ତି ଫାଜଲାମି ବନ୍ଦ ହୋଇଯିବ । ତୋ କଥା ମୁଁ କିଛି ଶୁଣିବିନି । ମୁଁ ଯେତେବେଳେ କଥା ଦେଇଛି ତୋ ବାହାଘର ସେଠି ନିଶ୍ଚୟ ହେବ । ଜାତକ ବି ମିଳିଯାଇଛି ।

ମନୋଜ : ଏମିତି ହଠାତ୍ ବାହାଘର ଟା ଠିକ୍ କରିବାର କ'ଣ ଦରକାର ଥିଲା ?

ଦେବେନ୍ଦ୍ର : କ'ଣ ଦରକାର ଥିଲା ମୁଁ ଜାଣିଛି । ମୁଁ ଚିଠି ଲେଖି ଦେଉଛି । ଝିଅକୁ ଦେଖିବାର ଯଦି ଇଛା, ତେବେ ସେ ଚିଠି ନେଇ ରାଉରକେଲା ଚାଲିଯା । ମୁଁ ଭାବୁଛି ଝିଅ ତୋର ନିଶ୍ଚୟ ପସନ୍ଦ ହେବ । ହଁ ତୁମେମାନେ ବି ତା ସାଙ୍ଗରେ ଯାଇ ଘେରେ ବୁଲିଆସ । ସେ ଝିଅ ବାହାରେ ରହି ପଢୁଛି । ଏଇ ମାସ ଶେଷ ସପ୍ତାହଟା ସେ ରାଉରକେଲାରେ ରହିବ । ସେତେବେଳେ ଯିବ ଦେଖିଆସିବ ।

ଫନି : ଠିକ୍ ଅଛି ଆପଣ ଚିଠି ଲେଖନ୍ତୁ । ଆମେ ସମସ୍ତେ ଯାଇ ବୁଲି ଆସିବୁ ।

ଦେବେନ୍ଦ୍ର : ହଁ ମ୍ୟାନେଜରଙ୍କୁ କହି ଗୋଟେ ଗାଡିନେଇଯିବ ।

ମନୋଜ : ଆପଣ ଯେତେବେଳେ ସବୁ ସ୍ଥିର କରି ସାରିଛନ୍ତି ଆମେ ଯାଇ ପୁଣି କଣ କରିବୁ ?

ଦେବେନ୍ଦ୍ର : ମୁଁ ଯାହା କରିଛି ସବୁ ଭାବିଚିନ୍ତି କରିଛି । ମୋର ବିଶ୍ୱାସ ଝିଅଟାକୁ ଦେଖିଲେ ନିଶ୍ଚୟ ତୁମେ ମାନେ ସମସ୍ତେ ରାଜି ହେଇଯିବ । ତୁମେମାନେ କେତେବେଳେ ବାହାରିବ ମୋତେ କହିବ । ମୁଁ ଆସୁଛି । (ଦେବେନ୍ଦ୍ର ଚାଲିଯାଆନ୍ତି)

ଶ୍ରାବଣୀ : ତା ହେଲେ ମନୋଜ ଭାଇ ଏଥର ଭୋଜିଟା ମିଳୁଛି ।

ମନୋଜ : ନାଁ, ଏ ସବୁ ଫାର୍ସ ହେଇ ପାରିବନି ।

ଫନି : କାହିଁକି ? ବୟସ ତୋର କିଛି କମ୍ ହେଇନି ?

ମନୋଜ : ସେ ବାଜେ କଥା ଛାଡ । ଶ୍ରାବଣୀ ତୁ ଗଲୁ ମହି କାକାଙ୍କୁ କହି ଚା ଆଣିବୁ ।

(ଶ୍ରାବଣୀ ଚାଲିଯାଏ)

ଶକ୍ତି : କଣ ସ୍ଥିର କରୁଛୁ ।

ହରିଶ : ସ୍ଥିର କରିବ କଣ । ମଉସାଙ୍କ କଥା ତୁମେ ଜାଣିନ । ହିଟଲର ମାର୍କା ଲୋକ । ଯାହା ଚାହିଁବେ ସେୟା ହିଁ ହେବ ।

ଶକ୍ତି : ତା ମାନେ ବାହାଘରଟା ହେବ ହିଁ ହେବ ।

ମନୋଜ : ତୁମେ ମାନେ ସବୁ ଭଲଭାବରେ ଜାଣିଛ ମୁଁ ସ୍ମିତାକୁ ଭଲପାଇଛି ବୋଲି ।

ଶକ୍ତି : ତା ହେଲେ ସେ କଥା ମଉସାଙ୍କୁ କହିଲୁନି ?

ମନୋଜ : କହିଥାନ୍ତି ହେଲେ ତୁମେମାନେ ସୁଯୋଗ ଦେଲ କୋଉଠି ? ବାହାଘର କଥା ପଡୁ ପଡୁ ବରଯାତ୍ରୀରେ ଯିବାକୁ ବାହାରି ପଡିଲ ।

ଫନି : ତେବେ ବର୍ତ୍ତମାନ ଯାଇ ମୁଁ ମଉସାଙ୍କୁ କହିଦେଉଛି ... ।

ମନୋଜ : ଏବେ କିଛି କହିଲେ ସେ କଣ ନା କଣ କାଣ୍ଡ କରି ବସିବେ ।

ହରିଶ : ତାହେଲେ ଏବେ କଣ କରାଯିବ ?

ମନୋଜ : ବାହାଘରଟା ନିର୍ବନ୍ଧ ପୂର୍ବରୁ ଭାଙ୍ଗିବାକୁ ପଡିବ । ଫନି .. କଣ ଗୋଟେ ଉପାୟ ଚିନ୍ତା କଲୁ ।

ଫନି : ଉପାୟ ! ଠିକ୍ ଅଛି ଦେଖିବା । ( ଚିନ୍ତାକରି ) ଆଛା ତୁ ସ୍ମିତାକୁ ସିରିଅସଲି ଭଲ ପାଉଛୁ ତ ?

ମନୋଜ : ହଁ

ଫନି : ତେବେ ଗୋଟେ କାମ କରାଯାଉ । ମଉସାଙ୍କଠୁ ଚିଠି ଆଣି ସେଠିଯାଇ ପହଞ୍ଚିବା । ସେଠିଯାଇ ଏମିତି ସବୁ କାଣ୍ଡ କରିବା ଯେ ତୁ ଝିଅକୁ ପସନ୍ଦ କରିବା ପୂର୍ବରୁ ଝିଅ ତୋତେ ରିଜେକ୍ଟ କରିଦେବ ।

ଶକ୍ତି : ହଁ ବଢ଼ିଆ ଆଇଡିଆ । ଏଥିରେ ମନୋଜର କିଛି ଦୋଷ ରହିବନି । ସବୁ ଝିଅର ପସନ୍ଦ ଅପସନ୍ଦ ଉପରେ ଭାଙ୍ଗିଯିବ ।

ହରିଶ : ହେଲେ କ'ଣ କରାଯିବ କହ ।

ଫନି : ଆମେ ଗଲାବେଳେ ବାଟରୁ କିଛି ଦେଶୀମାଲ ପକେଇ ଦେବା ଆଉ କିଛି ଦେହସାରା ଛିଞ୍ଚିଦେବା । ତାଙ୍କ ଘର ଦରଜା ପାଖରେ ପହଞ୍ଚିବା କ୍ଷଣି ଯେମିତି ଖଣ୍ଡମଣ୍ଡଳ ବାସି ଉଠୁଥିବ । (ମଦୁଆଭଳି ଅଭିନୟ କରି) କହିବା ଶଶୁର ମହାଶୟ - ଆମ କନ୍ୟାଙ୍କୁ ଆଣ ।

ମନୋଜ : ସେ ବାଜେ କଥା ଛାଡ । ଆମେ ଆକ୍ଟିଂ କରୁଛେ ବୋଲି ବାପା ଜାଣିଯିବେ । ପଛରେ ଯୋଉ କଥାକୁ ସେଇ କଥା ।

ଫନି : ତେବେ ?

ମନୋଜ : ଆଉ କଣ କରାଯାଇ ପାରିବ ଠିକ୍ କର ?

ଫନି : ଆଛା ତୁ ସ୍ମିତାକୁ ଭଲ ପାଉଛୁ । ତୁ ତାକୁ ବାହାହେବୁ ସ୍ମିତାର ବାପା ମାଆଙ୍କ ତରଫରୁ କିଛି ଆପତ୍ତି ରହିବନି ତ ?

ମନୋଜ : ସେ କଥା କହିପାରିବିନି । ତେବେ ସ୍ମିତା ଆଉ ମୁଁ ସ୍ଥିର କରିଛୁ ସାରା ଜୀବନ ଜୀବନସାଥୀ ହୋଇ ରହିବୁ ।

ଫନି : ସ୍ମିତାର ବାପା ମାଆଙ୍କୁ କେବେ ଦେଖିଛୁ ?

ମନୋଜ : ନା' ସେମାନେ ଏଇ ସହରରେ ଥିଲେ । ସେତେବେଳେ ମୋର ସ୍ମିତା ସହିତ ପରିଚୟ ନଥିଲା । ତା ବାପା ଏଇଠୁ ବଦଳି ହୋଇ ଗଲାପରେ ସ୍ମିତା ତା ରିଲେଟିଭଙ୍କ ଘରେ ରହି ଏଠି ପଢ଼ିଲା । ମୋର ସେତେବେଳେ ତା ସହିତ Friendship ହେଲା ।

ଶକ୍ତି : ବର୍ତ୍ତମାନ ତା ବାପା କୋଉଠି ?

ମନୋଜ : ସ୍ମିତା କହୁଥିଲା ରାଉରକେଲାରେ ସେ ଅଛନ୍ତି .

ଫନି : ତେବେ ସ୍ମିତା ପାଖରୁ ତା ବାପାଙ୍କ ଠିକଣା ନେଇ ଆସ । ମୁଁ ପ୍ରଥମେ ଯାଇ ତାଙ୍କ ସହିତ କଥାବାର୍ତ୍ତା କରିଆସେ ।

ହରିଶ : ବାଃ ଏଇଟା ଗୋଟେ ସଲିଡ ପ୍ଲାନ ।

ଶକ୍ତି : ସିଧାଯାଇ ପ୍ରସ୍ତାବଟା ପକାଯିବ, ହଁ କଲେ ଭଲକଥା ନ ହେଲେ ନାହିଁ ।

ମନୋଜ : ସେଥିରେ ପ୍ରତିବନ୍ଧକ ଅଛି । ସ୍ମିତାର ଜଣେ ବଡ ଭଉଣୀର ଅଛି । ତାର ବାହାଘର ହେଇନି । ତା' ବାପା ସ୍ମିତା ବାହାଘର ନେଇ ରାଜି ନହୋଇ ପାରନ୍ତି ।

ଶକ୍ତି : ତା ମାନେ ସବୁଆଡେ ବାଟ ବନ୍ଦ ।

ମନୋଜ : ହଁ ସବୁଆଡୁ ।

ଫନି : ଆଇଡିଆ । ମସ୍ତ ଆଇଡିଆ ।

ହରିଶ, ଶକ୍ତି : କଣ ?

ଫନି : ରେଜିଷ୍ଟ୍ରି ମ୍ୟାରେଜ । ଆଜି ଯାଇ ରେଜିଷ୍ଟ୍ରି ଅଫିସରେ କଥାବାର୍ତ୍ତା କରାଯାଉ ।

ମନୋଜ : ସେ କଥା ମୁଁ ଚିନ୍ତା କରିନି ବୋଲି ଭାବୁଛ ?

ଫନି : ଅସୁବିଧା କଣ ?

ମନୋଜ : ସ୍ମିତାକୁ ଅଠର ବର୍ଷ ହେଇନି । ସେ ମାଇନର । ଆଇନ ଦୃଷ୍ଟିରୁ ରେଜିଷ୍ଟ୍ରି ମ୍ୟାରେଜ ହେଇପାରିବନି ।

ଫନି : ହେଇ ପାରିବନି । ତୁଟା ସତରେ ଗୋଟେ କୁମାର କୁଜ ଚନ୍ଦ୍ରମା ।

ଗୋଟେ ଖିରଖିଆ ଛୁଆକୁ ଭଲପାଇ ଆମକୁ ଖାଲି ନାକେ ଦମ କରୁଛୁ ।

ମନୋଜ : ମୁଁ ଆଉ ଗୋଟେ କଥା ଭାବୁଛି । ତେବେ ବିଷୟଟା ଟିକିଏ ବିପଦଜନକ । ମାନେ ଟିକିଏ ଅସତର୍କ ହେଲେ ଧରାପଡିଯିବାର ବହୁତ ସଂଭାବନା । କିନ୍ତୁ ତୁମେ ମାନେ ସମସ୍ତେ ସାହାଯ୍ୟ କଲେ ।

ଫନି : ଆମେ ସମସ୍ତେ ତୋ ପଛରେ ଅଛୁ । ଯାହା କହିବା କଥା କହ ।

ଶକ୍ତି : ମରିବୁ ପଛେ ତୋତେ ସାହାଯ୍ୟ କରିବୁ ।

ମନୋଜ : ବାପାଙ୍କୁ କହି ତାଙ୍କ ଚିଠି ନେଇ ଆମେ ରାଉରକେଲା ବାହାରି ଯିବା। କିନ୍ତୁ ରାଉରକେଲା ନଯାଇ ଆମେ ଯିବା ପୁରୀ। ସ୍ମିତାକୁ ନେଇ ସେଇଠି ବାହାହୋଇ ଫେରିଆସିବା ଏଠିକି ।

ହରିଶ : ବାସ ଗୋଟେ ଗୁଳିରେ ଦିଇଟା ଶିକାର ।

(ସମସ୍ତେ ହସି ଉଠନ୍ତି । କିନ୍ତୁ ଏମାନଙ୍କର ଆଲୋଚନା ମହୀ ଶୁଣି ପାରିଛି । କିଛି ସମୟପରେ ଶ୍ରାବଣୀ ଓ ମହୀ ଚା' ନେଇ ଆସିଛନ୍ତି ।)

ମହୀ : ତା ହେଲେ ରାଉରକେଲା ଯିବାର ଠିକ ହେଇଗଲା । କିଏ କିଏ ଯିବ ।

ଫନି : ଆମେ ସମସ୍ତେ ଯାଇ ବୁଲି ଆସିବୁ ବୋଲି ଭାବିଛୁ ।

ମହୀ : ସେଇଟା ଭଲ ହେବ । ସମସ୍ତେ ମଉଜ କରି ଯିବ ଆଉ ବୁଲି ଆସିବ ।

ଶକ୍ତି : ଗୋଟେ ଛୋଟକାଟିଆ ଭ୍ରମଣ ହେବ ବୋଲି ଜାଣ ।

ମହୀ : କେମିତି ଯିବ ? ଟ୍ରେନେରେ ଯିବ ?

ଫନି : ନାଇଁ - ମହିକାକା- ଟ୍ରେନ ନୁହେଁ ?

(କାର ଷ୍ଟାଟ କଲା ଭଳି ଶବ୍ଦ କରେ ଅନ୍ୟମାନେ କାରର ବିଭିନ୍ନ ସିଟ୍‌ରେ ବସିବାର ଅଭିନୟ କରନ୍ତି)

-ଅନ୍ଧାର -



# ଦ୍ୱିତୀୟ ପାଦ

(ସେଇ ଘର । ଦେବେନ୍ଦ୍ର ବେଶ ଉତ୍ତେଜିତ ଥିଲା ଭଳି ଜଣାପଡୁଛନ୍ତି । ତାଙ୍କ ପାଖରେ ଠିଆ ହେଇଛି ମହୀ ।)

ଦେବେନ୍ଦ୍ର : ସେ କଥା ଭାବିଲା ବେଳକୁ ମୋ ମୁଣ୍ଡକୁ ପିତ ଚଢି ଯାଉଛି । ଘଟଣାଟା ଏତେଦୂର ଆଗେଇ ଗଲାଣି ଅଥଚ ମୋତେ ଟିକେ ଖବର ଦେଇ ପାରିଲୁନି ।

ମହୀ : ଆପଣ ସେ ବ୍ୟବସାୟ କାମରେ ସେଦିନୁ ବାହାରକୁ ଯାଇଛନ୍ତି ଯେ ଆଜି ଫେରୁଛନ୍ତି । ଘରକୁ ଆସିଥିଲେ ସିନା କହିଥାନ୍ତି ।

ଦେବେନ୍ଦ୍ର : କୁଆଡେ ଗଲା ସେ କୁମାର କୁଳ ଚନ୍ଦ୍ରମା । ତାକୁ ବର୍ତ୍ତମାନ ମୋ ପାଖରେ ହାଜର କରାଅ ।

ମହୀ : ଆଜି ସେମାନେ ସମସ୍ତେ ରାଉରକେଲା ଯିବାକୁ କହି କୋଉ ସାଙ୍ଗଘରେ ଯାଇ ଲୁଚିଥିବେ । ଯାହା ଶୁଣିଛି ସେ ଝିଅଟାକୁ ନେଇ ପୁରୀ ଯିବାର ବନ୍ଦୋବସ୍ତ କରୁଥିବେ ।

ଦେବେନ୍ଦ୍ର : ପ୍ରକୃତରେ ଯଦି ସେ ଟୋକା ପୁରୀ ନେଇ ସେ ଟୋକିକୁ ବାହାହେଇ ପଡେ ତାହାଲେ ସେଟାକୁ ତେଜ୍ୟପୁତ୍ର ଯଦି ନକରିଛି ମୋତେ କହିବୁ ।

ମହୀ : ଗୋଟେ ବୋଲି ପୁଅ । ସେ ରାଗ ରୁଷା ଛାଡି ଏବେ କଣ କରାଯାଇ ପାରିବ ଚିନ୍ତା କରନ୍ତୁ ।

ଦେବେନ୍ଦ୍ର : ଚିନ୍ତା କ'ଣ କରିବି, ନାହିଁ ସେ କୁମାର କୁଳଚନ୍ଦ୍ରମା କଣ ବୋଲି ଭାବିଛି । ତାକୁ ମୁଁ ହାଜତରେ ପୁରାଇବାର ବ୍ୟବସ୍ଥା କରିବି ।

ମହୀ : ହାଜତରେ ଭର୍ତ୍ତି କଲେ କ'ଣ କଥାଟା ସୁନ୍ଦର ହେବ । ଲୋକେ ଛି ଛାକର କରିବେ ନି ?

ଦେବେନ୍ଦ୍ର : ଛି ଛାକର କରିବେ ଯଦି କରନ୍ତୁ । I don't care। କୋଉଠୁ ନା କୋଉଠୁ ଗୋଟେ ଝିଅକୁ ଏଇ ଘରକୁ ବୋହୁ କରି ଆଣିବ ଆଉ ଦେବେନ୍ଦ୍ର ନାଥ ରାୟ ଚୌଧୁରୀ ତାକୁ ଫୁଲ ଚନ୍ଦନ ଦେଇ ପାଛୋଟି ଆଣିବ । Never, ଯଦି ଦରକାର ପଡେ ସେ ଦିଟା କୁ ହାତରେ ହାତକଡି ଅଣ୍ଟାରେ ଦଉଡି ଦେଇ ବିଚ ରାସ୍ତାରେ ଚଲେଇ ଚଲେଇ ନିଆଯିବ ।

ମହୀ : ରାଗ ରୁଷାରେ ଏ ସବୁ କଲେ ରାୟ ଚୌଧୁରୀ ବଂଶର ମାନ ମର୍ଯ୍ୟଦା ଦାଣ୍ଡରେ ପଡିବ । ମୋ ସାନ କୁହା ମାନି ସେ ଝିଅକୁ ଭଲ ପାଉଛି ତାକୁ ଦେଖି ତା ସହିତ ବାହା ଦେଇ ଦେବା ଭଲ ।

ଦେବେନ୍ଦ୍ର : Shut up । ସେ କଥା ମୁଁ ବଂଚିଥାଉ ଥାଉ କେବେ ହେବନି । ତୁମେ ତାକୁ ପ୍ରଶୟ ଦେଇ ଦେଇ ତା ମୁହଁ ବଢେଇ ଦେଇଛ । ଆଉ ବରଦାସ୍ତ କରି ହେବନି । ମୁଁ ଯାହା ବ୍ୟବସ୍ଥା କରିବା କଥା ବର୍ତ୍ତମାନ ଯାଇ କରୁଛି ।

(ଦେବେନ୍ଦ୍ର ଚାଲିଯାଆନ୍ତି । ମହୀ ଦେବେନ୍ଦ୍ରଙ୍କ ଉପରେ ଗର ଗର ହୋଇ ଗପିଚାଲେ ।)

ମହି : (ଘର ସଜାଡୁ ସଜାଡୁ) ମୁଁ ବଂଚି ଥାଉ ଥାଉ କେବେ ହେବନି । ନ ହଉ ... । ମୋର କଣ ଗରଜ ପଡିଛି । ନାଇଁ ନାଇଁ କହୁଛନ୍ତି ମୁଁ ତାକୁ ପ୍ରଶୟ ଦେଇ ତା ମୁହଁ ବଢେଇ ଦେଇଛି । ତୁମେ ତାର ଜନ୍ମକଲା ବାପା ତା ମୁହଁରେ ଦିନେ ପଦେ ହେଲେ କହିବନି । ଖାଲି ମିଛଟାରେ ମୋ ଉପରେ ରାଗ... । କଣ ନା ତେଜ୍ୟ ପୁତ୍ର କରିବି । କରୁନ .. କର । ଯେତେ ସବୁ କୋଠାବାଡି ଧନସଂପତ୍ତି ଭୂତ ଖାଇବେ। (କାନ୍ଦ କାନ୍ଦ ହେଇ) କଣ ନା ହାତରେ ହାତକଡି ଅଣ୍ଟାରେ ଦଉଡି ଦେଇ ରାସ୍ତାରେ ଚଲେଇ ଚଲେଇ ନେବେ । ଇଜତଟା ମୋର ଯିବ ନା ତୁମର । ପିଲାଟି ଦିନରୁ କାଖେଇ କୋଳେଇ ମଣିଷ କରିଛି ବୋଲି ମା' ଛେଉଣ୍ଡ ପିଲାଟି ଉପରେ ମାୟା ଛାଡି ପାରୁନି । ନହେଲେ ତୁମେ କିଏ ମୁଁ କିଏ ?

*(ଆଖିରୁ ଲୁହ ପୋଛେ । ମଂଚ ଅନ୍ଧାର ହୋଇଛି ।)*



# ତୃତୀୟ ପାଦ

*(ସେଇ ଘର । ଦେବେନ୍ଦ୍ର ଫୋନ୍‌ରେ କଥା ହେଉଛନ୍ତି ।)*

ଦେବେନ୍ଦ୍ର : ହଁ ହଁ । ମୁଁ ତ ସେୟା ଅନୁମାନ କରୁଛି । ଦୟାକରି ଚେଷ୍ଟା ଚଳାନ୍ତୁ । ମୁଁ ଭାବୁଛି ପାଇଯିବେ । ହଁ ହଁ ମୁଁ କୁଆଡେ ଯାଉନି । ଯାହା ଯାହା ଖବର ମିଳିବ ମୋତେ ମୋ ମୋବାଇଲ ରେ ଜଣାଉଥିବେ । ମୋ ନମ୍ବର ହେଲା ୯୪୩୭୦୨୨୩୩୪.ରଖୁଛି । *(ଫୋନ୍ ରଖି ଦେଲେ । ପରେ ପରେ ପ୍ରବେଶ କଲେ ପ୍ରତାପ ସେ ପୋଲିସ D.S.P ଡ୍ରେସ୍‌ରେ)*
ତୁ ଆସିଲୁ ପ୍ରତାପ । କ'ଣ ବ୍ୟବସ୍ଥା ହେଲା ।

ପ୍ରତାପ : ସବୁ ବ୍ୟବସ୍ଥା କରି ଦେଇଛି । ସହରରୁ ବାହାରି ଯିବାକୁ ସବୁ ରାସ୍ତା, ବସ ଷ୍ଟାଣ୍ଡ, ରେଳ ଷ୍ଟେସନ, ସବୁଠି ପୋଲିସ ସାଦା ଡ୍ରେସରେ ରହିଛନ୍ତି । ଯେତେ ଟାକ୍ସି କାର ଇତ୍ୟାଦି ଯିବ ସବୁ ଗୋଟି ଗୋଟି କରି ଚେକ୍ କରାଯିବ ବୋଲି Mr. Khan ଙ୍କୁ Instruction ଦେଇ ଦେଇଛନ୍ତି । ଆଉ ନିଜେ ଖାଁ ସାହେବ Head Qr. ରେ ରହି ମନିଟରିଂ କରିବେ ବୋଲି ପ୍ରତିଶ୍ରୁତି ଦେଇଛନ୍ତି ।

ଦେବେନ୍ଦ୍ର : ଠିକ ଯେ, Mr. Khan ଜଣକ କିଏ ?

ପ୍ରତାପ : ମୋ ବହୁ ଦିନର ସାଙ୍ଗ । ଆମେ ଦୁଇ ଜଣ ଏକ ସଙ୍ଗରେ ପୋଲିସ ଡିପାର୍ଟମେଣ୍ଟରେ join କରିଥିଲୁ । ବର୍ତ୍ତମାନ ସେ ଏଇଠି D.S.P. ।

ଦେବେନ୍ଦ୍ର : ସେ ଟୋକା ଗୁଡାକ ଧରା ପଡିବେ ତ ପ୍ରତାପ । ନହେଲେ ମୋ ଇଜ୍ଜତ ବାଟରେ ପଡି ଘାଟରେ ଆଲୋଚନା ହେବ ।

ପ୍ରତାପ : ଦେଖ ତୁ ଯେତେବେଳେ ମୋତେ ଡକେଇ ଭାର ଦେଇ ଦେଇଛୁ ମୁଁ ଭାବୁଛି ଆମେ Sucessful ହେବା । ମୁଁ ବର୍ତ୍ତମାନ ସିନା ରାଉରକେଲାରେ ପୋଷ୍ଟିଂ ହେଇଛି ହେଲେ ୩ବର୍ଷ ପୂର୍ବରୁ ତ ଏଇଠି ଥିଲି । ମୋର ବିଶ୍ୱାସ ମୋ ମୁହଁକୁ ଚାହିଁ ପୋଲିସ ତା କାମରେ କୌଣସି ଡିଲା ଦେବନି ।

ଦେବେନ୍ଦ୍ର : ବର୍ତ୍ତମାନ୍ ତା ହେଲେ କଣ କରିବା - ଆମେ ପୋଲିସ ଷ୍ଟେସନ୍ ଯାଇ ସେଠି ଅପେକ୍ଷା କରିବା ।

ପ୍ରତାପ : ନା ଆମର କୁଆଡେ ଯିବା ଦରକାର ନାହିଁ । ମୁଁ ସେମାନଙ୍କୁ କହିଛି ଯାହା ଯାହା Information ପାଇବେ ଏଇ ଟେଲିଫୋନକୁ ଜଣାଇବେ । ନଚେତ୍ ତୋ ମୋବାଇଲକୁ ଜଣାଇବେ ।

ଦେବେନ୍ଦ୍ର : ଏଇଠି କି ଜଣାଇବେ ବୋଲି କହି ଦେଇଛୁ ତ ରକ୍ଷା ହେଇଛି ।

ପ୍ରତାପ : ଆଛା, ହଠାତ୍ ସେମାନେ ଏମିତି ଗୋଟେ ନିଷ୍ପତ୍ତି ନେଲେ କାହିଁକି ?

ଦେବେନ୍ଦ୍ର : ସେ କୁମାର କୁଳ ଚନ୍ଦ୍ରମା ଟୋକାଟାକୁ ସେ ଝିଅଟା କି କିମିଆଁ କରିଛି କେଜାଣି ମୋ ପ୍ଲାନ ସବୁ ଗୋଳମାଳ ହେଇଯାଇଛି ।

ପ୍ରତାପ : ବୁଝିଲୁ ବୁଢ଼ାମାନଙ୍କର ବୁଦ୍ଧିକୁ ଆଜିକାଲି ଟୋକାଗୁଡା ବଳି ଯାଉଛନ୍ତି । (ଫୋନ୍ ରିଂ ହୁଏ । ଦେବେନ୍ଦ୍ର ଧରି କଥା ହୁଅନ୍ତି ।)

ଦେବେନ୍ଦ୍ର : (ଫୋନ୍) ହାଲୋ... ହଁ ଦେବେନ୍ଦ୍ର ରାୟ ଚୌଧୁରୀ କହୁଛି । କିଏ ? ପ୍ରତାପ ଦାସ D.S.P. ଅଛନ୍ତି । ଦେଉଛି । (ପ୍ରତାପକୁ ଫୋନ ଦେଇଛି)

ପ୍ରତାପ : (ଫୋନ୍‌ରେ) ହାଲୋ .. କିଏ Inspector ମହେଶ । କଣ ହେଲା ? ଧରା ପଡିଯାଇଛନ୍ତି । ସାବାସ । କେଉଁଠି କି, ଥାନାକୁ ? ନା ନା ମୁଁ ତୁମ D.S.P. ଙ୍କ ସହିତ କଥା ହେଉଛି ସଧା ସେମାନଙ୍କୁ ଏଠିକି ନେଇ ଆସ । ଏଇଟା ଗୋଟେ ପ୍ରେଷ୍ଟିଜ୍ ଇସୁ - ଉଇଥ ଅଲ କେୟାର । (ଫୋନ ରଖି ଦିଅନ୍ତି )

ଦେବେନ୍ଦ୍ର : କ'ଣ କିର୍ତ୍ତି ଚନ୍ଦ୍ର ମାନଙ୍କୁ ପୋଲିସ ଧରି ନେଇଛି ।

ପ୍ରତାପ : ହଁ ସମସ୍ତେ ଧରା ପଡିଯାଇଛନ୍ତି । ପୋଲିସ Inspector ମହେଶ ତାଙ୍କୁ ଏଇଠିକି ନେଇ ଆସୁଛନ୍ତି ।

ଦେବେନ୍ଦ୍ର : ଭଲ ହେଲା । ଏଗୁଡାକୁ ଆଜି ଯଦି ନାକେ ଦମ ନକରିଛି .. ।

ପ୍ରତାପ : କେମିତି ଜଣାପଡିଲେ ଜାଣିଛୁ ।

ଦେବେନ୍ଦ୍ର : କେମିତି ?

ପ୍ରତାପ : ଏଗୁଡାକ ସବୁ ଲୁଙ୍ଗି ଫତେଇ ପିନ୍ଧି ପଠାଣ ବେଶ ହେଇ ଯାଇଥିଲେ । ଝିଅଟାକୁ ବୁରୁଖା ପିନ୍ଧେଇ ଗୋଟେ ରିକ୍ସାରେ ଶାଢ଼ୀ ଟାଣି ନେଉଥିଲେ । ସାମନାରେ ପୋଲିସ ଗାଡି ତନଖି କରୁଥିବା ଦେଖି ଖସିବାକୁ ଚେଷ୍ଟା କରୁଥିଲେ । ବାସ୍ .. ହେଇ ଆସିଗଲେଣି ନା କ'ଣ । ମୁଁ ଭିତରକୁ

ଯାଉଛି । (ପ୍ରତାପ ଭିତରକୁ ଯାଏ)

(ବାହାରେ ପୋଲିସ ଜିପ୍ ରହିବାର ଶବ୍ଦ । ପରେ ପରେ ପ୍ରବେଶ କରନ୍ତି , ମନୋଜ, ଫନି, ହରିଶ, ଶକ୍ତି ଓ ସ୍ମିତା... ।) ସ୍ମିତା ପିନ୍ଧିଛି ବୁର୍ଖା, ଅନ୍ୟମାନେ ଲୁଙ୍ଗି ପଞ୍ଜାବୀ ଓ ଟୋପି, ତାଙ୍କ ସାଙ୍ଗରେ ଆସିଛନ୍ତି ମହେଶ ।)

ମହେଶ : ଆପଣମାନଙ୍କୁ କହିବା ମୁତାବକ ଏଇ ମାନଙ୍କୁ ଏଇଠି ଛାଡି ଦେଉଛି । ମୋତେ ଏମାନେ ଯାହା ନାକେ ଦମ କଲେଣି ।

ଦେବେନ୍ଦ୍ର : ମାନେ ?

ମହେଶ : କୌଣସି କାର ବା ଟାକ୍ସିରେ ଗଲେ ଧରାପିଡଯିବେ ସେଇଥି ପାଇଁ ସମସ୍ତେ ମୁସଲିମ ବେଶ ହୋଇ ଦିଇଟା ରିକ୍ସାରେ ଯାଉଥିଲେ । ଟାଉନଟା ପାର ହେଇଗଲା ପରେ କୌଣସି ଗାଡି କରି ପୁରୀ ଚାଲିଯାଇଥାନ୍ତେ ।

ଦେବେନ୍ଦ୍ର : ଯାହାହେଉ ଆପଣଙ୍କ ବୁଦ୍ଧି ପାଇଁ ମୋ ଇଜ୍ଜତ ବଂଚିଗଲା ମହେଶବାବୁ । ଆପଣଙ୍କୁ ବହୁତ ବହୁତ ଧନ୍ୟବାଦ ।

ମହେଶ : ଆପଣ ତ ଆମ D.S.P. ସାହେବଙ୍କୁ କହିଛନ୍ତି ମୁଁ ଏମାନଙ୍କୁ ଏଇଠି ଛାଡି ଦେଇ ଯାଉଛି । ଯଦି କିଛି ଗୋଳମାଳ କରିବେ ମୋତେ ଖବର ଦେଲେ ଯାହା ବ୍ୟବସ୍ଥା କରିବା କଥା କରିବି ।

ଦେବେନ୍ଦ୍ର : ଠିକ୍ ଅଛି ଏମାନେ ଯଦି କିଛି ଫାଜଲାମି କରନ୍ତି ତାହାଲେ ମୁଁ ଆପଣଙ୍କର ସାହାଯ୍ୟ ନେବି ।

(ମହେଶ ଚାଲିଯାଆନ୍ତି । ଦେବେନ୍ଦ୍ର ପ୍ରତ୍ୟେକ ମୁହଁକୁ ବିଦ୍ରୁପ କରି ଚାହନ୍ତି ।)

ହାଃ ହାଃ ହାଃ, ହେଃ ହେଃ ହେଃ, ହୁଃ ହୁଃ ହୁଃ ।

କଣ କିର୍ତ୍ତିଚନ୍ଦ୍ରମାନେ ଭାବିଥିଲ ତୁମେ ମାନେ ଖସିଯିବ । କ'ଣ ହେଲା ? ଏଁ ବାପା ମାଆଙ୍କ ଆଖିରେ ଧୂଳୀ ଦେଇ ପ୍ରେମ କରିବ ନାଇ । କ'ଣ କୁଜ ଚନ୍ଦ୍ରମା - ବର୍ତ୍ତମାନ କହ ମୋ କଥାରେ ରାଜି ହୋଇ ଯୋଉଠି ଠିକ୍ କରିଛି ବାହା ହେବୁ ନା ... ?

ମନୋଜ : କେବେ ନୁହେଁ । ଆପଣଙ୍କ କଥାରେ ରାଜି ହୋଇ ମୁଁ ଚାରି ଚାରିଟା ଜୀବନ ନଷ୍ଟ କରିପାରିବିନି ।

ଦେବେନ୍ଦ୍ର : ମାନେ ।

ମନୋଜ : ଆପଣଙ୍କ କଥାରେ ରାଜି ହୋଇ ରାଉରକେଲାରେ ବାହାହେଲେ ଏଇ ଝିଅର ଜୀବନ ନଷ୍ଟ ହେବ । ଆଉ ଯୋଉ ଝିଅକୁ ମୁଁ ବାହାହେବି ତା' ଜୀବନ ନଷ୍ଟ ହେବ । ଏ ଝିଅ ଅନ୍ୟ କାହାକୁ ବାହାହେଲେ ସେ ପୁଅର ଜୀବନ ନଷ୍ଟ ହେବ ଆଉ ମୋ ଜୀବନଟା ନଷ୍ଟ ହେବ ।

ଦେବେନ୍ଦ୍ର : ଏଇଟା ତୋର ଶେଷ ନିଷ୍ପତ୍ତି ।

ମନୋଜ : ହଁ ଶେଷ ନିଷ୍ପତ୍ତି ।

ଦେବେନ୍ଦ୍ର : ମୁଁ ଯଦି ଏ ଝିଅକୁ ନେଇ ତା ବାପା ପାଖରେ ହାଣ୍ଡ ଓଭର କରେ ।

ସ୍ମିତା : କିଛି ଲାଭ ହେବନି । ଆପଣ ମୋ ଶରୀରଟାକୁ ସିନା ହ୍ୟାଣ୍ଡ ଓଭର କରିବେ ହେଲେ ମନଟା ସବୁଦିନ ପାଇଁ ମନୋଜ ପାଖରେ ରହିଯିବ ।

ଦେବେନ୍ଦ୍ର : ବାଃ ଲୈଲା ମଜନୁ ପ୍ରେମ । ଠିକ୍ ଅଛି ତୁମେ ମାନେ ଯଦି ଏତେ ବାଟ ଆଗେଇ ଯାଇଛ, ବର୍ତ୍ତମାନ ପୋଲିସ ହାଜତକୁ ଯିବାକୁ ବାହାରି ପଡ ।

ମନୋଜ : ଠିକ୍ ଅଛି ଆମେ ସେଥିପାଇଁ ପ୍ରସ୍ତୁତ ଅଛୁ ।

ସ୍ମିତା : ଭଲ ପାଇବାର ସମର୍ପଣ ପାଖରେ ଜେଲ ହାଜତ କଥା ଯଦି ଦରକାର ପଡେ ଆମେ ଜୀବନ ଦେବାକୁ ପ୍ରସ୍ତୁତ ଅଛୁ ।

ଦେବେନ୍ଦ୍ର : ଏତେ ସବୁ ବାହାଦୂରି କଥା ଗୋଟେ ଦିଇଟା ପୋଲିସ ଗୋଇଠା ଖାଇଲାପରେ ସିଧା ହେଇଯିବ ଯେ ... ।

ମନୋଜ : ତୁମେ ଆସ ସ୍ମିତା - ମୋ ସଂଗରେ ଆସ । ଦେଖିବା କିଏ କଣ କରୁଛି ।

ସ୍ମିତା : ଚାଲ ... ।

(ମନୋଜ ଓ ସ୍ମିତା ଆଗେଇ ଯାଆନ୍ତି ହଠାତ୍ ବିପରୀତ ଦିଗରୁ ପ୍ରତାପର ପାଟି ଶୁଣାଯାଏ)

ପ୍ରତାପ : ସେଇଠି ଠିଆ ହୋଇ ରୁହ ନଚେତ ଗୁଳି ଚଳେଇବାକୁ ବାଧ୍ୟ ହେବି ।
(ସ୍ମିତା ଓ ମନୋଜ ଅଟକି ଯାଆନ୍ତି)
ଏବାଉଟ ଟର୍ଣ୍ଣ - ସିଆଡେ କୁଆଡେ ଚାହିଁଛି । ଏ ପଟକୁ ଚାହଁ ।
(ସ୍ମିତା ପଛକୁ ଫେରିଚାହିଁବାକୁ ମନୋଜକୁ ଇସାର କରେ)

ମନୋଜ : ତୁମେ କାହା କଥା ନଶୁଣି ମୋ ସହିତ ଆସ ସ୍ମିତା । Start

ପ୍ରତାପ : (ଚିତ୍କାର କରି) Stop it. I say stop .

(ସ୍ମିତା ଫେରି ଚାହେଁ ଦେଖେ ତାର ବାପା)

ସ୍ମିତା : ବାପା ଆପଣ ? ଆପଣ ଏଠି କେମିତି ?

ପ୍ରତାପ : ଏଠି କେମିତି ? ଦି ଜଣ ଯାକ ମିଶି ଏ ସହରକୁ ଏମିତି ଉଛନ କଲଯେ ଆମେ ଦି ଜଣ ଯାକ ବୁଢ଼ା ଗାଡିରେ ଶୋଇ ପାରିଲୁନି । ଆଜି ତୁମମାନଙ୍କ ନିର୍ବନ୍ଧ ।

ସ୍ମିତା : ମାନେ ।

ଦେବେନ୍ଦ୍ର : ମାନେ ତୁମମାନଙ୍କର ବନ୍ଧୁତ୍ୱ କଥା ଜାଣି ଆମେ ଦୁଇ ଜଣ ଠିକ୍ କରିଥିଲୁ ଯେ ତୁମମାନଙ୍କର ବାହାଘର ହେବ । ତୁମେମାନେ କେହି ଜାଣିନ ଯେ ପ୍ରତାପ ଆଉ ମୁଁ ପିଲାଦିନର ବନ୍ଧୁ ।

ମନୋଜ : ତାହାଲେ ମୋତେ ସେ କଥା ନଜଣାଇ ଝିଅ ଦେଖାଇବାକୁ ରାଉରକେଲା ପଠାଉଥିଲେ କାହିଁକି ?

ଦେବେନ୍ଦ୍ର : ପଠାଉଥିଲି ତୋତେ ଗୋଟେ ସରପ୍ରାଇଜ ଦେବାକୁ । ଭାବିଥିଲି ତୁ ମୋ ପାଖରୁ ଚିଠିଟା ନେଲାବେଳକୁ ସବୁ ଜାଣିପାରିବୁ । କିନ୍ତୁ ତୁମେ ଦିଜଣ ପରସ୍ପରକୁ ଭଲ ପାଇବାରେ ଏତେ ଅନ୍ଧ ହୋଇ ଯାଇଥିଲ ଯେ ମୋ ଚିଠିଟା ଖୋଲି ଦେଖିବାକୁ ଗଲନି ।

ପ୍ରତାପ : ଅଥଚ ଆମ ବୁଢ଼ା ଦିଜଣଙ୍କୁ ହଇରାଣ କରିବାର ଯୋଜନା ବନେଇ ଏ ସବୁ କିର୍ତ୍ତି କଲ । ଆଜି ତୁମମାନଙ୍କର ନିର୍ବନ୍ଧ କରିବାକୁ ଆମେ ବାଧ୍ୟ ହେଲୁ ।

ଫନି : ତା ହେଲେ ହେଇଗଲା ... କୋଉଠି ଖିଆପିଆର ବନ୍ଦୋବସ୍ତ ହୋଇଛି ।

ଦେବେନ୍ଦ୍ର : ତୁମେ ମାନେ ସବୁ ମୋ ସାଙ୍ଗରେ ସେଇଠିକି ଆସ ।

*(ସମସ୍ତେ ସେଇଆଡକୁ ଯିବାକୁ ବାହାରିଲେ)*

ପ୍ରତାପ : ମନୋଜ - ସ୍ମିତା

ସ୍ମିତା : ବାପା ।

ପ୍ରତାପ : ଆରେ ତୁମେମାନେ ଏତେବଡ ଖୁସି ଖବର ପାଇଲ ସେମିତି କ'ଣ ଚାଲିଯିବ ।

| | | |
|---|---|---|
| ମନୋଜ | : | ମାନେ । |
| ପ୍ରତାପ | : | ଆଟେନସନ୍ । ବୋଥ ଅଫ ଇଉ ... ମେକ୍ ପ୍ରଣାମ- ଅଣ୍ଡର ଦୁଇ ବୁଢ଼ାଙ୍କ ଚରଣ । |
| | | (ସମସ୍ତେ ହସି ଉଠନ୍ତି । ମନୋଜ ଓ ସ୍ମିତା ଦେବେନ୍ଦ୍ର ଓ ପ୍ରତାପଙ୍କ ପାଦ ଛୁଇଁ ପ୍ରଣାମ କରନ୍ତି । ଅନ୍ଧାର ହୁଏ ।) |

*- ସମାପ୍ତ -*

# ଭାଇ ଭାଇ

## ଚରିତ୍ର ଲିପି

ବାନା,

ଯୁବକ,

ବନମାଳୀ,

କାଳନ୍ଦୀ,

ସପନା,

ହରି,

ଅନ୍ଧଲୋକ,

ଝୁମ୍ପା(ଶିଶୁ),

ଯୁବତୀ

( ଗୋଟିଏ ସେଟ୍ - ସମୟ ଅବଧି ଅଧଘଣ୍ଟା)

ଢେଙ୍କାନାଳ, ସାଂସ୍କୃତିକ ମହୋତ୍ସବ ୨୦୦୫ ଅବସରରେ ନାଟିକା 'ଭାଇ ଭାଇ'ରେ ଭାଗ ନେଇଥିବା କଳାପରିଷଦ, ଢେଙ୍କାନାଳର ଶିଳ୍ପୀଗଣ ।

| ଚରିତ୍ର | | ଶିଳ୍ପୀଙ୍କ ନାମ |
|---|---|---|
| ବାନା | : | ପ୍ରବୀର ମହାନ୍ତି |
| ଯୁବକ | : | ପ୍ରଶାନ୍ତ କୁମାର ସାହୁ |
| ବନମାଳୀ | : | ହରମୋହନ ପଟ୍ଟନାୟକ |
| କାଳନ୍ଦୀ | : | ବିନୋଦ ମହାନ୍ତି |
| ସପନା | : | ସୁରେଶ ମହାନ୍ତି |
| ହରି | : | ମନୋରଞ୍ଜନ ସିଂ |
| ଅନ୍ଧଲୋକ | : | କିଶୋର ରାଉତ |
| ଯୁବତୀ | : | ବବିତାରାଣୀ ସାହୁ |
| ଝୁମ୍ପା | : | ଋତୁପର୍ଣ୍ଣ ରାଉତ |

ପ୍ରଥମ ପରିବେଷଣ: ତା ୦୫.୦୪.୨୦୦୫

ସ୍ଥାନ : ଗଜଲକ୍ଷ୍ମୀ କଳାମଣ୍ଡପ, ଢେଙ୍କାନାଳ

ମଞ୍ଚ ପରିଚାଳନା: ଜୟନ୍ତ ବର୍ମା/ ପୂର୍ଣ୍ଣଦେବତା

ନିର୍ଦ୍ଦେଶନା - ଶ୍ରୀ ଦିଲ୍ଲୀଶ୍ୱର ମହାରଣା

# ଭାଇ ଭାଇ

ଗୋଟିଏ ପାର୍କ । ସମୟ ସଂଧ୍ୟା । ପାର୍କର ଗୋଟିଏ ପାଖରେ ଗୋଟିଏ ସିମେଣ୍ଟ ତିଆରି ପିଣ୍ଡି (Platform) । ଏବେ ସେଇ ପିଣ୍ଡି ଉପରେ କେବେ ଗୋଟିଏ ଷ୍ଟାଚ୍ୟୁ ଥିଲା । କୌଣସି କାରଣରୁ ସେ ଷ୍ଟାଚ୍ୟୁଟି ଭାଙ୍ଗିଯାଇଚି । ସେ ପିଣ୍ଡି ଉପରେ ଗୋଟିଏ ଅନ୍ଧଲୋକ ସବୁଦିନ ସଂଧ୍ୟାରେ ମହାତ୍ମାଗାନ୍ଧୀଙ୍କ ବେଶରେ ଷ୍ଟାଚ୍ୟୁ ହୋଇ ଠିଆ ହୋଇ ରୁହେ । ସାମନାରେ ପଡିଥିବା ଧୋତି ଉପରେ ଗୋଟିଏ ଆଲମୁନିୟମ ଥାଳିରେ ଦେଖଣାହାରି ପଇସା ପକାନ୍ତି । ସେଇଥିରେ ତାର ଗୁଜୁରାଣ ମେଣ୍ଟାଏ । ଆଜି ବି ଲୋକଟି ଷ୍ଟାଚ୍ୟୁ ହୋଇ ଠିଆ ହୋଇଛି । ଅଳ୍ପଦୂରରରେ ତାର ୮/୧୦ ବର୍ଷର ଝିଅ ଟି ଗାର ପକାଇ ଖପରା ଡିଆଁ ଖେଳୁଛି । ଦୂରରୁ ରାମଧୁନ ଶୁଣା ଯାଉଛି । ଗୋଟିଏ ପାଖରୁ ଦୁଇଜଣ ଯୁବକ ଯୁବତୀ ଆସନ୍ତି । ସେମାନେ ଏଇ ପାର୍କକୁ ପ୍ରଥମଥର ପାଇଁ ଆସୁଛନ୍ତି ।

ଯୁବକ — କାଲିଠୁ ଆସି ଆମେ ପାଖ ଲଜିଂରେ ରହିଲେଣି ଏଠି ଗୋଟେ ଏତେ ସୁନ୍ଦର ପାର୍କ ଅଛି ବୋଲି ଜାଣି ପାରିଲେନି ।

ଯୁବତୀ — କେମିତି ଜାଣିବା ଲଜିଂ ରୁମରୁ ପଦାକୁ ବାହାରିଲେ ସିନା ଜାଣିବା? ସତରେ ପାର୍କଟା ବହୁତ ଭଲ ହେଇଛି ।

ଯୁବକ — ବାହାରୁ ଦେଖିଲେ ମୋଟେ ଜଣା ପଡୁନି ଏଇଟା ଗୋଟେ ଏତେବଡ ପାର୍କ । ସେପଟେ ଦେଖ କେମିତି ଗୋଟେ ଜଳପ୍ରପାତ ତିଆରି ହୋଇଛି । ରଂଗ ବେରଂଗ ଆଲୋକ ପଡି ବଡ ଚମତ୍କାର ଦେଖାଯାଉଛି ।

ଯୁବତୀ — ସତରେ ଖୁବ ସୁନ୍ଦର ଦେଖାଯାଉଛି ।

ଯୁବକ — (ଗାନ୍ଧୀ ଷ୍ଟାଚ୍ୟୁକୁ ଦେଖି), ଏପଟେ ଦେଖ ଗୋଟେ ଷ୍ଟାଚ୍ୟୁ ।

ଯୁବତୀ — ଆରେ କେତେବଡ ଗୋଟେ ମୂର୍ତ୍ତୀ ଏଇ ପାଖରେ ଠିଆ ହୋଇଛି ମୁଁ ଦେଖି ପାରୁନଥିଲି ।

ଯୁବକ — ଷ୍ଟାଚ୍ୟୁଟା ବେଶ ଜୀବନ୍ତ ହେଇଛି ନା ?

ଯୁବତୀ — ଅରଜିନାଲ ମଣିଷ ବୋଲି ଲାଗୁଛି । ଧନ୍ୟ କହିବ ସେ ଶିଳ୍ପୀକୁ... ।

ଯୁବକ — ଏ ଷ୍ଟାଚ୍ୟୁଟା କାହାର କହିଲ?

ଯୁବତୀ — ଷ୍ଟାଚ୍ୟୁଟା କାହାର ମାନେ ? ଏଇ ପାର୍କଟା ଯାହାର ଷ୍ଟାଚ୍ୟୁଟା ତାଙ୍କର ।

ଯୁବକ — ଧେତ୍ ତେରି । ଷ୍ଟାଚ୍ୟୁର ମାଲିକ କିଏ ବୋଲି ପଚାରୁଛି ?

ଯୁବତୀ — ଆଉ ତାହେଲେ କ'ଣ ପଚାରୁଛ ?

ଯୁବକ — ଏ ଯେଉଁ ଷ୍ଟାଚ୍ୟୁଟି ଏଠି ତିଆରି ହୋଇଛି ଏଇଟା ନିଶ୍ଚୟ ଜଣେ ମହାପୁରୁଷଙ୍କର ନା ନାହିଁ ? ସେ ମହାପୁରୁଷଙ୍କ ନାଁ କଣ ?

ଯୁବତୀ — (ଷ୍ଟାଚ୍ୟୁକୁ ନିରିକ୍ଷଣ କରି) କାହାର କହିଲ ? ମୋ ଜିଭ ଆଗରେ ଅଛି - ହେଲେ ମନେ ପଡୁନି ।

ଯୁବକ — ଏଇଟା ଗାନ୍ଧୀଙ୍କର ଷ୍ଟାଚ୍ୟୁବୋଲି ଜାଣିପାରୁନ ?

ଯୁବତୀ — ହଁ ହଁ ମନେ ପଡିଲା ଗାନ୍ଧୀଙ୍କର ।

ଯୁବକ — ହଉ ଯଦି ତୁମର ମନେ ପଡିଲା ବୋଲି କହୁଚ ତାହେଲେ ତାଙ୍କର ପୁରା ନାଁ ଟା କୁହ ?

ଯୁବତୀ — ଟିକିଏ ବୁଲାବୁଲି କରିବାକୁ ଘରଛାଡି ବାହାରକୁ ଆସିଚେ । ଏଠି କଣ ମୋତେ ତୁମେ ଆଣିଛ ମୋ ପାଠ ପରୀକ୍ଷା କରିବାକୁ ।

ଯୁବକ — ଦେଖ ସେମିତି କଥା କହି ତୁମେ ଅସଲ ପ୍ରଶ୍ନଟା ଏଡାଇ ଦିଅନି । ଯଦି ଜଣାଅଛି କୁହ- ନହେଲେ ନାହିଁ କରିଦିଅ ଯେ ତୁମେ ଜାଣିନ ।

ଯୁବତୀ — ହଉ ଥାଉ - ସେପଟକୁ ଆସ ସେ ପାଣି ପାଖକୁ ଯିବା ।

ଯୁବକ — ଯିବାତ - ହେଲେ ମୋହନଦାସ କରମଚାନ୍ଦ ଗାନ୍ଧୀ କିଏ କୁହ?

ଯୁବତୀ — ସୋନିଆ ଗାନ୍ଧୀଙ୍କ ବାପା । ହେଲା... ।

ଯୁବକ — ବାଃ, ମୁଁ ଭାବିଥିଲି ତୁମେ କହିପାରିବନି ।

ଯୁବତୀ — ଏଥର ହାର ମାନିଲ ତ ?

ଯୁବକ — ଏଥର କାହିଁକି ସାରା ଜୀବନ ପାଇଁ ହାର ମାନିଗଲି । ସତରେ ତୁମେ ଗୋଟିଏ ଜିନିୟସ୍ ।

ଯୁବତୀ — ମାନେ?

ଯୁବକ — ମାନେ ଆମର ଆଗାମୀ କାଲିକୁ ମୁଁ ଦେଖିପାରୁଛି ଯେ ଆମର ଭବିଷ୍ୟତ ବେଶ ସମ୍ଭାବନାମୟ ହେବ ।

ଯୁବତୀ — କ'ଣ ଯାହା ତା ସିଆଡୁ ସବୁ କହିଚାଲିଛ?

ଯୁବକ  ବୁଝିପାରୁନ - ହେଇ ଦେଖ ଆସନ୍ତା ବର୍ଷ ଆଡକୁ ଆମର ନିଶ୍ଚୟ ଗୋଟେ ପିଲା ହେବ । ମୁଁ ଦେଖିପାରୁଛି ଯେ ତୁମ ଭଳି ଗୋଟେ ବେଶ ବ୍ରିଲିଆଣ୍ଟ ପିଲାହେବ ।

ଯୁବତୀ  ସେମିତି ଥଟ୍ଟା କଲେ ମୁଁ ରାଗିଯିବି କହୁଛି ।

(ଯୁବତୀ ଅଭିମାନରେ ଚାଲିଯାଏ)

ଯୁବକ  ହେଇ ଶୁଣ....., ଶୁଣ..... ।

(ଯୁବକ ଯୁବତୀ ଯିବା ଦିଗକୁ ଚାଲିଯାଏ

ଯୁବକ ଯୁବତୀ ଚାଲିଗଲା ପରେ ବନମାଳୀ ବାବୁ ଆସନ୍ତି । ସେ ଆସି ଅନ୍ଧଲୋକ ସାମନାରେ ଥିବା ଥାଳିରେ ଟଙ୍କାଟିଏ ପକାନ୍ତି । ବିପରିତ ଦିଗରୁ ଜଗିଂ କରି କରି ଜଣେ ଲୋକ ଆସନ୍ତି । ସେ ଆସି ଷ୍ଟାଚ୍ୟୁର ଅଳ୍ପଦୂରରେ ବିଭିନ୍ନ ବ୍ୟାୟାମ କରନ୍ତି । ତାଙ୍କ ନାଁ କାଳନ୍ଦୀ ବାବୁ ।)

ବନମାଳୀ  (କାଳନ୍ଦୀ ବାବୁଙ୍କୁ) ଆରେ କାଳନ୍ଦୀ ବାବୁ ନା ?

କାଳନ୍ଦୀ  ହଁ, ହେଲେ ମୁଁ ତ ଆପଣଙ୍କୁ ଚିହ୍ନିପାରୁନି ?

ବନମାଳୀ  କଣ ମ ମୋତେ ଚିହ୍ନିପାରୁନା.... ମୁଁ କଣ ଏମିତି ବଦଳୀ ଗଲିଣି?

କାଳନ୍ଦୀ  ଆରେ ଆରେ ବନମାଳୀ ବାବୁ ସତରେ ମୁଁ ଚିହ୍ନି ପାରିନିନି ।

ବନମାଳୀ  ବହୁତ ଦିନ ପରେ ଦେଖା- ପ୍ରାୟ ସାତ ଆଠ ବର୍ଷ ହେବ ।

କାଳନ୍ଦୀ  ସତରେ ୟା ଭିତରେ ଆପଣ ବହୁତ ବୁଢା ଦେଖାଗଲେଣି । ସେ ପୁରୁଣା ଚେହେରା କାହିଁ ?

ବନମାଳୀ  ଭାଇ ଆସି ରିଟାୟାଡ କଲିଣି । ଦିନକୁ ଦିନ ରୋଗ ବୈରାଗ ମାଡିବସୁଛି । ଚେହେରା ରହିବ କୁଆଡୁ । ବର୍ତ୍ତମାନ କୋଉଠି?

କାଳନ୍ଦୀ  ବଲାଙ୍ଗିରରେ ଆଠବର୍ଷ ରହିଲା ପରେ ବଡକଷ୍ଟରେ ଏଠିକ ବଦଳି ହେଇ ଆସିଛି । ଏଇଠି ଭାବୁଛି ରିଟାୟାଡ ହେଲାଯାଏ ରହିବି । ଆଉ ଦେଢ ବର୍ଷ ଅଛି ।

ବନମାଳୀ  ଭଲ ହେଲା । ସବୁଦିନ ଏଇ ପାର୍କକୁ ବୁଲି ଆସୁଛନ୍ତି ନା ?

କାଳନ୍ଦୀ  ନାଇଁ ସବୁଦିନ କାହିଁ ଆସି ହେଉଛି । ଆଜି ପ୍ରଥମକରି ଆସୁଛି ।

ବନମାଳୀ  ଏଥର ତାହେଲେ ସବୁଦିନ ଦେଖାହେବ ।

କାଳନ୍ଦୀ  ଆଛା ଏଠି ଯେଉଁ ଗାନ୍ଧୀ ଷ୍ଟାଚ୍ୟୁଟା ଥିଲା ସେଟା ଗଲାଥର ଇଲେକସନ୍

ବେଳକୁ ଭାଙ୍ଗିଯାଇଥିଲା - ଏଇ ନୂଆ ଷ୍ଟାଚ୍ୟୁ କେବେଠୁ ବସାଗଲାଣି ।

ବନମାଳୀ (ହସି) ଏଇଟା ଷ୍ଟାଚ୍ୟୁ ନୁହେଁ କାଳନ୍ଦୀ ବାବୁ । ଇଏ ହେଉଛି ଷ୍ଟାଚ୍ୟୁ ମ୍ୟାନ୍ ।

କାଳନ୍ଦୀ ମାନେ?

ବନମାଲୀ ମୂର୍ତ୍ତୀ ମଣିଷ । ବଜାର ଛକ ପାଖରେ ଦେଖିଥିବେ ଅନ୍ଧଲୋକଟିଏ ବିଭିନ୍ନ ପ୍ରକାର ଷ୍ଟାଚ୍ୟୁ ହୋଇ ଠିଆ ହୁଏ । ସେଇ ଲୋକଟି କିଛି ଦିନ ହେଲା ଏଇଠି ଠିଆ ହେଉଛି ।

କାଳନ୍ଦୀ ଓଃ ହୋ ମନେପଡିଲା । ସେ ଅନ୍ଧ ଲୋକଟି କୋଉଦିନ ବିବେକାନନ୍ଦ ତ କୋଉଦିନ ସୁବାସ ବୋଷ ହୋଇ ଠିଆ ହୁଏ । ସେ ଲୋକଟି ତାହେଲେ........ ଆରେ ହିଁ ତ ଏଇଠି ପଇସା ପଡିଛି ।

(କାଳନ୍ଦୀ ପକେଟରୁ ପଇସା କାଢି ଥାଳିରେ ପକାନ୍ତି । ପଇସାଟି ଥାଳିରୁ ଛିଟିକି ଦୂରରେ ପଡେ । ପାଖରେ ଖପରା ଡିଆଁ ଖେଳୁଥିବା ପିଲାଟି ଗୋଟେଇ ଆଣି ଥାଳିରେ ପକାଇଦିଏ ।)

କାଳନ୍ଦୀ ଏ ପିଲାଟି ?

ବନମାଳୀ ଅନ୍ଧଲୋକର ଝିଅ କି ନାତୁଣୀ ହେବ ନା କଣ ।

(ହଠାତ୍ ଦୂରରୁ ଲୋକମାନଙ୍କ ହୋ ହଲା ଶୁଣାଯାଏ । ତା ଭିତରୁ ଶୁଣାଯାଏ - "ହେଇ ସେପଟେ ଦୌଡି ପଳାଉଛି । ଧର - ଧର - ହେଇ ପାର୍କ ଆଡକୁ ଧାଉଁଛି । ଧର .....ପକେଟ କାଟି ପଳାଉଛି ।" )

କାଳନ୍ଦୀ ବଜାର ଆଡୁ କଣ ସବୁ ପାଟି ତୁଣ୍ଡ ଶୁଣାଯାଉଛି ?

ବନମାଳୀ କଣ ହେଇଥିବ । ଆଜି କାଲିତ ଟିକିଏ ଟିକିଏ କଥାରେ ପାଟିତୁଣ୍ଡ ହୋ ହଲ୍ଲା ।

(ଦୁଇଜଣ ପୋଲିସ କନେଷ୍ଟବଳ ଆସନ୍ତି । ସେମାନେ ଯେମିତି କାହାକୁ ଖୋଜୁଛନ୍ତି ବୋଲି ଜଣାଯାଏ. ସେମାନେ ହେଉଛନ୍ତି ସପନା ହାବିଲଦାର ଓ କନେଷ୍ଟବଳ ହରି ସିଂ । ସେମାନେ ପ୍ରଥମେ ଆସି ପାର୍କ ଭିତରକୁ ଯାଆନ୍ତି ପରେ ପରେ ଫେରି ଆସନ୍ତି ।)

ସପନା କୁଆଡେ ଗଲା କାହିଁ କେଉଁଠି ଦେଖାଯାଉନି । ତୁ ବୋଧେ ଠିକ୍ ଦେଖିନୁ ହରି ।

ହରି — ମୁଁ ଠିକ୍ ଦେଖିଛି ସେ ଲୋକଟା ବଜାର ଛକ ପାଖରେ ପକେଟ କାଟି ଏଇ ପାର୍କ ଆଡେ ଧାଇଁଲା । ବଦମାସଟା ନିଶ୍ଚୟ ଏଇ ପାର୍କ ଭିତରେ ଲୁଚିଛି ।

ସପନା — ନାଁ ତୁ ଭୁଲ କହୁଛୁ । ପାର୍କ ଦରୱାନ କୁ ପଚାରିଲି ପାର୍କ ଗେଟ ଦେଇ କେହି ଭିତରକୁ ଆସିନାହାନ୍ତି ।

ହରି — ସେ ଭାଡୁଆ ବାନା ଯେମିତି ସେ ଲୋକଟାର ପକେଟ କାଟିଲା ସେ ଲୋକଟା ସାଙ୍ଗେ ସାଙ୍ଗେ ହଲା କଲା । ମୁଁ ଟ୍ରାଫିକ୍ ଛକ ପାଖରେ ଠିଆ ହେଇଥିଲି ପାର୍କ ଗେଟ୍ ଦେଇ ନହେଲେ ବି ସେଇଟା ପାଚେରୀ ଡେଇଁ ପଶିଥିବ ।

ସପନା — (ପୋଟିକରି)ହଇରେ ହାରାମି ବାନା, ତୋ ଭଲ ମଙ୍ଗଳ ଅଛି ଯଦି ବାହାରି ଆ କହୁଛି । ନହେଲେ ପୁଅ ଆଜି ଦେଖିବୁ ।

ହରି — ଆରେ ତୁ ଆମକୁ ବଳିଯିବୁନି ମ । ଆବେ ହେ ବାନାବର କୋଉଠି ଲୁଚିଛୁ ସାମନାକୁ ଆସେ କହୁଛି । ବାନା... ।

ସପନା — ଆଛା ତୁ ଏ ପଟକୁ ଗଲୁ ଏ ପାଖଟା ଟିକିଏ ଦେଖି ଆସ । ମୁଁ ସେପାଖଟା ଦେଖୁଛି । (ହରି ଚାଲିଯାଏ)

ସପନା — (କାଳନ୍ଦୀ ଓ ବନମାଳୀଙ୍କୁ) ଆଛା ଆପଣମାନେ ଏପଟେ କିଏ ଗୋଟେ ଦୌଡାଦୌଡି କରି ଆସିବାର ଦେଖିଛନ୍ତି କି ?

ବନମାଳୀ — ନାଁ ଆମେତ ସଂଧ୍ୟାବେଳୁ ଅଛୁ । କଣ ହେଇଛି କି ?

ସପନା — ବଜାର ଛକ ପାଖରୁ କିଏ ଗୋଟେ ପକେଟ କାଟି ଜଣେ ବାବୁଙ୍କର ମନିପର୍ସଟା ଧରି ଚଂପଟ କରିଛି । ସେ ଆସି ଏଇଠି ଏଇ ପାର୍କ କାଛ ଡେଇଁ କୋଉଠି ଲୁଚିଯାଇଛି ।

କାଳନ୍ଦୀ — ସେକଥା ତ ବୁଝି ହେଉଛି ହେଲେ ବାନା ବାନା ବୋଲି ଡାକ ପକେଇଛ ଯେ ସିଏ କିଏ ?

ସପନା — (ହସି) ବାନାବର ନାଏକ ଏବେ କିଛି ଦିନ ହେଲା ଜେଲରୁ ଖଲାସ ହେଇଛି । ଆମର ସନ୍ଦେହ ହେଉଛି ଏଇଟା ତାରି କାମ ।

(ସପନା ହରି ସିଂହ ଯାଇଥିବା ବିପରିତ ଦିଗକୁ ଚାଲିଯାଏ । ଦୂର ଘଣ୍ଟାରେ ନ'ଟା ବାଜିବାର ଶବ୍ଦ ହୁଏ । ଅନ୍ଧଲୋକଟି କଥାବାର୍ତ୍ତା ଆରମ୍ଭ କରେ ।)

| | |
|---|---|
| ଅନ୍ଧ | ଆଲୋ ମା ଝୁମ୍ପା, ନଅଟା ବାଜିଲା ବାହାର ଏଥର ଯିବା । |
| | (ଅନ୍ଧଟି ତା ପିଣ୍ଡିରୁ ଓହ୍ଲେଇ ବାକୁ ଚେଷ୍ଟା କରେ । ସେ କାଳେ ପଡିଯିବ ବନମାଳୀ ବାବୁ ଯାଇ ତାକୁ ସାହାଯ୍ୟ କରନ୍ତି । ସେ ତଳକୁ ଆସି ତାର ଗାମୁଛା ପଇସା ଗୋଟାଇବାକୁ ଲାଗେ । ପିଲାଟି ଆସି ତା ହାତଧରି ନିଏ ।) |
| ଝୁମ୍ପା | ଚାଲ ବା, ଯିବା । |
| ବନମାଳୀ | ଏବେ କଣ ଘରକୁ ଚାଲିଯିବ ? |
| ଅନ୍ଧ | ହଁ ବାବୁ, ନଅଟା ବାଜିଲାଣି ନହେଲେ ଦରୱାନ ପାଟି କରିବ । |
| ବନମାଳୀ | ଦେଖୁଛି ଏଇଠି ତୁମର ପଇସା କମ ହେଉଛି । ଏଇ ଯାଗା ଛାଡି ବଜାର ଉପରେ ଠିଆ ହେଲେ ଭଲ ପଇସା ମିଳନ୍ତା । |
| ଅନ୍ଧ | ସେଠି ଭଲ ପଇସା ମିଳୁଥିଲା ବାବୁ ହେଲେ ସେଠି ଆଉ ମୁଁ ଠିଆ ହେବିନି । ଏଇଠି ଯାହା ମିଳୁଛି ସେତିକିରେ ଚଳିବାକୁ ପଡିବ । |
| କାଳନ୍ଦୀ | କାହିଁକି ତୁମର କଣ ବେଶି ପଇସା ଦରକାର ନାହିଁ । |
| ଅନ୍ଧ | ପଇସାକୁ କିଏ ମୁରୁଛି ପାରେ ବାବୁ । ସମସ୍ତଙ୍କର ପଇସା ଦରକାର । ହେଲେ ପଇସା ପାଇଁ ଅଶାନ୍ତି ପାଇଲେ ମନ ଭଲ ରହିବନି । ତେଣୁ ଯେତିକି ହେଲା ସେତିକି ଭଗବାନଙ୍କ ବରାଦ ବୋଲି ଭାବିବାକୁ ହେବ । |
| ବନମାଳୀ | ମାନେ? |
| ଅନ୍ଧ | ସେଠି ବଜାର ଛକରେ ଠିଆ ହେଉଥିଲି । ଭଲ ଦି ପଇସା ହେଉଥିଲା । ହେଲେ ଟ୍ରାଫିକ୍ ପୋଲିସ ରଖେଇ ଦେଲାନି । କହିଲା ତୁ ଏଠି ଠିଆ ହେଲେ ଲୋକ ଭିଡ କରୁଛନ୍ତି । ଟ୍ରାଫିକ ଯାମ ହେଉଛି । ଏ ଯାଗାରେ ଠିଆ ହୋଇପରିବୁନି । ବହୁତ ନେହୁରା ହୋଇ କହିଲି ବାବୁ ହେଲେ କିଛି ଶୁଣିଲେନି । ବରଂ ଭାଗ ମାଗିଲେ । |
| କାଳନ୍ଦୀ | ଭାଗ ମାଗିଲେ? |
| ଅନ୍ଧ | କାହାକୁ କହିବେନି ବାବୁ ନହେଲେ ମୋ ଉପରେ ପାହାର ବସିବ । (ଧିର ଗଳାରେ) ଟ୍ରାଫିକ ବାଲା କହିଲେ ବଜାର ଭିତରେ ଠିଆ ହେଲେ ଯାହା ରୋଜଗାର ହେବ ସେଥିରୁ ଭାଗ ଦେବାକୁ ପଡିବ । ନହେଲେ ଠିଆ ହେଇ ପାରିବୁନି । |
| ବନମାଳୀ | ତୁମଠୁ ସେମାନେ ଭାଗ ମାଗିଲେ? |

ଅନ୍ଧ ଖାଲି ଭାଗ ନୁହେଁ ବାବୁ । କହିଲେ ଟଙ୍କାକେ ପଚାଶ ପଇସା ଦେବାକୁ ପଡିବ । ସେଥିପାଇଁ ଛାଡିଦେଲି ଆଜ୍ଞା । ଗତ ଜନ୍ମରେ କଣ ସବୁ ପାପ କରିଥିଲି ଯେ ଏ ଜନ୍ମରେ ଅନ୍ଧ ହେଇଛି । ସେଥିରେ ପୁଣି ଏଠି ଲୋକଙ୍କ ପଇସାରେ ସେ ଯକ୍ଷ ଗୁଡିକୁ ପୋଷିବି- ନାଇ ବାବୁ ଏଇଠି କମ ମିଳୁଛି ସତ ହେଲେ ମୁଁ ସେଥିରେ ଶାନ୍ତିରେ ଗଣ୍ଡେ ଖାଇପାରୁଛି । (ଝୁମ୍ପାକୁ) ଆରେ ମା ପଇସା ଗୁଡାକ ସବୁ ଗୋଟେଇବୁ ତ, ଦେଖ ଅନ୍ଧାର ଭିତରେ କୁଆଡେ ଗଡି ଯାଇଥିବ ।

ଝୁମ୍ପା ଗୋଟାଇଛି ।

ବନମାଳୀ ହଁ ସେ ଠିକ୍ ଗୋଟେଇଛି ।

ଅନ୍ଧ ଯାଉଛି ବାବୁ । ଗଲେ ପୁଣି ସେ ପାଖରୁ ଚାଉଳ ଗଣ୍ଡେ କିଣିବାକୁ ପଡିବ ।

ଝୁମ୍ପା ମୋ ଲାଗି ଗୋଟେ ଆଇସ୍କ୍ରିମ କିଣିଦେବ ।

ବନମାଳୀ ଚାଲ ଆମେ ବି ଯାଉଛୁ । ଆଛା ତୁମେ ତ ଆଗରୁ ବିଭିନ୍ନ ପ୍ରକାର ବେଶ ପୋଷାକ ପିନ୍ଧି କୋଉଦିନ ନେହେରୁ କୋଉଦିନ ଶିବାଜୀ- ବେଶ ହୋଇ ଠିଆ ହେଉଥିଲ । ଏବେ କେବଳ ଗାନ୍ଧୀ ହୋଇ ଠିଆ ହେଉଛ? ସେମିତି ବେଶ ବଦଳାଇ ଠିଆ ହେଲେ ଏଠି ବି ଲୋକ ପ୍ରତିଦିନ ଜମା ହୁଅନ୍ତେ ଆଉ ପଇସା ଦିଅନ୍ତେ ।

ଅନ୍ଧ ଭାଗ୍ୟ ଖରାପ ବାବୁ । ଗାନ୍ଧୀ ମହାତ୍ମା ବଂଚିଥିଲା ବେଳେ ଯେମିତି ଗରିବମାନଙ୍କୁ ସାହାଯ୍ୟ କରୁଥିଲେ ସେ ମରିଗଲା ପରେ ବି ସେମିତି ସାହାଯ୍ୟ କରୁଛନ୍ତି ।

ବନମାଳୀ କିଛି ବୁଝି ହେଲାନି?

ଅନ୍ଧ ଗତ ସନ ଘରପୋଡିରେ ଯାହା ସବୁ ପୋଷାକ ଥିଲା ସବୁ ପୋଡିଗଲା ବାବୁ । ଆଉ ପଇସା ପାଇଲିନି ନୂଆ ବେଶ ପୋଷାକ କିଣିବାକୁ । ସେଇଥିପାଇଁ ଖାଲି ଗାନ୍ଧୀ ବୁଢା ବେଶ ବାଛିନେଲି । ଗାନ୍ଧୀ ମହାତ୍ମା ମଣିଷ ନଥିଲେ ବାବୁ ଦେବତା ଥିଲେ । ଗରିବ ମାନଙ୍କର ଦେବତା । ସେ ଯେମିତି ସରଳିଆ ଲୋକଥିଲେ ସେମିତି ସରଳିଆ ଥିଲା ତାଙ୍କ ବେଶପୋଷାକ । (ଶୁନ୍ୟକୁ ମୁଣ୍ଡିଆ ମାରି) ତାଙ୍କ ଯୋଗୁଁ ମଣିଷ ଚଳିଯାଉଛି ।

(ଅନ୍ଧକୁ ନେଇ ଛୋଟ ପିଲା ବନମାଳୀ ଓ କାଳନ୍ଦୀବାବୁ ଚାଲି ଯାଆନ୍ତି । ଭିତରୁ ହରି ସିଂର ପାଟି ଶୁଣାଯାଏ ।)

ହରି ସିଂ (ଭିତରୁ ) ଏଇ ପାର୍କ ଭିତରେ ଅଛି । ଆଜ୍ଞା ସେ ପାଖଟା ଦେଖନ୍ତୁ ।

(ଯୁବକ ଓ ଯୁବତୀ ଆସନ୍ତି)

ଯୁବତୀ ଆଉ ଏଠି ବସିବା ଅପେକ୍ଷା ହୋଟେଲକୁ ପଳାଇବା ଭଲ ।

ଯୁବକ ବାହାର ଯାଗା, ଆଉ ରହିବା ଉଚିତ ନୁହେଁ ।

ସପନା (ଭିତରୁ) ସେଠି କିଏ? କିଏ ସେଠି । (ପ୍ରବେଶ) କଣ ତୁମ ଦି ଜଣଙ୍କୁ ଶୁଣା ଯାଉନି । ପଚାରୁଛି ତୁମେ ଦି ଜଣ ଏଠି କଣ କରୁଥିଲ ।

ଯୁବକ କରିବୁ କଣ । ସଂଧ୍ୟାରେ ଖୋଲାପବନ ପାଇବାକୁ ପାର୍କ ଆଡେ ବୁଲି ଆସିଥିଲୁ ।

ସପନା ରାତି ଆସି ନଅଟା ପାର ହେଇଗଲାଣି ତୁମ ଦୁଇଜଣଙ୍କୁ ସଂଧ୍ୟା ହୋଇଛି । ନଅଟା ପରେ ଏଠି କେହି ରହିପାରିବେନି । ଏକଥା ତୁମକୁ ମାଲମୁ ନାହିଁ । ଚାଲ ଚାଲ ଥାନାକୁ ଚାଲ ।

ଯୁବକ ଆମେ ବାହାରର ଲୋକ । କାଲି ଏଇ ସହରକୁ ନୂଆ କରି ଆସିଛୁ । ରାତି ନଅଟାପରେ ଏଠି ରହିବାକୁ ମନା ବୋଲି ଆମେ ଜାଣି ନିଥିଲୁ । ଏ ସାଙ୍ଗେ ସାଙ୍ଗେ ଆମେ ଚାଲି ଯାଉଛୁ ।

ସପନା ଯିବ କୁଆଡେ ..... ଥାନାକୁ ଯିବ ପରା... ।

ହରି ସିଂ (ଭିତରୁ) ଗଲା – ଗଲା ଆଜ୍ଞା । ସେ ଲଟି ଭିତରକୁ ଗଲା ।

ସପନା କୁଆଡେ ଗଲା କିରେ । ଅନ୍ଧାର ଭିତରେ କୋଉଠୁ ଲୁଚି ଯାଉଛି । (ଯୁବକ ଯୁବତୀଙ୍କୁ ) ତୁମେ ମାନେ ଏ ପାର୍କଛାଡି କୁଆଡେ ଯାଇପାରିବନି । ଏଇଠି ଠିଆ ହୋଇଥାଅ ମୁଁ ଆସୁଛି । (ସପନା ଚାଲିଯାଏ)

ଯୁବତୀ ମୁଁ ମନାକରୁଥିଲି ବେଶି ସମୟ ଏଇଠି ବସିବାନି । ଏବେ ଥାନାକୁ ଯିବାକୁ ପଡିବ ।

ଯୁବକ ଥାନାକୁ କାହିଁକି ଯିବୁ- ଆମେ ଚୋରି ନା ଡକାୟତି କରିଛୁ ।

ସପନା (ଭିତରୁ) ହରି ... ହରି ଆରେ କୋଉ ଆଡକୁ ଗଲା କିରେ ଏପଟ ଲଟି ଭିତରେ କେହି ନାହାଁନ୍ତି ।

(ଠେଙ୍ଗିଣିରେ ଲଟା ବୁଦା ତଥା ତଳକୁ ବାଡାଇବାର ଶବ୍ଦ

ହୁଏ । ସେ ଅନ୍ଧାର ଭିତରୁ ଗୋଟିଏ ଲୋକ ମୁହଁକୁ ଗାମୁଛା କାନିରେ ଲୁଚାଇ ପାଦ ଚାପି ଚାପି ମଂଚ ଭିତରକୁ ଆସେ । ସେ ଆସି ଗାନ୍ଧୀଙ୍କ ଷ୍ଟାଚ୍ୟୁ ପାଇଁ ତିଆରି ହୋଇଥିବା ପିଣ୍ଡି ପଛପାଖରେ ଲୁଚିଯାଏ । ପରେ ପରେ ଦୁଇ ବିପରିତ ଦିଗରୁ ଚୋରକୁ ଖୋଜି ଖୋଜି ସପନା ଓ ହରିସିଂ ଆସନ୍ତି । ଚୋର ମଉକା ଦେଖି ସେ ପିଣ୍ଡି ଉପରକୁ ଉଠିଯାଇ ପୂର୍ବର ଅନ୍ଧଭଳି ଗାନ୍ଧୀଙ୍କ ଷ୍ଟାଚୁ ଭଳି ଠିଆ ହୋଇଯାଏ । ହାତରେ ତାର ଠେଙ୍ଗା । ଯୁବକ ଯୁବତୀ, ଚୋରଟିଏ ଏ ପ୍ରକାର କାର୍ଯ୍ୟ ଦେଖିପାରନ୍ତିନି । ଆସନ୍ତି ସପନା ଓ ହରି)

ସପନା — ତୁ ହରି ହେବୁନି । ସେ ପକେଟମାରୁ 'ବାନା' କାହିଁ କେଉଠି ?

ହରି — ସେ ପାଖ ବଉଳ ଗଛ ଲିଟକୁ ଯେମିତି ଦି ପାହାର ଲଗାଇ ଦେଇଛି ଶଳାଟି ଏଇ ଆଡକୁ ଭୁସ ଭୁସ କରି ମାଡି ଆସିଲା ।

ସପନା — ଚୋପ୍ । ଭୁସ୍ ଭୁସ୍ କରି ବାହାରି ଆସିଲା କୁଆଡେ ଅନ୍ତର୍ଦ୍ଧାନ ହୋଇଗଲା । ଯା - ତାକୁ ତା ଘର ଆଡେ ଦେଖିବୁ । ପାଇଲେ ହାତରେ ହାତକଡି ଲଗାଇ ନେଇ ଆସିବୁ ।

ହରି — ଯଦି ଏଇଠୁ ଖସି ପଳେଇଥିବ ତେବେ ଘରକୁ ଫେରିନିଥିବ । ନିଶ୍ଚୟ କୋଉ ଭାଟିକୁ ପିଆ ପିଇ କରିବାକୁ ଚାଲିଯାଇଥିବ । ପକେଟ କାଟିଛି-ମାନେ ନିଶ୍ଚୟ କିଛି ମାଲ ମିଳିଥିବ.. କୋଉ ଭାଟିରେ ଥିବ ।

ସପନା — ଭାଟିରେ ଥାଉ କି ପାର୍ଟିରେ ଥାଉ ତାକୁ ଦି ପାହାର ଲଗେଇ ଧରି ଆଣିବୁ । ଗୋଟେ ସପ୍ତାହହେଲା ଦେଖାନାହିଁ କି ଥାନାର ପିସିଟା ଦେଇନି ।

ହରି — ମୋତେ ଆଜି ଯେଉଁ ନାକେଦମ କଲାଣି.... । ଯଦି ଏଥର ବାତେଇ ବାତେଇ ନାକେଦମ ନକରି ଦେଇଛି ମୁଁ ଶଳା କି କନେଷ୍ଟବଳ ହୋଇଛି ।

ସପନା — ହଉ ଯା... ମୁଁ ଏଇଠି ଅଛି । ତୋ ପାଖରେ (ହାତରେ ଅଭିନୟକରି) ... ଅଛି କିରେ ?

ହରି — ମୋଦକ କଥା କହୁଛନ୍ତି? ସଂଧ୍ୟାବେଳେ ପରା ଏକ ସମୟରେ ଦୁଇଟା ପକାଇଥିଲେ ।

ସପନା — ବାଜେ ଜିନିଷ ଗୁଡାକ, କାହିଁକିଛି କାମ କରୁନି । ଥିଲେ ଆଉ ଗୋଟେ ଦେ ।

ହରି — କହୁଛନ୍ତି ବୋଲି ଦେଉଛି । ନହେଲେ ଏତେଗୁଡେ ମୋଦକ ଏକାବେଳେ ନବାଟା ଠିକ୍ ନୁହେଁ ।

(ହରି ମୋଦକ ଦିଏ, ସପନା ତାକୁ ବିନା ପାଣିରେ ଗିଳି ପକାଏ । ହରି ଚାଲିଯାଏ ।)

ସପନା — ଏଥର ତୁମେ ଦି ଜଣ ଥାନାକୁ ବାହାରିପଡ ।

ଯୁବକ — ଆମେ ବାହାରର ଲୋକ ନିୟମ ନଜାଣି ଏଇଠି ଅଟକି ଯାଇଥିଲୁ । ଥାନାକୁ ଯିବୁ କାହିଁକି ? ଆମେ ଏମିତି କଣ ଭୁଲ କରିଛୁ କି ?

ସପନା — ହେଇ ବାବୁ- ସପନା ହାବିଲଦାର ଆଗରେ ବାହାଦୁରି ଦେଖେଇବନି କହି ଦେଉଛି । ଏ ଝିଅ କିଏ ?

ଯୁବକ — ମୋ ସ୍ତ୍ରୀ ଆଜ୍ଞା ।

ସପନା — ସ୍ତ୍ରୀ, ମୋତେ ଟାଉଟରି ମାରୁଛୁ? ଚାଲ ଥାନାକୁ ଚାଲ ।

ଯୁବତୀ — ଥାନାକୁ ଯିବୁ ? ଆମେ କଣ ଏମିତି ଦୋଷ କରୁଛୁ କି ?

ଯୁବକ — ଓଃ(ଯୁବତୀକୁ) ତୁମେ ଟିକିଏ ଚୁପ ରୁହ ।

ସପନା — ସତ କୁହ ଏ ଝିଅ କିଏ ? ମୁଁ ଗ୍ୟାରେଣ୍ଟି ଦେଇ କହିବି ଏ ଝିଅକୁ ତୁମେ ପଟା ପଟି କରି ନେଇ ଆସିଛ । ହ୍ୟା ପୋ, ସ୍ୱାମୀସ୍ତ୍ରୀ ହେଇ କିଏ ରାତି ଦଶଟା ଯାଏ ପାର୍କରେ ରହିବ ।

ଯୁବକ — ଆଜ୍ଞା ବିଶ୍ୱାସ କରନ୍ତୁ - ଇଏ ମୋ ବିବାହିତ ସ୍ତ୍ରୀ ।

ସପନା — ଖାଲି କଥାରେ କହିଦେଲେ ମୁଁ ମାନିନେବି ? ପ୍ରମାଣ ?

ଯୁବକ — ପ୍ରମାଣ....?

ସପନା — ହଁ ପ୍ରମାଣ ? ତୁମେ ତାକୁ ବାହାହେଉଛ ବୋଲି ପ୍ରମାଣ ଦେଖାଇବାକୁ ପଡିବ ।

ଯୁବକ — ହେଇ ଦେଖନ୍ତୁ ମଥାରେ ସିନ୍ଦୁର, ହାତରେ ଶଙ୍ଖାଚୁଡି ଅଛି ।

ସପନା — ବାହାର ଲୋକଙ୍କୁ ଦେଖାଇବାକୁ ଏ ଗୁଡାକ ଲଗାଯାଇଛି । ଏ ସବୁକୁ ଦେଖେଇ ମୋତେ ଠକି ପାରିବନି ।

ଯୁବତୀ — କଣ ଆପଣ ସବୁ କହିଚାଲିଛନ୍ତି । ମୋ ନା ପଦ୍ମା ମହାନ୍ତି । ଇଏ ହେଉଛନ୍ତି ମୋ ସ୍ୱାମୀ ଅଶୋକ ମହାନ୍ତି । ଆମେ ଆସି ନିଳାଚଳ ଲଜ୍‌ରେ କାଲିଠୁ ରହିଛୁ । ଚାଲନ୍ତୁ ସେ ଲଜିଂ ରେଜିଷ୍ଟରରେ ଦେଖିବେ । ଆମ ସ୍ୱାମୀ ସ୍ତ୍ରୀଙ୍କ ନାଁ ଲେଖାହେଇଛି ।

| | |
|---|---|
| ଯୁବକ | ହଁ, ଆମ ନାଁ ଘର, ଠିକଣା ସବୁକଥା ଲେଖା ହୋଇଛି । |
| ସପନା | ଆରେ ବାବୁ ନଇତି ଗଣ୍ଡା ଗଣ୍ଡା ଯୁବକ ଯୁବତୀ ମିଛରେ ନିଜକୁ ସ୍ୱାମୀ ସ୍ତ୍ରୀ କହି ଲଜିଂରେ ରହୁଛନ୍ତି । ମୋତେ ତୁମେମାନେ ବୁଦ୍ଧି ଶିଖେଇବ । ଆଉ ଯଦି କିଛି ପ୍ରମାଣ ଅଛି କୁହ ନହେଲେ ଥାନାକୁ ଚାଲ । |
| ଯୁବକ | ଠାକୁରଙ୍କ ରାଣ ଖାଇ କହୁଛି ଇଏ ମୋ ସ୍ତ୍ରୀ । ଆପଣ ବିଶ୍ୱାସ କରୁନାହାଁନ୍ତି କାହିଁକି ? |
| ସପନା | ସପନା ହାବିଲଦାର ଏ ପୋଲିସ ଡିପାଟମେଣ୍ଟରେ ୨୫ବର୍ଷ ଚାକିରୀ କଲାଣି । କିଏ ଅସଲି ସ୍ୱାମୀ ସ୍ତ୍ରୀ କିଏ ନକଲି ସ୍ୱାମୀ ସ୍ତ୍ରୀ ଦେଖୁ ଦେଖୁ କହିଦେଇ ପାରିବ । ପ୍ରମାଣ ଦିଅ ନ ହେଲେ ସିଧା ଥାନାକୁ ଚାଲ । |
| | (ପଦ୍ମା ନିଜର ମଙ୍ଗଳ ସୁତ୍ରକୁ ଦେଖାଏ ।) |
| ଯୁବକ | ଦେଇ ଦେଖନ୍ତୁ ଆଜ୍ଞା, - ତା' ବେକକୁ ଦେଖନ୍ତୁ ତା ବେକରେ ମଙ୍ଗଳ ସୁତ୍ର ଅଛି । |
| ଯୁବତୀ | ଦି ମାସ ତଳେ ଆମର ବାହାଘର ହେଇଛି । ବିବାହିତ ସ୍ତ୍ରୀ ବିନା କିଏ ବେକରେ ମଙ୍ଗଳ ସୁତ୍ର ଲଗେଇବ ? |
| ସପନା | ଯେଉଁମାନେ ଅନ୍ୟମାନଙ୍କ ଆଖିରେ ଧୂଳିଦେଇ ଘରୁ ପଳାଇ ଆସିବେ, ବଜାରରୁ ଗୋଟେ ମଙ୍ଗଳସୁତ୍ର କିଣି ଆଣିବାରେ କଣ ଅସୁବିଧା ଅଛି? |
| ଯୁବକ | ହେ ଭଗବାନ, କେମିତି ଆଉ ବୁଝେଇବି ଯେ ଇଏ ମୋ ସ୍ତ୍ରୀ । |
| ସପନା | କିଛି ବୁଝେଇବା ଦରକାର ନାହିଁ । ପ୍ରମାଣ ଦେଇ ଦେବ ନହେଲେ ସୁନାପିଲା ଭଳି ଥାନାକୁ ଚାଲିଯିବ । ଚାଲ- ଚାଲ ଥାନାକୁ ଚାଲ.... । ହୁଁ ... । |
| ପଦ୍ମା | ଠିକ୍ ଅଛି । ଚାଲ- ଆମେ ଥାନାକୁ ଯିବାକୁ ପ୍ରସ୍ତୁତ ଅଛୁ । ଚାଲନ୍ତୁ । |
| ଯୁବକ | ରୁହ ପଦ୍ମା । ପ୍ରମାଣ ମିଳିଯାଇଛି । |
| ସପନା | କଣ ପ୍ରମାଣ ମିଳିଗଲା .... ଦେଖି ଦେଖି । |
| ଯୁବକ | ଆମ ଦି ଜଣଙ୍କର ବିବାହ ବେଦିର ଫଟୋ ଅଛି । ଆମର ହାତଗଣ୍ଠି ପଡିଛି । ଫଟୋ ଉଠା ହେଇଛି । ସେ ଫଟୋ ଦେଖିଲେ ଛାଡି ଦେବେତ । |
| ସପନା | ପ୍ରଥମେ ଫଟୋଟା ଦେଖେ, ତା ପରେ କହିବି ନା.... ? |
| ଯୁବକ | ହେଇ ଦେଖନ୍ତୁ ମୋ ମନି ପର୍ସରେ ସେ ଫଟୋଅଛି । |
| ସପନା | (ଯୁବକଠାରୁ ମନିପର୍ସ ନେଇ ଦେଖେ) ହିଁ... ଉ... । |

(ସେ ଯୁବକ ମୁହଁକୁ ଏବଂ ଯୁବତୀ ମୁହଁକୁ ଦେଖେ) ହିଁ ବାହାଘର ବେଳର ଫଟୋ ଭଳି ଲାଗୁଛି । ଦୁହେଁ ବିବାହ ବେଦୀ ଉପରେ ବସିଛନ୍ତି । ଗୋଟେ ପାଣି କଳସ ଉପରେ ଦୁହିଁଙ୍କର ହାତ ରଖିଛନ୍ତି । ଠିକ୍ କଥା... ।

ଯୁବକ — ଏଥର ଅସଲ ପ୍ରମାଣ ପାଇଗଲେ ତ ?

ସପନା — ଧେତ୍ ତେରି.... । ଏଇଟା କି ପ୍ରମାଣ ? ଏଇଟା ପ୍ରମାଣ... ଉହୁଁ... ମନକୁ ପାଉଛି ପୁଣି ପାଉନି । ପାଉଛି ପୁଣି ପାଉନି । କାହିଁ ମୋ ମନକୁ ତ... ମାନେ ପୁରାପୁରି ପାଉନି । (ମନିପର୍ସରୁ ଗୋଟେ ପାଞ୍ଚଶହ ଟଙ୍କିଆ ଖଡଖଡିଆ ନୋଟ ଟାଣି ଆଣି)ହାଁ. ହାଁ ଏଇଟା ହେଉଛି ଅସଲ ପ୍ରମାଣ । ଖାଲି ଅସଲି ନୁହେଁ ତ ଅକାଟ୍ୟ ପ୍ରମାଣ । ଏଇ ପ୍ରମାଣଟା ମୁଁ ରଖିନେଉଛି ।

(ଟଙ୍କା ନେଇ ସପନା ନିଜ ପକେଟରେ ପୁରାଇଲା)

ଯୁବକ ଯୁବତୀ :ଏଁ...?

ସପନା — ମୋ ମୁହଁକୁ ଏମିତି ବଡ ବଡ ଆଖି କରି କଣ ଚାହିଁ ରହିଛ । ମୁଁ ପ୍ରମାଣଟା ରଖି ନେଉଛି ଏଥର ତୁମେ ମାନେ ଯାଅ । ଆରେ, ତୁମେ ଦି ଜଣଙ୍କୁ କଣ ଶୁଣାଯଉନି । ଯେତେ ଚଂଚଳ ପାର ଏଇ ପାର୍କ ଛାଡି ପଳାଅ । ଥାନାକୁ ଧରି ନେଇ ବଡବାବୁଙ୍କ ପାଖରେ ପହଞ୍ଚାଇ ଦେଲେ ଏ ପ୍ରମାଣଠୁ ଆହୁରି ବଡ ବଡ ପ୍ରମାଣ ଖୋଜିବେ । ଯାଅ ... ।

(ପତ୍ନୀ ଓ ଯୁବକ ସପନା ଆଡକୁ ଘୃଣା ଚକ୍ଷୁରେ ଚାହିଁ ଚାହିଁ ଚାଲିଯାଆନ୍ତି । ସପନା ମନ ଆନନ୍ଦରେ ପୁରି ଉଠେ । ସେ ଚାରିଆଡକୁ ଥରେ ଆଖି ବୁଲେଇ ଦେଇ ବଡ ସନ୍ତର୍ପଣରେ ସେ ନୋଟ ଖଣ୍ଡକ ବାହାର କରି ଦେଖିବାକୁ ଲାଗେ ।)

ସପନା — ପ୍ରମାଣଟା ପ୍ରମାଣ ଭଳି ହେଇଛି ଆଉ । ବେଶ ଖଡ ଖଡିଆ ମଜଭୁତିଆ ପ୍ରମାଣ ନୁହେଁ ଆଉ କଣ ।

(ନୋଟ ଖଣ୍ଡକୁ ମୁଣ୍ଡରେ ଲଗେଇ ଠାକୁରଙ୍କ ଉଦ୍ଦେଶ୍ୟରେ ମୁଣ୍ଡିଆ ମାରିଛି ଏବଂ ନୋଟ୍‌ଟା ଦେଖିଛି ।)

ଏଇଟା ଅସଲି କି ନକଲି ଟିକିଏ ଦେଖି ନେବାକୁ ପଡିବ ଆଜିକାଲି ଟୋକା ଟୋକିଙ୍କୁ ବିଶ୍ୱାସ ନାହିଁ । (ଦେଖିଛି ଏବଂ ନୋଟଟାକୁ ପରୀକ୍ଷା କରିଛି)

ନା ଠିକ୍ ଅଛି । ଅସଲି ସ୍ୱାମୀ ସ୍ତ୍ରୀ କେବେ ନକଲି ପ୍ରମାଣ

ଧରି ବୁଲିବେନି । ହଣ୍ଡ୍ରେଡ୍ ପରସେଣ୍ଟ ଅସଲି ପ୍ରମାଣ ।

ବାନା (ଷ୍ଟାଚ୍ୟୁ ହୋଇ ଠିଆ ହେଇଥିବା ଚୋରଟି ଡାପାଗଳାରେ କୁହେ) ଜାଲ ନୋଟ୍ ।

(ସପନା ହଠାତ୍ ବୁଝିପାରେନି କିଏ ଜାଲ ନୋଟ ବୋଲି କହିଲା । ସେ ପୁଣି ନୋଟ ଖଣ୍ଡକୁ ଦେଖିବାରେ ଲାଗେ)

ବାନା ଜାଲ୍ ନୋଟ୍ । (ପୂର୍ବ ଅପେକ୍ଷା ଟିକିଏ ବଡ ପାଟିରେ)

ସପନା (ଆଶ୍ଚର୍ଯ୍ୟ ହୋଇ ଚାହେଁ) କିଏ, ଜାଲ ନୋଟ ବୋଲି କିଏ କହୁଛି । (ବଡ ପାଟିରେ) କିଏ ବେ ? (ପୁଣି ନୋଟକୁ ଚାହିଁ ସାଧାରଣ କଣ୍ଠରେ) ନା ନା କେହି ନୁହେଁ ମୋ ଛଡା ଏଠି ତ କେହି ନାହାଁନ୍ତି କହିବ କିଏ । (ନିଜ ମୁଣ୍ଡକୁ ବାଡେଇ) ଶଳା ମୋଦକ ନିଶାଟା ଧରି ନେଇଛି କି କଣ ।

ବାନା (ଅପେକ୍ଷାକୃତ ବଡ ପାଟିରେ ) ଜାଲ ନୋଟ ।

ସପନା କିଏ- କିଏ ବେ ।

(ଚାରି ଆଡକୁ ଚାହୁଁଛି କାହାକୁ ନଦେଖି ନିଜ ମୁଣ୍ଡକୁ ବାଡେଇଛି । ଯାଇ ଷ୍ଟାଚ୍ୟୁ ହୋଇଥିବା ଲୋକ ଗୋଡ ପାଖରେ ବସିଛି ।)

ବାନା ଜାଲ ନୋଟ ।

(ଧରିଥିବା ଠେଙ୍ଗାରେ ସପନା ମୁଣ୍ଡକୁ ଧିରେ ବାଡେଇ ଦେଇଛି)

ସପନା ଆରେ ମୋ ମୁଣ୍ଡକୁ କିଏ ବାଡେଇଲା ... । କିଏ ବେ । (ସପନା ଠିଆ ହୋଇ ଚାହିଁଲା .. ଦେଖିଲା.. ଗାନ୍ଧୀଙ୍କ ଷ୍ଟାଚ୍ୟୁ) ଆରେ ଏଇଟା କେବେଠୁ ଏଠି ଲଗାହେଲାଣି । ଆଗରୁ ଯୋଉଟା ଥିଲା ସେଇଟା ତ ଭାଙ୍ଗିଯାଇଥିଲା। ତା ହେଲେ ନୂଆ ଗୋଟେ ଆଣି ଲଗା ହୋଇ ଗଲାଣି । (ଷ୍ଟାଚ୍ୟୁ କୁ ନମସ୍କାର କରି) ପ୍ରମାଣ ହଜୁର । ଆପଣ ଗାନ୍ଧୀ ମହାପୁରୁ ଏଇଠି ଆସି ରହିଗଲେଣି ଜାଣିନଥିଲି । ଏଇ ଥରକ ମାଫ୍ କରିଦିଅନ୍ତୁ ହଜୁର । ଏଇଥରକ ଆପଣଙ୍କ ସମାନାରେ ପ୍ରମାଣଟା ଅସୁଲ କରିଦେଇଛି । ସେ ଦୋଷ ପାଇଁ ମାଫି ମାଗି ନେଉଛି । ଏଇ ଥର ଟା ଛାଡି ଦିଅନ୍ତୁ । କଣ କରିବି, ବଡ ପରିବାର । ପାଞ୍ଚୋଟି କନ୍ୟା ରତ୍ନକୁ ଚାରୋଟି ପୁତ୍ରମଣି । ଆମେ ଦୁଇପ୍ରାଣୀ । ସେଥିରେ ପୁଣି ରୋଗଣା ବୁଢା ବାପା ... । ଏତେ ବଡ ପିରବାର । ଏଇ ୨୪ ଘଣ୍ଟିଆ ପୋଲିସ ଚାକିରୀରେ ଯାହା ଦରମା ମିଳୁଛି - ଆପଣଙ୍କୁ ତ ସବୁ ଜଣା... । ମଝିରେ ମଝିରେ ଏମିତି

ଟିକିଏ ଟିକିଏ ନକଲେ ଚୁଲି ଜଳୁନି ।

ବାନା — ହୁଁ ସତକଥା - ଡିଉଟିରୁ ଫେରି ଘରକୁ ଫେରିଲା ବେଳେ ଖାଲି ହାତରେ ଶ୍ରୀମତୀଙ୍କୁ କଣ ମୁହଁ ଦେଖେଇ ହେବ ।

ସପନା — ହୁଁ ପରା କିଛି ଉପରି ନ ନେଲେ ଘରେ ପଶୁଞ୍ଜୁ ପଶୁଞ୍ଜୁ ପଚାରିବ ତୁମେ କିଏ ? ଆରେ ବାବୁ ମୁଁ ତୁମର ସ୍ୱାମୀ ବୋଲି ଯେତେ ବୁଝେଇଲେ ମାନିବାକୁ ନାରାଜ ପୁଣି ପଚାରିବ ସ୍ୱାମୀ ବୋଲି କହୁଛ ପ୍ରମାଣ... ଦେଖାଅ.. ପ୍ରମାଣ । ସେଇଥିପାଇଁ .. ।

ବାନା — ସେଇଥି ପାଇଁ ପ୍ରମାଣ ଧରି ଫେରିବାକୁ ପଡୁଛି । ହେଲେ ଏଇ ଜାଲନୋଟ ନକଲି ପ୍ରମାଣ ଦେଖିଲେ ଆଜି ତ ସେ ଘରେ ପୁରେଇବନି... ।

(ସପନା ନିଶା ଭୋଳରେ ବାନା ସହିତ କଥା ହେଉଛି ବୋଲି ଏ ପର୍ଯ୍ୟନ୍ତ ଜାଣି ପାରେନି । ହଠାତ୍ ଜାଲ ନୋଟ ଶବଦ ଶୁଣି ଚମକି ଚାରି ଆଡକୁ ଚାହିଁଛି ।)

ସପନା — ପୁଣି କିଏ ଜାଲ ନୋଟ କଥା କହିଲା ।

ବାନା — କେହି ନୁହେଁ ଏକା ଥରକେ ତିନି ତିନିଟା ମୋଦକ ଖାଇଲେ ଏମିତି ହୁଏ । ତୋତେ ନଶା ଧରିଛି ............ ।

ସପନା — ଏଁ ମୋତେ ନିଶା ଧରିଛି ? ଯାଏ ଏଠି ଆଉ ବସିହବନି । ଶଳା ଏଇ ମଦାନାନନ୍ଦ ମୋଦକ ତ ଭଲ ନିଶା ଦେଖେଉଛି ।

ବାନା — ସେଇଥି ପାଇଁ ନିଶା ଭୋଳରେ 'ଜାଲନୋଟ'ଟା କୁ ନେଇ ଘରକୁ ଯିବ। ପରେ ପୁରେଇବତ ? ଜାଲ ନୋଟ ।

ସପନା — କିଏ ବେ (ପୁଣି ନୋଟ ଟି କାଢି ଦେଖିଛି) ଠିକ୍ ଅଛିତ ।
କିଏ ବେ ? କିଏ?
କିଏ- ବେ । ମୋ ସାମନାକୁ ଆସତ ଦେଖି ।

ବାନା — ସାମନାରେ ପରା ଠିଆ ହେଇଛି ।

ସପନା — ସାମନାରେ ଠିଆ ହେଇଛି ମୁଁ ଦେଖି ପାରୁନି । ଆରେ କିଏ ଅଛୁରେ ମୋ ସାମନାକୁ ଆସ କହୁଛି । ଶଳାର ଚମଡା ଯଦି ଛଡେଇ ନଦେଇଛି ।

ବାନା — ଆଜି କେତେ ପ୍ରମାଣ ଯୋଗାଡ ହେଇଛି ଆଗ କୁହ ତା ପରେ ସାମନାକୁ ଆସିବି ।

ସପନା — କଣ ଆଉ ହେଇଛି - ଏ ଖଣ୍ଡକ । ଶଳା ବାନା ପକେଟମାର- ବଜାର

ଛକରୁ ଜଣଙ୍କର ପକେଟ କାଟି ଚମ୍ପଟ ମାରିଛି । ତା'ପାଖରୁ କିଛି ମିଳିବା କଥା- ହେଲେ ସେଇଟା ଆଜି ଆମ ହାବୁଡରୁ ଖସି ପଳାଇ ଯାଇଛି । ଆଉ କଣ ତା ପାଖରୁ ମିଳିବ । ଥରେ ଗଲା ମାନେ ସବୁଦିନ ପାଇଁ ଗଲା ।

ବାନା — ତୁମେ ମାନେ ସେ ପକେଟମାରଠୁ ଭାଗ ନେଉଛ ?

ସପନା — ଥାନା ବଡ ବାବୁ ବଡ ବଡ ଚୋରା ବେପାରିଙ୍କ ପାଖରୁ ନେଉଛି । ତା ତଳବାବୁ ଡକାୟତ ମାନଙ୍କଠାରୁ ନେଉଛି । SP ଆରମ୍ଭ କରି DG ପର୍ଯ୍ୟନ୍ତ କିଏ ନେଉନି ଯେ ମୁଁ ଏଇ ଖଚୁରା ଚୋରମାନଙ୍କଠୁ ନେଲି ବୋଲି ଦୋଷ ହେଇ ଯାଉଛି ।

ବାନା — କିଛି ଦୋଷ ନାହିଁ । ଏ ଦେଶର ଟଙ୍କା ଜଣଙ୍କ ପାଖରୁ ଆଉ ଜଣଙ୍କ ପାଖକୁ ଯାଉଛି । ଦେଶ ବାହାରକୁ ତ ଯାଉନି । ଦୋଷ କଣ .. ।

ସପନା — ଠିକ୍ କଥା । ଖାଣ୍ଟି କଥା ପଦଟେ କହିଲେ ଏକା । (ଗାନ୍ଧୀଙ୍କ ଷ୍ଟାଚ୍ୟୁ ପାଦ ତଳେ ମୁଣ୍ଡିଆ ମାରି) ଆପଣ ଗରିବ ଗୁରୁବାଙ୍କ ବାପାମାଆ । ଆମେ କେମିତି ଦୁଃଖରେ ଚଳୁଛୁ ଆପଣ ଠିକ୍ ଜାଣିଛନ୍ତି ।

ବାନା — (ସପନା ମୁଣ୍ଡକୁ ସେ ଠେଙ୍ଗାରେ ଠୁକୁରେଇ ଦିଏ)

ସପନା — କିଏ ରେ । ଶଳା ମଝିରେ ମଝିରେ ମୋ ମୁଣ୍ଡକୁ ବାଡେଇ ଦେଉଛି । କିଏ ରେ ତୁ... ? ସାମନାକୁ ଆସୁନୁ କାହିଁକି ।

ବାନା — ସାମନାରେ ପରା ଅଛି ।

ସପନା — ସାମନାରେ ତ ଆମ ଜାତିର ପିତା - ଗାନ୍ଧୀ ମହାତ୍ମା ଆଉ କେହିତ ଦେଖାଯାଉନି । କିଏ ତୁ ? (ସପନା ଷ୍ଟାଚ୍ୟୁ ଚାରିପାଖେ ଖୋଜେ)

ବାନା — (ବାନା ହଠାତ୍ ସେ ପିଣ୍ଡି ଉପରୁ ସପନା ସାମନାକୁ ଡେଇଁ ପଡେ) ଚିହ୍ନିଲୁ ଏଥର ।

ସପନା — ଆବେ ଭାତୁଆ ବାନା... ତୁ.. । ଶଳା ଏଠି ଷ୍ଟାଚ୍ୟୁ ହୋଇ ମୋତେ ଧପେଇ ଚାଲିଛୁ ।

ବାନା — କଣ କରିବି । ସେ ଲୋକଟାର ପକେଟ କାଟିଛି- ଲୋକ ଗୋଡେଇଲେ । ଅନ୍ଧାର ଭିତରେ ଯାଇ କୋଇଲା ଗୋଦାମରେ ଲୁଚିଲି । ସେଠି ବାଗ ନପାଇ ପାର୍କ ଆଡେ ଆସିଲା ବେଳକୁ ତୁମେ ଦି ଜଣଯାକ ଗୋଡେଇଲ । ଭାବିଲି ମୋତେ ଧରି ନେବ । ହେଲେ ଅନ୍ଧାର ରାତିକୁ ମୋ ଦେହରେ

ଲାଗଥିବା କୋଇଲା ଗୁଣ୍ଡ ଯୋଗୁ ରକ୍ଷା ପାଇଗଲି - ସେଇଠି ସେଇ ଝଙ୍କାଳିଆ ବୁଦା ଭିତରେ ତୁମେ ପାଖେ ପାଖେ ଅଛି-ହେଲେ ତୁମେ ଟେର ପାଇଲନି । ଖସି ପଳେଇଯିବାକୁ ବସିଛି- ଗେଟ ପାଖରେ ଥାନା ବାବୁ ଠିଆ ହେଇଥିବାର ଦେଖିଲି । ଏଇଠି ଆସି ଗାନ୍ଧୀ ହେଇ ଠିଆ ହେଇ ତୁମେ ସେ ଟୋକା ଟୋକିଙ୍କଠାରୁ ଯେମିତି ଢଙ୍ଗରେ ପକେଟ କାଟିଲ ସେଇ ନାଟକ ଦେଖୁଛି.. ଆଉ ।

ସପନା ହେଉ ହେଉ ବେଶୀ ବକ ବକ ନକରି ଦେ... ଆଜିର ଭାଗଟା ଦେ ।

ବାନା ଆଜି ତୁମେ ମୋତେ ଭାଗ ଦେବ ଭାଇ । ମୋଟା ଦେଖି ଯେଉଁ ମନିପର୍ସଟା ପକେଟକାଟି ପାଇଥିଲି ସେଇଟାରେ କେବଳ ବିଡାଏ ପ୍ରେମଚିଠି ଛଡା ଫଟା ପାହୁଲାଟାଏ ନାହିଁ ।

ସପନା ସେଇଥି ପାଇଁ ତୁ ପୋଲିସ ପାଖରୁ ଭାଗ ନେବୁ ।

ବାନା କାହିଁକି ନେବିନି । ଆମ ବିପଦବେଳେ ତୁମେ ସାହାହେବ ତୁମ ବିପଦ ବେଳେ ଆମେ ସାହା ହେବୁ । ସଭିଏତ କହୁଛନ୍ତି ଚୋର-ପୋଲିସ ଭାଇ ଭାଇ । ଏକା ମାଆର ଛୁଆ ।

ସପନା ଚୋପ୍ ଭାଡୁଆ । ସମସ୍ତେ ଚୋପାଟା କହୁଛନ୍ତି । ପୋଲିସ୍ ହେଉଛି ଗିରିଧ । ସେ ସମସ୍ତଙ୍କ ମାଉଁସ ଖାଇବ । ତା ମାଉଁସ କାହାର ଖାଇବାର ପାୱାର ନାହିଁ ।

ବାନା ଠିକ୍ କଥା ଯେ.... ତୁମେ କଣ ସେଇ ଜାଲ ନୋଟଟାକୁ ଚଳେଇ ପାରିବ... ତୁମେ ପରା ପୋଲିସ । ଧରାପଡିଲେ ତୁମ ଚାକିରୀ ରହବ ?

ସପନା ଆବେ ସେଇଟା ଜାଲ ନୋଟ ବୋଲି କେମିତି ଜାଣିଲୁ ।

ବାନା ଯୋଉ ଟୋକା ପାଖରୁ ସେଇଟା ମାରି ଆଣିଛ ମୁଁ ତାକୁ ଜାଣିଛି ..। ତା ବେପାର ହେଉଛି ଜାଲ ନୋଟ... ଭଲ କରି ଦେଖୁନ ସେଥିରେ ଗାନ୍ଧୀ ବୁଢା ପଅଟ୍ ନଥିବ ।

ସପନା ସତେନା ... କଣ .. ?

ବାନା ଥରେ ପରୀକ୍ଷାକରି ଦେଖ । ପୋଲିସ ଲୋକ ୟା'କୁ ଯଦି ନେଇ ଚଳେଇ ପାରିବ ନିଅ ।

(ସପନା- ନୋଟ ଟା ବାହାର କରି ଟିକିଏ ଦୂରକୁ ଯାଇ ଦେଖିଛି)

ବାନା ଭଲ କରି ଦେଖ । ସେ ଧଳା କାଗଜ ଭିତରେ ଗାନ୍ଧୀ ବୁଢ଼ାର ଝଲଝଲିଟା ନଥିବ ।

ସପନା (ଦେଖି) ଶଳା ଏ ଅନ୍ଧାର ଭିତରେ ତ କିଛି ଜଣାଯାଉନି ।

ବାନା ଦିଅ ମୁଁ କହିଦେଉଛି । (ବାନା ଯାଇ ସପନା ପାଖରୁ ସେ ନୋଟଟା ଟାଣି ଆଣିଛି ଏବଂ ଦୌଡ଼ିଛି । ତା ପଛେ ପଛେ ସପନା ।) ଆବେ ବାନା ହାରାମି, ଦେ କହୁଛି ସେଇଟା ଦେ କହୁଛି । ବାନା ।

ବାନା ଭାଇ ଭାଗଟା ଭାଇ ନେଇ ଯାଉଛି । ଏତେ ଟଣା ଉଟାରା କାହିଁକି । ଚାଲିଲି ଭାଇ... ।

(ବାନା ଆଗେ ଆଗେ ପଛେ ପଛେ ସପନା ଦୌଡ଼ିବା ଅବସ୍ଥାରେ ଆସିଛି ହରି ସିଂ ।)

ସପନା ତାକୁ ମାଡ଼ି ବସ ହରି । ଶଳା ବାନା ମୋତେ ଭୁଲେଇ ମୋ ଟଙ୍କାଟା ନେଇ ଯାଉଛି । (ହରିସିଂ ଓ ସପନା ବାନାକୁ ଧରି ନିଅନ୍ତି ଏବଂ ତା ହାତରୁ ନୋଟଟା ଛଡେଇବାକୁ ଚେଷ୍ଟା କରନ୍ତି ।) ଦେ ଦେ ମୋ ଟଙ୍କାଟା ଦେ କହୁଛି । ନ ହେଲେ ପିଟି ପିଟି ତୋ ହାଡ ମାଉଁସ କିମା କରିଦେବି ।

ବାନା ତୁମେ ଟଙ୍କା ତୁମକୁ ସୁଝିଦେବି ଭାଇ । ହେଲେ ଆଜି ଦିନଟା ମୋତେ ସାହାଯ୍ୟ କର ।

ସପନା ଚୋପ- ସେମିତି ନଖାରାମି କରିବୁ ତ ସିଧା ନେଇ ହାଜତରେ ପୁରାଇ ଦେବି ।

(ତାକୁ ଧରି ଦିଅନ୍ତି)

ବାନା ଯେତେ ଯାହା କଲେ ବି ଏ ଟଙ୍କା ଛାଡ଼ିବିନି ଭାଇ । ମୋର ଟଙ୍କାଟା ଆଜି ନିହାତି ଦରକାର ।

ସପନା ତୋର ଦରକାର ବୋଲି ପୋଲିସର ପକେଟ କାଟିବୁ ।

ବାନା ହଁ କାଟିବି । ତୁମେମାନେ ପୋଲିସ ନୁହେଁତ ମାର୍କାମରା ସରକାରୀ ପକେଟମାର । ପବ୍ଲିକ ପଇସାରୁ ଦରମା ପାଉଛ ପୁଣି ଲୋକଙ୍କୁ ଶୋଷଣ କରି ଖାଉଛ । ମୋ ଝିଅ ଆଜି ଶକତ ବେମାର । ଚାରିଦିନ ହେଲା ଜରରେ ପଡ଼ି ପାଣିଟିକିଏ ବି ଛୁଇଁନି । ତା' ପାଇଁ ଔଷଧ ଦରକାର- ପଥି ଦରକାର । ଆଜି ଦିନଟା ମୋତେ ଛାଡ଼ିଦିଅ । ଏଇ ଟଙ୍କାରେ ଝିଅର ଔଷଧ କିଣିବି ।

ହରି ଏଇଟାକୁ ଏମିତି ପାରିହବନି ଆଜ୍ଞା । ମୁଁ ପାଖରୁ ରସିଟେ ନେଇ ଆସେ - ଗୋଡହାତ ବାନ୍ଧି ନପକାଇଲେ .. ପାରିବାନି ।

ସପନା : ନା– ଧର ତାକୁ ... ।

(ଦୁହେଁ ମିଶି ଟଙ୍କା ଛଡାଇବାକୁ ମାଡି ବସିଛନ୍ତି । ବାନା ଟଙ୍କାଟା କୋଚା ମୋଚା କରି ପାଟିରେ ପୁରାଇ ଦେଇଛି ।)

ହରି ହେଇ ନୋଟ ଟା ପାଟିରେ ପୁରେଇ ଦେଲା ଆଜ୍ଞା ।

ସପନା ଆବେ ପାଁଶହ ଟଙ୍କିଆ ନୋଟଟାକୁ ପାଟିରେ ପୁରେଇ ଦେଲୁ ଶଳା । (ଦୁହେଁ ତା ପାଟିକୁ ଆଁ କରାଇବାକୁ ଲାଗନ୍ତି । ଜଣେ ତା ଗାଲକୁ ଜଣେ ତା ବେକକୁ ଧରି ନିଅନ୍ତି) ଆବେ ସେଇଟା ନଷ୍ଟ ହେଇଯିବ । ବାହାର କର କହୁଛି ବାହାର କର ।

(ମୁଣ୍ଡ ହଲାଇ ବାନା ନାଇଁ ନାଇଁ କରୁଛି । ସେ ବାହାର କରିବିନି । ଶେଷରେ ସେଇଟାକୁ ଗିଳି ଦେଇଛି ।)

ହରି ଆଜ୍ଞା ନୋଟଟା ଗିଳିଦେଲା ଆଜ୍ଞା ।

ସପନା ଭାଡୁଆ ସେଇଟା ତଣ୍ଡିରେ ଲାଗିଗଲେ ପ୍ରାଣ ଚାଲିଯିବ– ବାହାର କରିଦେ.... ଆଁ ଆଁ କରି ବାହାର କରିଦେ.. ।

(ବାନା ଅଣନିଶ୍ୱାସି ହୋଇ ଚେଷ୍ଟା ଚଳାଇଛି । ନୋଟାଟା ବାହାର କରିବାକୁ । ସେ ଆ.. ଆ... ହେଇ ଚେଷ୍ଟା ଚଳାଇଛି । ତା ଆଖି ଡିମା ଡିମା ହୋଇଯାଇଛି. ସତେ ଯେମିତି ତା ଜୀବନ ଚାଲିଯିବ ।)

ହରି ଆଜ୍ଞା. ଏଇଟାର ଜୀବନ ଚାଲିଯିବ କି କଣ ।

(ହରି ଯାଇ ବାନାର ପିଠି ଆଉଁଶେଇ ଦେଉଛି । ବାନା ଛଟ ପଟ ହେଉଛି ।)

ସପନା ଚାଲ ହରି । ତା ସାଙ୍ଗରେ କାହିଁ ଲାଗୁଛୁ । କଣ ଯଦି ହେଇଯାଏ ଆମ ଚାକିରୀ ବାଏଁ ବାଏଁ ଉଡିଯିବ । ଚାଲିଆ । ଆମେ ଏ ଜାଗା ଛାଡି ଚାଲିଯିବା । ଜଲଦି ।

(ହରି ଓ ସପନା ବାନାକୁ ଚାହିଁ ଚାହିଁ ପଛେଇ ପଛେଇ ଚାଲିଯାଆନ୍ତି । ବାନା ଜୀବନ ବିକଳରେ ତାଙ୍କୁ ଚାହିଁ ସାହାଯ୍ୟ ପାଇଁ ଇସାରା କରୁଥାଏ । ସେଇ ଅବସ୍ଥାରେ ସେ ତଳେ ପଡିଯାଏ । ସପନା ହରି ପଳାଇ ପାଆନ୍ତି । ମଂଚ ନିରବ ହୋଇଯାଏ । କିଛି ସମୟପରେ ବାନା ଉଠି ଚାହେଁ ଯେ କେହି ନାହାଁନ୍ତି । ସେ ପାଞ୍ଚଶହ ଟଙ୍କିଆ କୋଚା କୋଚା ନୋଟ ଖଣ୍ଡକ ତା' ଅଣ୍ଟାରୁ ବାହାର କରି ଦେଖେ । ତା ମୁହଁରେ ହସ ଉକୁଟି ଉଠେ ।)

– ସମାପ୍ତ –

## ଦିଲ୍ଲୀଶ୍ୱର ମହାରଣାଙ୍କ

### ପ୍ରକାଶିତ ନାଟକ

ଉତ୍ତର ପୁରୁଷ — ଚକେଗଲେ ବାରହାତ
ଭୋଳାନାଥ ଦାସ ହାଜର ହେ — ସୂର୍ଯ୍ୟ ପରାଗ
ବାର୍ତ୍ତା — ସୁଅ
ନ୍ୟାୟ — ତତ୍‌କାଳ ସମାଧାନ
ଆସନ୍ନ ପ୍ରଳୟ — ଭାଇ ଭାଇ
ବାଉଁଶ ଠେଙ୍ଗାରେ ସ୍ୱାଧୀନତା — କୁମାର କୁଳଚନ୍ଦ୍ରମା
ଭଲ ପାଇବାର ରଙ୍ଗ — ସୂର୍ଯ୍ୟ ଉଇଁବାର ବେଳ
ଦ୍ୱିତୀୟ ଈଶ୍ୱର — ଏ ମଙ୍ଗଳ ମହୁରୀର ତାନ
ଆପଣ ସାକ୍ଷୀରହିଲେ ହଜୁର — ଅସମାପ୍ତ



### ପ୍ରକାଶ ଅପେକ୍ଷାରେ

ବୁମେରାଂ — ଶେଷ ଠିକଣା
ବାରମଜା — ଅର୍ପିତା
ମନ୍ତ୍ର — ମୋହିନୀ
ଗୁରୁ ମହିମା — ବେଲୁନ୍
ଆମ୍ରପଲ୍ଲୀ — କିଛି ଅନୁବାଦ ନାଟକ





## ଶ୍ରୀ ଦିଲ୍ଲୀଶ୍ୱର ମହାରଣା

ଜନ୍ମ : ନଭେମ୍ବର ୫, ୧୯୪୭, ଗ୍ରାମ-ଗୋଡିଡିହି, ଢେଙ୍କାନାଳ

ଚିତ୍ର ଆଙ୍କୁଆଙ୍କୁ କବିତା ଲେଖା, ସେମିତି ଅଭିନୟ କରୁ କରୁ ନାଟ୍ୟନିର୍ଦ୍ଦେଶନା ଆଉ ନାଟ୍ୟରଚନା ଓ ଢେଙ୍କାନାଳ କଳାପରିଷଦ ଗଠନକରି ତା'ର ଶିଳ୍ପୀମାନଙ୍କୁ ନେଇ କିସମ କିସମ ଶୈଳୀର ନାଟକ ମଂଚନ କରି ଅନେକବାର ରାଜ୍ୟଭିତରେ ଓ ଜାତୀୟସ୍ତରରେ ପୁରସ୍କୃତ ହୋଇଥିବା ଶ୍ରୀଯୁକ୍ତ ମହାରଣା ନାଟ୍ୟମହଲରେ 'ଦିଲୁ ଭାଇ'ରୂପେ ବେଶ ଲୋକପ୍ରିୟ ।

ନାଟ୍ୟ ନିର୍ଦ୍ଦେଶନା କ୍ଷେତ୍ରରେ ଆଜୀବନ ସାଧନା ଓ ଅସମାନ୍ୟ ଅବଦାନ ନିମନ୍ତେ "ଓଡିଶା ସଙ୍ଗୀତ ନାଟକ ଏକାଡେମୀ ପୁରସ୍କାର-୨୦୦୨ ଓ ନାଟ୍ୟପୁସ୍ତକ "ବାର୍ତ୍ତା" ପାଇଁ ଓଡିଶା ସାହିତ୍ୟ ଏକାଡେମୀ ପୁରସ୍କାର-୨୦୦୪ ଦ୍ୱାରା ସେ ସମ୍ମାନୀତ ।

ଏଇ ସଂକଳନର ତାଙ୍କ ନାଟ୍ୟଗୁଡିକୁ ଆପଣ ପଢ଼ିଲେ କିମ୍ବା ଦେଖିଲେ ନିଶ୍ଚୟ ଭଲପାଇ ବସିବେ ।

-ପ୍ରକାଶିକା-